# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**September-October - 2021**

୭୮ ଭାଗ ୨ୟ-୩ୟ ସଂଖ୍ୟା ଭାଦ୍ର-କାର୍ତ୍ତିକ ସେପ୍ଟେମ୍ବର-ଅକ୍ଟୋବର - ୨୦୨୧



ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

# ଶ୍ରଦ୍ଧାଞ୍ଜଳି



## ମହାତ୍ମା ଗାନ୍ଧୀ

୦୨.୧୦.୧୮୬୯ – ୩୦.୦୧.୧୯୪୮

### ମୋ' ସ୍ୱପ୍ନର ଭାରତ

'ମୁଁ ଏପରି ଭାରତବର୍ଷ ନିମନ୍ତେ କାମ କରିବି, ଯେଉଁଠି ଦରିଦ୍ରରୁ ଦରିଦ୍ରତମମାନେ ଅନୁଭବ କରିବେ ଯେ ଏହା ସେମାନଙ୍କର ଦେଶ, ଯାହାର ନିର୍ମାଣରେ ସେମାନଙ୍କର ଫଳପ୍ରଦ ଅବଦାନ ରହିଥିବ, ଏପରି ଭାରତବର୍ଷ ଯେଉଁଠାରେ କି ଜନସାଧାରଣଙ୍କ ମଧ୍ୟରେ ଛୋଟ ବଡ଼ ବୋଲି କିଛି ଶ୍ରେଣୀ ଭେଦ ନଥିବ, ଏପରି ଭାରତବର୍ଷ ଯେଉଁଠାରେ କି ସମସ୍ତ ସମ୍ପ୍ରଦାୟ ପୂର୍ଣ୍ଣ ସଂଗତିରେ ବାସ କରିବେ, ଏପରି ଏକ ଭାରତବର୍ଷ ଯେଉଁଠାରେ ଅଭିଶପ୍ତରୂପୀ ଅସ୍ପୃଶ୍ୟତା କିମ୍ବା ମାଦକ ଓ ନିଶାଦ୍ରବ୍ୟର ସ୍ଥାନ ନଥିବ, ପୁରୁଷଙ୍କ ପରି ମହିଳାମାନେ ସମାନ ଅଧିକାର ଉପଭୋଗ କରିବେ ଆଉ ଅବଶିଷ୍ଟ ପୃଥିବୀ ସହ ଆମେ ଶାନ୍ତିରେ ସହାବସ୍ଥାନ କରିବୁ । ଏହା ହେଉଛି ମୋ' ସ୍ୱପ୍ନର ଭାରତବର୍ଷ ।'

– ଏମ୍.କେ. ଗାନ୍ଧୀ

# ଶ୍ରଦ୍ଧାଞ୍ଜଳି



ସର୍ଦ୍ଦାର ବଲ୍ଲଭଭାଇ ପଟେଲ
୩୧.୧୦.୧୮୭୫ – ୧୫.୧୨.୧୯୫୦



ଉତ୍କଳମଣି ଗୋପବନ୍ଧୁ ଦାସ
୦୯.୧୦.୧୮୭୭ – ୧୭.୦୬.୧୯୨୮



ଲାଲ ବାହାଦୁର ଶାସ୍ତ୍ରୀ
୦୨.୧୦.୧୯୦୪ – ୧୧.୦୧.୧୯୬୬



ଜୟପ୍ରକାଶ ନାରାୟଣ
୧୧.୧୦.୧୯୦୨ – ୦୮.୧୦.୧୯୭୯




ଦିଲ୍ଲୀଠାରେ ଜାତୀୟ ସୁରକ୍ଷା ପରିଷଦ ବୈଠକରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ମହାରାଷ୍ଟ୍ରର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ଉଦ୍ଧବ ଠାକ୍‌ରେ ଶୁଭେଚ୍ଛା ଜଣାଉଛନ୍ତି ।




ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପରିସରରେ ଆୟୋଜିତ ଗାନ୍ଧୀ ଜୟନ୍ତୀ ପାଳନ ଅବସରରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀ ସୁରେଶ ଦଳେଇ, ନିର୍ଦ୍ଦେଶକ ଶ୍ରୀ ରଞ୍ଜନ କୁମାର ଦାସ, ଓଡ଼ିଶା ରିଭ୍ୟୁ ଓ ଉତ୍କଳ ପ୍ରସଙ୍ଗର ସମ୍ପାଦକ ଡକ୍ଟର ଲେନିନ୍ ମହାନ୍ତି ଏବଂ ଡକ୍ଟର ଭାଗ୍ୟଲିପି ମଲ୍ଲ ଉପସ୍ଥିତ ଅଛନ୍ତି ।



ଓଡ଼ିଶାରେ ସୁପ୍ରିମ୍‌କୋର୍ଟର ମାନ୍ୟବର ପ୍ରଧାନ ବିଚାରପତି ଏନ୍.ଭି. ରମନ୍ନା ।




ଦୈନିକ 'ସମ୍ବାଦ' ଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ବିତର୍କ ପ୍ରତିଯୋଗିତାରେ ସଫଳ ପ୍ରତିଯୋଗୀ ଶ୍ରୀ ୟଶ୍ ମହାନ୍ତିଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି ଶ୍ରୀ ଯୋଗେନ୍ଦ୍ର ଯାଦବ ଓ ପାରା ଅଲିମ୍ପିକ୍ସର ସ୍ୱର୍ଣ୍ଣ ପଦକ ବିଜେତା ଶ୍ରୀ ପ୍ରମୋଦ ଭଗତ୍ ।






ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ରାଜଭବନଠାରେ ଶ୍ରୀ ଜଳଦ କୁମାର ତ୍ରିପାଠୀଙ୍କୁ ରାଜ୍ୟ ମୁଖ୍ୟ ସୂଚନା ଆୟୁକ୍ତ ଭାବେ ଶପଥ ପାଠ କରାଉଛନ୍ତି ।

# ‘ଆମ ପାଇଁ ପ୍ରତିଟି ଜୀବନ ମୂଲ୍ୟବାନ’

**ନବୀନ ପଟ୍ଟନାୟକ**
**ମୁଖ୍ୟମନ୍ତ୍ରୀ**



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡିଓ କନ୍‌ଫରେନ୍ସିଂ ଯୋଗେ ଦିଲ୍ଲୀରୁ ବାତ୍ୟା ଗୁଲାବର ମୁକାବିଲା ପାଇଁ ରାଜ୍ୟ ସରକାରଙ୍କ ପ୍ରସ୍ତୁତି ସଂପର୍କରେ ସମୀକ୍ଷା କରିଥିଲେ । ଏହି ଅବସରରେ ମୁଖ୍ୟମନ୍ତ୍ରୀ ଜୀବନ ରକ୍ଷା ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରିଥିଲେ ଏବଂ ଏହା ସୁନିଶ୍ଚିତ କରିବା ପାଇଁ ଆବଶ୍ୟକତାଠାରୁ ଅଧିକ ଆଗକୁ ଯାଇ କାମ କରିବା ପାଇଁ ପରାମର୍ଶ ଦେଇଥିଲେ । ଗୁଲାବ ପ୍ରଭାବିତ ଜିଲ୍ଲାମାନଙ୍କର ତଳିଆ ତଥା ବନ୍ୟାପ୍ରବଣ ସ୍ଥାନମାନଙ୍କରୁ ଏବଂ କଚ୍ଚା ଘରମାନଙ୍କରୁ ଲୋକମାନଙ୍କୁ ସ୍ଥାନାନ୍ତର କରାଯିବା ସହିତ ଭୂସ୍ଖଳନ ସଂଭାବନା ଥିବା ଅଞ୍ଚଳମାନଙ୍କରେ ଲୋକଙ୍କୁ ନିରାପଦ ସ୍ଥାନକୁ ସ୍ଥାନାନ୍ତର କାର୍ଯ୍ୟ ଯୁଦ୍ଧକାଳୀନ ଭିତ୍ତିରେ କରିବା ପାଇଁ ପ୍ରଶାସନକୁ ନିର୍ଦ୍ଦେଶ ଦେଇଥିଲେ ।

ବାତ୍ୟା ୟାସ୍ ପରବର୍ତ୍ତୀ ସମୟରେ ଯେପରି ପ୍ରଭାବିତ ଅଞ୍ଚଳମାନଙ୍କରେ କୋଭିଡ ସଂଖ୍ୟା ବୃଦ୍ଧି ଘଟିଥିଲା, ତାକୁ ଦୃଷ୍ଟିରେ ରଖି ବାତ୍ୟା ଆଶ୍ରୟସ୍ଥଳମାନଙ୍କରେ କୋଭିଡ ନିୟମାବଳୀକୁ କଡାକଡି ଭାବରେ ପାଳନ କରାଯିବା ତଥା ମାସ୍କ ବ୍ୟବହାରକୁ ସୁନିଶ୍ଚିତ କରିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ଏହା ସହିତ ଆସ୍କା, ଗୁଡାରୀ, ଗୁଣପୁର, କଡିନଗର ଏବଂ ପୁରୁଷୋତ୍ତମପୁର ତଥା ଅନ୍ୟ ବନ୍ୟା ପ୍ରବଣ ଗାଁମାନଙ୍କରେ ଥିବା ବନ୍ଧ ବାଡ ଉପରେ ସତର୍କ ଦୃଷ୍ଟି ରଖିବା ପାଇଁ ପରାମର୍ଶ ଦେଇଥିଲେ ।

ବାତ୍ୟା ଆଶ୍ରୟସ୍ଥଳଗୁଡିକରେ ଭଲ ପିଇବା ପାଣି ସମେତ ସବୁ ପ୍ରକାର ମୌଳିକ ବ୍ୟବସ୍ଥା ଗ୍ରହଣ କରାଯିବା ସଂଗେ ସଂଗେ ଗର୍ଭବତୀ ମହିଳା, ବୟସ୍କ ଓ ଶିଶୁମାନଙ୍କ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବା ପାଇଁ ମଧ୍ୟ ପରାମର୍ଶ ଦେଇଥିଲେ । ବାତ୍ୟା ପରେ ପରେ ରାସ୍ତା ସଫା କରିବା, ବିଦ୍ୟୁତ ଓ ଜଳଯୋଗାଣ ବ୍ୟବସ୍ଥାର ପୁନରୁଦ୍ଧାର କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ଆଗୁଆ ପଦକ୍ଷେପ ନେବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ମାଇକ୍ ଯୋଗେ ଲୋକଙ୍କୁ ସଚେତନ କରିବା ସହ ସ୍ଥାନାନ୍ତର ଆଶ୍ରୟସ୍ଥଳ ପରିଚାଳନା ତଥା ପୁନରୁଦ୍ଧାର କାର୍ଯ୍ୟରେ ପଞ୍ଚାୟତିରାଜ ଅନୁଷ୍ଠାନ, ମିଶନ ଶକ୍ତି ଗୋଷ୍ଠୀ, ଏନ୍‌ଜିଓ ଏବଂ ସ୍ୱେଚ୍ଛାସେବୀମାନଙ୍କୁ ସାମିଲ କରିବା ପାଇଁ ପରାମର୍ଶ ଦେଇଥିଲେ ।

ବାତ୍ୟା ପରିସ୍ଥିତିକୁ ଦୃଷ୍ଟିରେ ରଖି ପ୍ରଭାବିତ ସମସ୍ତ ୧୧ ଗୋଟି ଜିଲ୍ଲାର ସବୁ ଶିକ୍ଷାନୁଷ୍ଠାନ ବନ୍ଦ ରଖିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ପରବର୍ତ୍ତୀ ସମୟରେ ଜିଲ୍ଲାପାଳମାନେ ସ୍ଥାନୀୟ ପରିସ୍ଥିତିକୁ ବିଚାରକୁ ନେଇ ସ୍କୁଲ ଖୋଲିବା ସଂପର୍କରେ ନିଷ୍ପତ୍ତି ଗ୍ରହଣ କରିବେ ବୋଲି ମୁଖ୍ୟମନ୍ତ୍ରୀ କହିଛନ୍ତି ।

- ଜୀବନ ରକ୍ଷା ଉପରେ ମୁଖ୍ୟମନ୍ତ୍ରୀଙ୍କ ସର୍ବାଧିକ ଗୁରୁତ୍ୱ ।
- ସୁରକ୍ଷିତ ସ୍ଥାନକୁ ସ୍ଥାନାନ୍ତର କାର୍ଯ୍ୟ ଓ କୋଭିଡ଼ ନିୟମ ପାଳନରେ ପ୍ରଶାସନକୁ ସହଯୋଗ କରିବା ପାଇଁ ଜନସାଧାରଣଙ୍କୁ ମୁଖ୍ୟମନ୍ତ୍ରୀଙ୍କ ନିବେଦନ ।
- ୪୨ଟି ଓଡ୍ରାଫ୍ ଓ ୨୪ଟି ଏନ୍‌ଡିଆର୍‌ଏଫ୍ ଓ ୧୦୩ଟି ଅଗ୍ନିଶମ ଦଳ ନିୟୋଜିତ

ବାତ୍ୟାର ମୁକାବିଲା ପାଇଁ ରାଜ୍ୟ ସରକାର ଗ୍ରହଣ କରିଥିବା ବିଭିନ୍ନ ପଦକ୍ଷେପ ଯଥା ନିରାପଦ ସ୍ଥାନକୁ ସ୍ଥାନାନ୍ତର ଏବଂ କୋଭିଡ ନିୟମ ପାଳନ ଆଦି ବିଷୟରେ ପୂର୍ଣ୍ଣ ସହଯୋଗ କରିବା ପାଇଁ ମୁଖ୍ୟମନ୍ତ୍ରୀ ଜନସାଧାରଣଙ୍କୁ ନିବେଦନ କରିଥିଲେ ।



ଉନ୍ନୟନ କମିଶନର ତଥା ସ୍ୱତନ୍ତ୍ର ରିଲିଫ କମିଶନର ଶ୍ରୀ ପ୍ରଦୀପ ଜେନା ପରିସ୍ଥିତି ସଂପର୍କରେ ମୁଖ୍ୟମନ୍ତ୍ରୀଙ୍କୁ ଅବଗତ କରାଇଥିଲେ । ପ୍ରଭାବିତ ଜିଲ୍ଲାମାନଙ୍କରେ ୪୨ଟି ଓଡ୍ରାଫ୍, ୨୪ ଏନ୍‌ଡିଆର୍‌ଏଫ୍, ୧୦୩ଟି ଅଗ୍ନିଶମ ଦଳ ମୁତୟନ କରାଯାଇଛି ବୋଲି ସୂଚନା ଦେଇଥିଲେ । ବାତ୍ୟା ଆଶ୍ରୟସ୍ଥଳମାନଙ୍କରେ ମାସ୍କ ଓ ସାନିଟାଇଜର ବ୍ୟବସ୍ଥା ସହିତ ସାମାଜିକ ଦୂରତା ଉପରେ ଗୁରୁତ୍ୱ ଦିଆଯାଉଛି ବୋଲି ସୂଚନା ଦେଇଥିଲେ । ଏହି ବାତ୍ୟା ଦ୍ୱାରା ଗଞ୍ଜାମ, ଗଜପତି, ରାୟଗଡା ଓ କୋରାପୁଟ ଜିଲ୍ଲା ସର୍ବାଧିକ ପ୍ରଭାବିତ ହେବାର ସମ୍ଭାବନା ଥିବାବେଳେ ଏହି ଜିଲ୍ଲାଗୁଡିକ ସହିତ କନ୍ଧମାଳ, ମାଲକାନଗିରି, ନବରଂଗପୁର ଓ କଳାହାଣ୍ଡିର କିଛି ଅଞ୍ଚଳରେ ପ୍ରବଳରୁ ପ୍ରବଳତର ବର୍ଷା ଏବଂ ଖୋର୍ଦ୍ଧା, ପୁରୀ ଓ ନୟାଗଡ ଜିଲ୍ଲାରେ ପ୍ରବଳ ବର୍ଷା ହେବାର ଆଶଙ୍କା ରହିଛି ବୋଲି ସୂଚନା ଦେଇଥିଲେ । ଏହା ସହିତ କେତେକ ସ୍ଥାନରେ ଭୂସ୍ଖଳନ ହେବାର ସଂଭାବନା ରହିଛି ବୋଲି ସେ ସତର୍କ କରାଇ ଦେଇଥିଲେ । ଅପରାହ୍ନ ୪ଟା ସୁଦ୍ଧା ସ୍ଥାନାନ୍ତର କାର୍ଯ୍ୟ ଶେଷ କରାଯିବ ବୋଲି ସେ ମୁଖ୍ୟମନ୍ତ୍ରୀଙ୍କୁ ଅବଗତ କରାଇଥିଲେ ।

ଗଞ୍ଜାମ, ଗଜପତି, ରାୟଗଡା ଓ କୋରାପୁଟର ଜିଲ୍ଲାପାଳମାନେ ଜିଲ୍ଲାର ପରିସ୍ଥିତି ଏବଂ ବାତ୍ୟାର ମୁକାବିଲା ପାଇଁ ନିଆଯାଇଥିବା ଆଗୁଆ ପଦକ୍ଷେପ ଓ ସେମାନଙ୍କର ଆବଶ୍ୟକତା ସଂପର୍କରେ ବୈଠକରେ ଜଣାଇଥିଲେ ।

ମୁଖ୍ୟମନ୍ତ୍ରୀଙ୍କ ସହ ଦିଲ୍ଲୀ ଗସ୍ତରେ ଥିବା ୫-ଟି ସଚିବ ଶ୍ରୀ ଭି.କେ. ପାଣ୍ଡିଆନ ବୈଠକ ପରିଚାଳନା କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଜଳସଂପଦ ବିଭାଗର ପ୍ରମୁଖ ସଚିବ, ଶକ୍ତି ବିଭାଗର ପ୍ରମୁଖ ସଚିବ, ମତ୍ସ୍ୟ ଓ ପଶୁସଂପଦ ବିଭାଗର ସଚିବ ଓ ପ୍ରଭାବିତ ୧୧ଟି ଜିଲ୍ଲାର ଜିଲ୍ଲାପାଳମାନେ ବୈଠକରେ ଭାଗ ନେଇଥିଲେ ।



ନାରୀ ଜାଗରଣର ଆଲୋକବର୍ତ୍ତିକା

# ମହୀୟସୀ ମନୋରମା

ଡକ୍ଟର ଲେନିନ୍ ମହାନ୍ତି



ଶ୍ରୀମତୀ ମନୋରମା ମହାପାତ୍ର– ଓଡ଼ିଶାର ପୁରପଲ୍ଲୀଠାରୁ ଆରମ୍ଭ କରି ଦେଶବିଦେଶରେ ଖୁବ୍ ପରିଚିତ ନାଁ । ଏକାଧାରରେ ଜଣେ କବୟିତ୍ରୀ, ଲେଖିକା, ଅବସରପ୍ରାପ୍ତ ଅର୍ଥନୀତି ପ୍ରାଧ୍ୟାପିକା, ସ୍ତମ୍ଭକାର, ସାମ୍ବାଦିକା, ସର୍ବୋପରି ଓଡ଼ିଶାର ଏକ ଆଦର୍ଶ ସ୍ଥାନୀୟ ବ୍ୟକ୍ତିତ୍ୱ । ବିଭିନ୍ନ ଭାଷାରେ ପାରଙ୍ଗମ ଏହି ମନସ୍ୱିନୀ ଲେଖିକା ନିଜର ନିରଳସ ସାହିତ୍ୟ ସେବା ସହ ସମାଜ ସେବାରେ ନିୟୋଜିତ ହୋଇଥିବାରୁ ତାଙ୍କ ସାହିତ୍ୟରେ ସାଧାରଣ ମଣିଷର ସମସ୍ୟା, ଯନ୍ତ୍ରଣା, ସଂସ୍କାରଧର୍ମୀ, ବିପ୍ଳବାତ୍ମକ ଚେତନା ପ୍ରତିଭାତ । ମୁଖ୍ୟତଃ ସେ ଜଣେ ପ୍ରତିଶ୍ରୁତିବଦ୍ଧ, ମାନବବାଦୀ, ସଂସ୍କାରଧର୍ମୀ ସମ୍ବେଦନଶୀଳ କବି । ମଣିଷ ସମାଜର ଦୁଃଖ ହରଣ ନିମନ୍ତେ ସତତ ପ୍ରୟାସୀ ଏହି ଦରଦୀ କବିଙ୍କର ଲେଖନୀ ସମାଜକୁ କୁସଂସ୍କାର ମୁକ୍ତ କରି ସଂହତି ଓ ସମତା ଆଣିବା ଦିଗରେ ସଚେତନ । ସମାଜର ବୈଷମ୍ୟ ତଥା ଅନ୍ଧବିଶ୍ୱାସ ଦୂର କରିବାରେ ସଦାସଚେଷ୍ଟ ବିପ୍ଳବୀ କବି ମନୋରମାଙ୍କର ବ୍ୟକ୍ତିତ୍ୱ ଏବଂ କୃତିତ୍ୱ ନିଶ୍ଚିତ ପକ୍ଷେ ଏ ସମାଜ ପାଇଁ ଏକ ବିରଳ ଉଦାହରଣ । ସମସ୍ତ ଘାତ ପ୍ରତିଘାତ, ପ୍ରତିକୂଳ ପରିସ୍ଥିତି ଓ ପରିବେଶକୁ ଏଡ଼ାଇ ଆଗକୁ ବଢ଼ି ନିଜର ତଥା ସମାଜର କଲ୍ୟାଣ ପ୍ରତିପାଦନ କରିବା ମାନବ ସମାଜର ଏକାନ୍ତ ବାଞ୍ଛନୀୟ । ଏଭଳି ଏକ ବ୍ୟକ୍ତିତ୍ୱର ନିରଳସ ଜୀବନଯାତ୍ରା ଓ ଉଚ୍ଚକୋଟୀର ଚିନ୍ତାଧାରା ସମ୍ପର୍କରେ ଜାଣିବା ବର୍ତ୍ତମାନ ଓ ଆଗାମୀ ପିଢ଼ି ନିମନ୍ତେ ଗର୍ବ ଓ ଗୌରବର ବିଷୟ ।

ଏହି ମହୀୟସୀ ମହିଳାଙ୍କର ଜନ୍ମ ହୁଏ ୧୯୩୪ ମସିହା ଜୁନ୍ ୧୦ ତାରିଖର ଏକ ଅମୃତ ବେଳାରେ, କଟକ ଜିଲ୍ଲାର ଆଠଗଡ, ରାଧାନାଥପୁର ଶାସନରେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ ଓ ଧର୍ମପ୍ରାଣା ସାବିତ୍ରୀ ଦେବୀଙ୍କର ସେ ଥିଲେ ଚତୁର୍ଥ ସନ୍ତାନ । ସ୍ୱର୍ଗତ ପଦାରବିନ୍ଦ ମହାପାତ୍ରଙ୍କର ଧର୍ମପତ୍ନୀ । 'ଝିଅ ଜନମ ପର ଘରକୁ' ନ୍ୟାୟରେ ବୋଧେ ସେ ସହୋଦରମାନଙ୍କ ନିକଟରେ ଅଲୋଡ଼ି ନାମରେ ପରିଚିତା ଥିଲେ । ତାଙ୍କର ଅନ୍ୟ ଏକ ଡାକ ନାମ ଥିଲା 'ସୁଲୁ', ଯାହାର ଅର୍ଥ 'ଅତି ଉଦାସ' । ମାତ୍ର ସମୟକ୍ରମେ ଏହି 'ଅଲୋଡ଼ି-ସୁଲୁ' ନିଜର ଶୁଭନାମ 'ମନୋରମା'ର ଯଥାର୍ଥତା ପ୍ରତିପାଦନ କରିଥିଲେ । ମନୋରମା ଅର୍ଥାତ୍ ଅତି ଚିତ୍ତାକର୍ଷକ, ମନମୋହିନୀ ଓ ଆଦରଣୀୟା ।



ପ୍ରାଥମିକ ଶିକ୍ଷା ଶେଷ ପରେ ରେଭେନ୍ସା ଗାର୍ଲ୍ସ ହାଇସ୍କୁଲରୁ ମ୍ୟାଟ୍ରିକ୍ ପାଶ୍ କରିବା ସହ ମାଷ୍ଟ୍ରାଣୀ ହେବାର ସ୍ୱପ୍ନ ଦେଖିଥିବା ମନୋରମା ମହାପାତ୍ର ଉଚ୍ଚ ଶିକ୍ଷା ନିମନ୍ତେ ତର୍କଶାସ୍ତ୍ର, ଅର୍ଥଶାସ୍ତ୍ର ଓ ସଂସ୍କୃତ ଆଦି ବିଷୟମାନ ରଖି ନାମ ଲେଖାଇଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ ।

ଅର୍ଥନୀତିରେ ସ୍ନାତକୋତ୍ତର ସହ ୧୯୭୦ ମସିହାରେ ଓଡ଼ିଶା ଶିକ୍ଷା ବିଭାଗରେ ଯୋଗ ଦେଇ ଅର୍ଥନୀତି ପ୍ରାଧ୍ୟାପିକା ଭାବରେ ଦୀର୍ଘ ୧୫ବର୍ଷ କାଳ ଶିକ୍ଷାଦାନ କଲେ । ମାତ୍ର ସମାଜ ସେବାରେ ନିଜକୁ ପୂର୍ଣ୍ଣ ନିୟୋଜିତ କରିବା ଲକ୍ଷ୍ୟରେ ସେ ୧୯୮୫ ମସିହାରେ ସରକାରୀ ଚାକିରିରୁ ଅବସର ନେଇ ସାମ୍ବାଦିକତା ଓ ସାହିତ୍ୟ ସେବାରେ ନିଜକୁ ନିୟୋଜିତ କରିଥିଲେ ।

ଓଡ଼ିଆ, ସଂସ୍କୃତ, ହିନ୍ଦୀ, ଇଂରାଜୀ, ବଙ୍ଗଳା ଭାଷାରେ ପାରଙ୍ଗମ ଶ୍ରୀମତୀ ମହାପାତ୍ର ଦୀର୍ଘ ୬୦ ବର୍ଷରୁ ଊର୍ଦ୍ଧ୍ୱ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ, ଶିଶୁ ସାହିତ୍ୟ, ଅନୁବାଦ ଆଦି ପ୍ରତିଟି ବିଭାଗରେ ନିଜର ପ୍ରତିଭାର ପରିଚୟ ଦେଇଛନ୍ତି । ବହୁ ଉପାଦେୟ ଲେଖା ଇଂରାଜୀ, ସଂସ୍କୃତ, ହିନ୍ଦୀ ତଥା ବିଭିନ୍ନ ଭାରତୀୟ ଭାଷାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇ ପାଠକମାନଙ୍କ ଅପୂର୍ବ ସ୍ୱୀକୃତି ଲାଭ କରିଛି । ବଳିଷ୍ଠ ସ୍ତମ୍ଭକାର ଭାବେ 'ଝିଟିପିଟି କହେ' ସ୍ତମ୍ଭରେ ଶତାବ୍ଦୀ ନାମରେ ସେ ଦୈନିକ 'ସମାଜ' ପୃଷ୍ଠାରେ ବହୁବର୍ଷ ଧରି ଲେଖି ଆସୁଥିଲେ । ଶ୍ରୀମତୀ ମନୋରମାଙ୍କର ଦେଶାତ୍ମବୋଧକ କବିତା ବହି 'ଭାରତ ମାତା' କବିତା ଏବେ ଅଷ୍ଟମ ଶ୍ରେଣୀ ନିମିତ୍ତ ପ୍ରଚଳନ ହୋଇଛି ।

ଶ୍ରୀମତୀ ମନୋରମା ମହାପାତ୍ରଙ୍କର କବିତା ସାମ୍ରାଜ୍ୟକୁ ପ୍ରଥମ ଭେଟି 'ଜୁଆର ଯେଉଁଠି ଉଠେ', ଯେଉଁଥିରେ କି ନାରୀ ଜୀବନର ଗଭୀର ଅନାବିଳ ଭାବ,

ଦୁଃଖ, ସୁଖର ପ୍ରକୃତ ଚିତ୍ର ଭାସି ଉଠେ । ସେହିପରି 'ବୈଦେହୀ ବିସର୍ଜିତା' ଓ 'ରୂପମ୍ ରୂପମ୍ ପ୍ରତିରୂପମ୍' ପ୍ରକାଶିତ ହୋଇ ଖୁବ୍ ପ୍ରସିଦ୍ଧି ଲାଭ କରିଅଛି । ଅନ୍ୟାନ୍ୟ କୃତିତ୍ୱ ମଧ୍ୟରେ 'ସମୟ ପୁରୁଷ' (୨୦୦୮), ସ୍ମୃତି ଚନ୍ଦନ, ମଧୁବାତା ଋତାୟତେ (୧୯୯୦), ବନ୍ଦ ଘର୍ କୀ କିବାଡ୍ (ହିନ୍ଦୀ) ଇତ୍ୟାଦି ପାଠକ ମହଲରେ ବେଶ୍ ଆଦୃତି ଲାଭ କରିଛି ।

ନାରୀ ନିର୍ଯାତନା ସମ୍ପର୍କରେ ସ୍ପଷ୍ଟ ମତ ରଖି ସେ କହନ୍ତି ଯେ, ନିର୍ଯାତନାର ନବୀକରଣ ହୋଇଅଛି । କଟୁ ବାକ୍ୟ ମାଧ୍ୟମରେ ନିର୍ଯାତନା, ଯାହାର କିଛି ପ୍ରମାଣ ନଥାଏ । ଆଜିର ଅତ୍ୟାଧୁନିକ ଚଳଣି ସମ୍ପର୍କରେ ମତାମତ ଦେଇ କୁହନ୍ତି–

'ମୋର ବିଶ୍ୱାସ ଯେ, ଆଧୁନିକ ଯୁଗର ଝିଅମାନଙ୍କୁ ଯେତିକି ସୁବିଧା ସୁଯୋଗ ଦିଆଯାଉଛି, ନିରାପତ୍ତା ମଧ ଦେବା ଉଚିତ ।'

ଆଧୁନିକତା ସମ୍ପର୍କରେ ତାଙ୍କର ମତ ହେଲା, ଆଧୁନିକତା ଯୁଗ ଭିତରେ ନାହିଁ କି ସମୟରେ ନାହିଁ, ଏହା ଏକ ମାନସିକତା । ଆଧୁନିକ ଯୁଗର ଝିଅମାନେ ଅତୀତକୁ ଚାହୁଁ ନାହାନ୍ତି । ମାତ୍ର ଅତୀତକୁ ଛାଡ଼ି ବର୍ତ୍ତମାନର ସ୍ଥିତି ଅସମ୍ଭବ । ତାଙ୍କର ଧାରଣା ଯେ ପ୍ରାଚୀନ ସଭ୍ୟତା, ସଂସ୍କୃତିକୁ ଆଣି ଜ୍ଞାନ ସହିତ ମିଶାଇ ଆହୁରି ମାର୍ଜିତ କରିବା ଉଚିତ ଏବଂ ଏହି ପଥରେ ସବୁ ସମ୍ପର୍କର ସହଯୋଗ ଲୋଡ଼ା । ପିତା-ମାତା, ଶାଶୁ-ଶ୍ୱଶୁର, ଭାଇ-ଭଉଣୀ, ସ୍ୱାମୀ-ନଣନ୍ଦ, ଏସବୁ ସମ୍ପର୍କକୁ ହେୟ କରି ଆଗକୁ ବଢ଼ିହୁଏ ସତ, ମାତ୍ର ମାନସିକ ସ୍ତରରେ ସଫଳତା ଅସମ୍ଭବ ।

ନାରୀ ସମ୍ପର୍କରେ କହନ୍ତି, 'ବିନାଶ୍ରୟେ ନ ବର୍ତ୍ତନ୍ତି, କବିତା– ବନିତା-ଲତା'– ଏହା ବର୍ତ୍ତମାନର ନାରୀମାନଙ୍କ ପାଇଁ ଯୁକ୍ତିଯୁକ୍ତ ନୁହେଁ । ନାରୀ ଏବେ ପରାଶ୍ରିତା ନୁହେଁ । ସେ ସ୍ୱୟଂସିଦ୍ଧା । ଏବେର ଝିଅଙ୍କ ଆତ୍ମବିଶ୍ୱାସ ଅଧିକ । କୁସଂସ୍କାରକୁ ଏଡ଼େଇ ଆଗକୁ ପାଦ ଥାପିଛି ଆଜିର ନାରୀ । ସେଥିପାଇଁ ତା'ର ପୂର୍ବ ପିଢ଼ି ରକ୍ତାକ୍ତ ହୋଇଛି । ତାଙ୍କରି ରକ୍ତରେ ଭିଜି ଆଜିର ନାରୀ ନିର୍ଭୀକ, ଉନ୍ନତମନା । ପୂର୍ବ ପିଢ଼ିର ବଳିଦାନ ହିଁ ଆଗକୁ ଯିବାରେ ବାଟ ଦେଖାଇଅଛି ଆଜିର ନାରୀମାନଙ୍କୁ ।

ଆଜିର ନାରୀ କର୍ମଠ, ଆତ୍ମନିର୍ଭରଶୀଳା ଓ ସାହସୀ । ତେବେ ହୀନମନ୍ୟତା, କୁସଂସ୍କାର ଇତ୍ୟାଦି ଛାଡ଼ି ସେମାନେ ଏ ଶତାବ୍ଦୀରେ ଶ୍ରେଷ୍ଠତ୍ୱ ହାସଲ କରିପାରିବେ । ମୂଲ୍ୟବୋଧକୁ ଛାଡ଼ି ନାରୀର ସ୍ଥିତି ନାହିଁ । ନାରୀ ଯୁଗେ ଯୁଗେ ସ୍ନେହ, ତ୍ୟାଗ, ପ୍ରେମ ପାଇଁ ସମାଜରେ ପରିଚିତା । ଏସବୁ ବ୍ୟତିରେକେ ନାରୀର ସ୍ଥିତି ଅସମ୍ଭବ ।

ନାରୀମାନଙ୍କ ନିମିତ୍ତ ସନ୍ଦେଶ ଦେଇ ସେ କହନ୍ତି ଯେ, ଆଙ୍ଗିକ ପରିବର୍ତ୍ତନ ସମ୍ଭବ ଏବଂ ବାଞ୍ଛନୀୟ । କିନ୍ତୁ ନାରୀ ସୁଲଭ ଗୁଣ ଛାଡ଼ିବା ନିତାନ୍ତ ଲଜ୍ଜାଜନକ । ନିଜର ସୌନ୍ଦର୍ଯ୍ୟର ଏବଂ କାମନାର ବିନିଯୋଗରେ ଆଗକୁ ବଢ଼ିବା ନାରୀର ଧର୍ମ ନୁହେଁ । ବ୍ୟକ୍ତି ସତ୍ତା ରହିବା ଦରକାର । ଆଉ କାହାରି ସାହାଯ୍ୟ ଦରକାର ନାହିଁ... ପାଦ ସ୍ପର୍ଶ ଦରକାର ନାହିଁ ।

ସ୍ତ୍ରୀ-ସ୍ୱାମୀ ଓ ନାରୀ-ପୁରୁଷ ସମ୍ପର୍କରେ କହନ୍ତି, ଶରୀରରେ, ମନରେ, ଭାବରେ, ଚରିତ୍ରରେ ନାରୀ ନେଇ ପୃଥକ ଅଟନ୍ତି । ଏମାନେ କେହି କାହା ଅପେକ୍ଷା ଶ୍ରେଷ୍ଠ ବା ହୀନ ନୁହନ୍ତି । ସମସ୍ତ ନିର୍ଭର କରେ– କିଏ କିପରି ଭାବରେ ତାହାର ନିଜସ୍ୱ ବୈଶିଷ୍ଟ୍ୟକୁ ଅକ୍ଷୁଣ୍ଣ ରଖେ ।

ନାରୀ-ପୁରୁଷ ଉଭୟେ ଉଭୟଙ୍କୁ ସମ୍ମାନ କରିବା ଉଚିତ । ପୁରୁଷ, ନାରୀକୁ ଅବଜ୍ଞା କରି କବି ହୋଇପାରେ କିନ୍ତୁ ନାରୀ ଏସବୁ ପାରେନା । ନାରୀ ନିଜ ନାମରେ ହିଁ ବିଶାଳ । ନାରୀ ଆତ୍ମା, ବିଚାରବୋଧ ତାକୁ କଦାପି ସ୍ୱାମୀର ଊର୍ଦ୍ଧ୍ୱରେ ନେବାକୁ ଚାହେଁନା ଏବଂ ସ୍ୱାମୀର ସ୍ନେହ, ପ୍ରେରଣା, ଆଶ୍ୱାସନାଭରା କଥା ହିଁ ନାରୀର ସମ୍ବଳ । ସ୍ୱାମୀ ପ୍ରକୃତପକ୍ଷେ ଜଣେ ବିଶ୍ୱସନୀୟ, ପ୍ରେରଣାମୟ ବନ୍ଧୁ । ଏପରି କୁହାଯାଇପାରେ, ଆଜିର ଏହି ଦୁନିଆରେ ଜଣକୁ ସୁଖୀ କରିବା ଯଦି ଅନ୍ୟର ସୁଖର କାରଣ ହୁଏ, ସେତେବେଳେ ହିଁ ବାସ୍ତବିକ ସୁଖ ବ୍ୟାପ୍ତି ହେବା ସମ୍ଭବ ।

ପୁରୁଷ, ସକ୍ରିୟ, ବୁଦ୍ଧିଶୀଳ, ସେ ଭର୍ତ୍ତା କର୍ତ୍ତା ଆଉ ନାରୀର ଶକ୍ତି ମଧୁର ଆଦେଶରେ, ବ୍ୟବସ୍ଥାରେ ଏବଂ ନିର୍ଦ୍ଧାରଣରେ ।

ଲେଖକ-ଲେଖା-ସାହିତ୍ୟ-ସମାଜର ଅବସ୍ଥା ସମ୍ପର୍କରେ ମତ ରଖି କହନ୍ତି, ଆଜିର ଯୁଗରେ ବିଜ୍ଞାନର ଅଗ୍ରଗତି ଘଟିଛି । ଜ୍ଞାନ ଆହରଣର ସୁବିଧା ବଢ଼ିଛି । ତଥାପି ସାହିତ୍ୟରେ ସେ ବେଦନାବୋଧର ଅଭାବ ରହିଯାଇଛି । ଯିଏ ଲେଖେ ସେମାନେ ସମସ୍ତେ କବି ନୁହନ୍ତି । ଆଉ ଯିଏ ଲେଖୁନି ସିଏ କବି ନୁହେଁ ବୋଲି କୁହାଯାଇନପାରେ । ମାତ୍ର କବିତା ଅନ୍ତରକୁ ସ୍ପର୍ଶ କରିବା ଉଚିତ । ନ ହେଲେ ସେ କବିତା ନୁହେଁ ।

ବୁଦ୍ଧିଜୀବୀ ସମ୍ପର୍କରେ ମତ ରଖନ୍ତି ଯେ, ବୁଦ୍ଧିଜୀବୀର ପ୍ରକୃତ ଅର୍ଥ ଏବେ ସ୍ପଷ୍ଟ ବାରି ହୋଇପଡେ, ଆଜିର ଏହି ସମାଜରେ । ଯେଉଁଠି ଏହାର ଆକ୍ଷରିକ ଅର୍ଥ ବୁଦ୍ଧି ବିକାଶ ନୁହେଁ ବରଂ ବୁଦ୍ଧିକୁ ବିକି ଜୀବିକା ଅର୍ଜନ କରିବା ।

ବିବିଧ ପ୍ରତିଭାର ଅଧିକାରିଣୀ ମନୋରମାଙ୍କର ଜୀବନଯାତ୍ରା ଅତି ଚିତ୍ତାକର୍ଷକ ଓ ପ୍ରେରଣାପ୍ରଦ । ଏଭଳି ଏକ ବ୍ୟକ୍ତିତ୍ୱର ଜୀବନୀ ଅନୁକରଣ ଆଜିର ନାରୀ ସମାଜର ଏକାନ୍ତ କାମ୍ୟ ।

ସାହିତ୍ୟ କ୍ଷେତ୍ରରେ ନିଜର ବଳିଷ୍ଠ ଅବଦାନ ନିମିତ୍ତ ସେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ଅନେକ ଥର ପୁରସ୍କୃତ ହୋଇଛନ୍ତି । ସେଗୁଡିକ ମଧ୍ୟରେ- ଫକୀରମୋହନ ସେନାପତି ପୁରସ୍କାର- ରୂପାନ୍ତର, ବିଷୁବ ପୁରସ୍କାର- ପ୍ରଜାତନ୍ତ୍ର ପ୍ରଚାର ସମିତି (ଗଦ୍ୟ) ୧୯୫୬ । ୧୯୫୯ରେ କ୍ଷୁଦ୍ରଗଳ୍ପ ନିମନ୍ତେ ଓ ୧୯୬୬ରେ ଝଙ୍କାର ପୁରସ୍କାର (ପଦ୍ୟ), ୧୯୮୪ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସେହି ୧୯୮୪ରେ ପାଠକ ସଂସଦ ପୁରସ୍କାର, ଗୋ କର୍ଣ୍ଣିକା ପୁରସ୍କାର, ୧୯୮୮ରେ ସୋଭିଏତ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର ସହ ସମସାମୟିକ ରଷୀୟ କବିତାର ଅନୁବାଦ ତାଙ୍କ ବହୁମୁଖୀ ପ୍ରତିଭାର ସ୍ୱାକ୍ଷର ବହନ କରେ । ଦୀର୍ଘ ୫୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ, ଶିଶୁ ସାହିତ୍ୟ, ଏକାଂକିକା, ଅନୁବାଦ ସହ ପ୍ରାୟ ପ୍ରତିଟି ବିଭାଗରେ ନିଜର ପ୍ରତିଭାର ସ୍ୱାକ୍ଷର ଛାଡ଼ି ଅଛନ୍ତି ।

ଜୀବନକାଳ ମଧ୍ୟରେ ତାଙ୍କର ବିଦେଶଗସ୍ତ ସମ୍ପର୍କରେ କହନ୍ତି ଯେ, ସେ ଏକ ସାମ୍ବାଦିକା ହିସାବରେ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କ ସହିତ ୟୁ.ଏସ୍.ଏ., ମରିସସ୍, ଥାଇଲାଣ୍ଡ ଓ ବାଂଲାଦେଶ ଇତ୍ୟାଦି ଗସ୍ତ କରି ଅଛନ୍ତି ।

ସେ ମଧ୍ୟ ସର୍ବଭାରତୀୟ ଲେଖିକା ସଂଘର ଜଣେ ସଭ୍ୟା, ଲୋକସେବକ ମଣ୍ଡଳର ଆଜୀବନ ସଦସ୍ୟା, ଓଡ଼ିଶାର ଦୈନିକ ସମ୍ବାଦପତ୍ର 'ସମାଜ'ର ସମ୍ପାଦିକା, ଓଡ଼ିଶା ନାରୀ ସେବା ସଂଘର ଉପ ସଭାପତି, ଓଡ଼ିଶା ସ୍କାଉଟ୍ ଆଣ୍ଡ ଗାଇଡ୍‌ର ଉପ ସଭାପତି ଓ ସ୍ୱେଚ୍ଛାକୃତ ରକ୍ତଦାତା ସଙ୍ଗଠନର ସଭାପତି ରୂପେ ତାଙ୍କର ଅସୀମ କାର୍ଯ୍ୟଧାରାରେ ଏ ଜାତି ଓ ଜନତାଙ୍କୁ ଅଭିମନ୍ତ୍ରିତ କରିପାରିଛନ୍ତି ।

ଆଜିର ନାରୀ ସଶକ୍ତିକରଣ ଯୁଗରେ ଏହି ମହୀୟସୀ ନାରୀ ମନୋରମା ମହାପାତ୍ରଙ୍କ ଜୀବନୀକୁ ଅନୁଧ୍ୟାନ କରି ତାଙ୍କ ଆଦର୍ଶରେ ବର୍ତ୍ତମାନର ଓ ଉତ୍ତରପିଢ଼ି ଅନୁପ୍ରାଣିତ ହେଲେ ଆମ ସମାଜରେ ଶାନ୍ତି, ସଂହତି ଓ ପ୍ରଗତି ସମ୍ଭବ ହୋଇପାରିବ । ନାରୀ ସମ୍ମାନରେ ଏ ମାଟି ଦେବତାର ବିଚରଣ କ୍ଷେତ୍ର ପାଲଟି ଯିବ ।

ସମ୍ପାଦକ
ଉତ୍କଳ ପ୍ରସଙ୍ଗ

**(ଅନ୍ତରଙ୍ଗ ସାକ୍ଷାତ୍‌କାର ଆଧାରିତ ଆଲେଖ୍ୟ)**

# ଅଶ୍ରୁଳ ଶ୍ରଦ୍ଧାଞ୍ଜଳି



## ପ୍ରଫେସର ରାଜକିଶୋର ମିଶ୍ର

ବିଶିଷ୍ଟ ଶିକ୍ଷାବିତ୍, ସୁସାହିତ୍ୟିକ ତଥା ଓଡ଼ିଶା ରିଭ୍ୟୁର ପ୍ରାକ୍ତନ ସମ୍ପାଦକ

# ସମ୍ପାଦକୀୟ





ମା' ସମଲେଶ୍ୱରୀଙ୍କ ଧବଳମୁଖୀ ବେଶ

''ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ।
ଯା ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ।''

ଶାରଦୀୟ ଦୁର୍ଗାପୂଜା ଅବସରରେ ଜଗତର ମଙ୍ଗଳ କାମନା ସହ
ସମସ୍ତଙ୍କୁ ସଶ୍ରଦ୍ଧ ଅଭିନନ୍ଦନ ।

ସମ୍ପାଦକ





# ଶ୍ରୀମନ୍ଦିରରେ ଶାରଦୀୟ ପୂଜା ଉତ୍ସବ

ଡକ୍ଟର ଭାସ୍କର ମିଶ୍ର

ଓଡ଼ିଶାର ଶାକ୍ତ ପରମ୍ପରାରେ ଶ୍ରୀକ୍ଷେତ୍ରର ଅଧୀଶ୍ୱରୀ ମା' ବିମଳାଙ୍କୁ ଏକ ମୁଖ୍ୟ ଶକ୍ତିରୂପେ ଗ୍ରହଣ କରାଯାଏ । ଶାକ୍ତପୀଠମାନଙ୍କ ମଧ୍ୟରେ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିରରେ ମା' ବିମଳା ପାଦ ପୀଠେଶ୍ୱରୀ ନାମରେ ସୁପ୍ରସିଦ୍ଧା ଅଟନ୍ତି । ଦେବୀ ଭାଗବତ, କାଳିକା ପୁରାଣ ଓ ଅନ୍ୟାନ୍ୟ ଶାକ୍ତଗ୍ରନ୍ଥ ଅନୁଯାୟୀ ଏହି ପାଦପୀଠ ଏକାନ୍ତ ଗୋପନୀୟ ସିଦ୍ଧ ତନ୍ତ୍ରପୀଠ ଅଟେ । ଗବେଷକମାନଙ୍କ ଉଲ୍ଲେଖ ପ୍ରକାରେ ପ୍ରାୟ ତ୍ରୟୋଦଶ ଶତାବ୍ଦୀ ବେଳକୁ ମା' ବିମଳା ଓ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଦୁର୍ଗାମାଧବ ଉପାସନାର ଅୟଆରମ୍ଭ ହୋଇଥିଲା । ଶାରଦା ତିଳକ, ତନ୍ତ୍ର ସାର, ଗୋପାଳାର୍ଚ୍ଚନ ପଦ୍ଧତିର ଅନୁକରଣରେ ବୈଷ୍ଣବ ତନ୍ତ୍ର ମତରେ ଉପାସନା ଧାରା ପ୍ରବର୍ତ୍ତିତ ହେଲା । ଏହା ଫଳରେ ମା' ବିମଳା ଓ ଶ୍ରୀଜଗନ୍ନାଥଙ୍କୁ ଦୁର୍ଗାମାଧବ ସ୍ୱରୂପରେ ଉପଲବ୍ଧି କରିବା ପାଇଁ ବିମଳାଙ୍କ ମନ୍ଦିରରେ ଦୁର୍ଗାମାଧବଙ୍କ ସମ୍ମିଳିତ ଉପାସନାର ବ୍ୟବସ୍ଥା କରାଗଲା । ଭୋଇ ରାଜବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ (ପ୍ରଥମ)ଙ୍କ ସମୟରେ ରାଜଗୁରୁ ବର୍ଦ୍ଧନ ମହାପାତ୍ର 'ଦୁର୍ଗୋତ୍ସବ ଚନ୍ଦ୍ରିକା' ରଚନା କରି ଶାରଦୀୟ ଦୁର୍ଗା ପୂଜାକୁ ସାରା ଓଡ଼ିଶାରେ ସାର୍ବଜନୀନ ରୂପେ ପାଳନ କରିବା ପାଇଁ ଉଦ୍ୟମ କରିଥିଲେ । ସୁତରାଂ ମା' ବିମଳାଙ୍କ ମନ୍ଦିରରେ ଦୁର୍ଗା ଓ ମାଧବଙ୍କର ଏକତ୍ର ପୂଜା ସହିତ ଓଡ଼ିଶାର ଗାଁ ଗହଳରେ ତଥା ସହରମାନଙ୍କରେ ମୃଣ୍ମୟୀ ଦୁର୍ଗା ପୂଜାର ବିଶେଷ ପ୍ରଚଳନ ହୋଇଥିଲା ।



ଭାରତୀୟ ଶାକ୍ତ ପରମ୍ପରାରେ ବର୍ଷ ମଧ୍ୟରେ ମୁଖ୍ୟ ରୂପରେ ବାସନ୍ତିକ ଓ ଶାରଦୀୟ ଦୁଇଟି ଶକ୍ତି ଉପାସନା ଥିଲେ ମଧ୍ୟ ଶାରଦୀୟ ଶକ୍ତି ଉପାସନାର ପ୍ରାଧାନ୍ୟ ରହିଛି । 'ବୃହତ୍ ସାର ସିଦ୍ଧାନ୍ତ'ର ଉଲ୍ଲେଖ ପ୍ରକାରେ ଆଶ୍ୱିନ ଶୁକ୍ଳ ପକ୍ଷରେ ବିଶେଷ ଉତ୍ସବରେ ଶ୍ରୀ ଦୁର୍ଗା ଦେବୀଙ୍କର ସ୍ୱତନ୍ତ୍ର ପୂଜା ବା ଉପାସନା ଧର୍ମ, ଅର୍ଥ, କାମ ତଥା ମୋକ୍ଷ- ଏହି ଚାରି ଫଳ ପ୍ରଦାୟକ ଅଟେ । ଏପରିକି ଦେବୀ ପାର୍ବତୀ ଭଗବାନ ଶଙ୍କରଙ୍କୁ କହିଛନ୍ତି ଯେ, ଶରତକାଳୀନ ଉପାସନା କଲେ ସେ ପ୍ରସନ୍ନ ହୋଇ ଧନ, ଜନ, ଆରୋଗ୍ୟ ଓ ସର୍ବବିଧ ଉନ୍ନତି ପ୍ରଦାନ କରନ୍ତି ।

ପ୍ରତିବର୍ଷ ଶ୍ରୀମନ୍ଦିରରେ ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳ ପକ୍ଷ ନବମୀ ପର୍ଯ୍ୟନ୍ତ ଷୋହଳ ପୂଜା ଅନୁଷ୍ଠିତ ହୋଇଥାଏ । ଏହି ସମୟରେ ଦୁର୍ଗା ଓ ମାଧବ ଇନ୍ଦ୍ରାସନରେ ଉପବିଷ୍ଟ ପୂର୍ବକ ଏକତ୍ର ରୁଣ୍ଡା ହୋଇଥାନ୍ତି । ଅର୍ଥାତ୍ ପରସ୍ପର ମିଳିତ ହୋଇଥାନ୍ତି । ପରମ୍ପରା ଅନୁଯାୟୀ ପ୍ରଥମ ଆଠଦିନ ଧରି ଦୁର୍ଗା ମାଧବ ବିମଳାଙ୍କ ମନ୍ଦିରକୁ ବିଜେ କରନ୍ତି ।

ଏଠାରେ ବନ୍ଦାପନା, ଶୀତଳ ଭୋଗ ଇତ୍ୟାଦି ଅନୁଷ୍ଠିତ ହୋଇଥାଏ । ଏହାପରେ ପରବର୍ତ୍ତୀ ଆଠ ଦିନ ପାଇଁ ରଥାକୃତି ବିମାନରେ ଉଭୟ ଦୁର୍ଗା ଓ ମାଧବ ଶ୍ରୀମନ୍ଦିରରୁ ଦୋଳମଣ୍ଡପ ସାହିସ୍ଥ ନାରାୟଣୀଙ୍କ ମନ୍ଦିରକୁ ଏକ କାଷ୍ଠ ନିର୍ମିତ ସିଂହାସନରେ ଉପବିଷ୍ଟ ହୋଇଥାଆନ୍ତି । ସେଠାରେ ମଧ୍ୟ ବନ୍ଦାପନା, ଶୀତଳ ଭୋଗ, ମାଣ୍ଡୁଅ ଭୋଗ ଇତ୍ୟାଦି ଉଭୟ ଦୁର୍ଗା ମାଧବଙ୍କୁ ସମର୍ପିତ ହୋଇଥାଏ ।

ଶାରଦୀୟ ଦୁର୍ଗୋତ୍ସବ ଶ୍ରୀମନ୍ଦିର ବେଢ଼ାସ୍ଥିତ ଦେବୀ ବିମଳାଙ୍କ ସମେତ, ଭୁବନେଶ୍ୱରୀ, ଉତ୍ତରାୟଣୀ, ବଟ ମଙ୍ଗଳା ଇତ୍ୟାଦି ମନ୍ଦିରରେ ଯଥାରୀତି ପାଳିତ ହୁଏ । ଏତଦ୍‌ବ୍ୟତୀତ ଶ୍ରୀକ୍ଷେତ୍ରସ୍ଥିତ ବିଭିନ୍ନ ସାହିମାନଙ୍କ ମଧ୍ୟରେ ମା' ହରଚଣ୍ଡୀ, ବାସେଳୀ, ଚର୍ଚ୍ଚିକା, ମର୍ଚ୍ଚିକା, ଦକ୍ଷିଣକାଳିକା, ଶ୍ୟାମାକାଳୀ, ବାରାହୀ, ବିଶ୍ୱେଶ୍ୱରୀ, ଆଲାମଚଣ୍ଡୀ, ବାଟମଙ୍ଗଳା, ରାମଚଣ୍ଡୀ ଇତ୍ୟାଦି ଶାକ୍ତପୀଠମାନଙ୍କରେ ମହାଆଡ଼ମ୍ବର ସହକାରେ ଷୋଡଶ ଦିନାତ୍ମକ ଶାରଦୀୟ ପୂଜା ପାଳିତ ହୋଇଥାଏ । ଗଜପତି ମହାରାଜାଙ୍କ ପକ୍ଷରୁ ବରଣୀୟ ଶ୍ରୋତ୍ରିୟ ବ୍ରାହ୍ମଣମାନେ ଶକ୍ତିପୀଠମାନଙ୍କରେ ଚଣ୍ଡୀ ପାଠ, ବିଷ୍ଣୁ ସହସ୍ରନାମ ଇତ୍ୟାଦି ପଠନ କରିଥାନ୍ତି ।

ଶାରଦୀୟ ପୂଜା ଉପଲକ୍ଷେ ଶ୍ରୀମନ୍ଦିରରେ ଅନୁଷ୍ଠିତ ବିଧିବିଧାନ ଅନୁଯାୟୀ ଚଳନ୍ତି ପ୍ରତିମା ଶ୍ରୀ ଦୁର୍ଗା ଦେବୀଙ୍କର ସହସ୍ର କୁମ୍ଭାଭିଷେକ ବିଧି ଅନୁଷ୍ଠିତ ହୋଇଥାଏ । ଏହି ସମସ୍ତ କୁମ୍ଭାଭିଷେକ ଅବସରରେ ଶ୍ରୀମନ୍ଦିରରେ ଦୈନନ୍ଦିନ ନୀତି ଭଳି ସକାଳ ଧୂପ ସମାପନ ପରେ ଭଣ୍ଡାର ଘରୁ ଦୁର୍ଗା ରତ୍ନ ସିଂହାସନାଧିଷ୍ଠିତ ଦେବୀ ସୁଭଦ୍ରାଙ୍କଠାରୁ ଆଜ୍ଞାମାଳ ପାଇ ପତି ମହାପାତ୍ରଙ୍କ ହସ୍ତରେ ମାଜଣା ମଣ୍ଡପ ଖଟ ଉପରେ ବିଜେ ହୁଅନ୍ତି । ସେଠାରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ଦୁର୍ଗା ଦେବୀଙ୍କୁ ସହସ୍ର କୁମ୍ଭ ଜଳ ଲାଗି କଲା ପରେ ଶ୍ରୀଅଙ୍ଗ ପୋଛା ପୂର୍ବକ ନୂତନ ବସ୍ତ୍ର ଲାଗି ହୋଇ ବେଶ, ଶୀତଳ ଭୋଗ, ବନ୍ଦାପନା ନୀତି ଅନୁଷ୍ଠିତ ହୋଇଥାଏ । ତତ୍‌ପରେ ଦେବୀ ଦୁର୍ଗାଙ୍କୁ ଭଣ୍ଡାର ଘର ଦ୍ୱାରଠାରେ ବିଜେ କରାଯିବା ପରେ ଶ୍ରୀମାଧବ ଆଜ୍ଞାମାଳ ପ୍ରାପ୍ତ ହୋଇ ସେଠାରେ ଉପସ୍ଥିତ ପୂର୍ବକ ଦୁହେଁ ଏକତ୍ର ରୁଣ୍ଡା ହୋଇ ଝୁଲଣ ମଣ୍ଡପ ତଳେ ଥିବା ପାଲିଙ୍କିରେ ବିଜେ କରନ୍ତି । ଏହା ପୂର୍ବରୁ ଦେବୀ ବିମଳାଙ୍କ ସହସ୍ର କୁମ୍ଭ ପୂଜା, ଚଣ୍ଡୀ ପାଠ, ଜପ, ହୋମ, ଷୋଡଶ ଉପଚାରରେ ଭୋଗ, କର୍ପୂର ଆଳତି, ବନ୍ଦାପନାଦି ନୀତି ହୋଇଥାଏ । ଏସବୁ ନୀତି ସମାପନ ପରେ ଶ୍ରୀ ଦୁର୍ଗା ମାଧବ ଏକତ୍ର ବିମଳା ମନ୍ଦିରର ଜଗମୋହନସ୍ଥିତ ଏକ କାଷ୍ଠ ନିର୍ମିତ ଖଟ ଉପରେ ପୂର୍ବାଭିମୁଖ ହୋଇ ବିଜେ କରିଥାନ୍ତି । ଆଠଦିନ ଏହିପରି ବିଧି ପାଳିତ ହେବା ପରେ ନବମ ଦିନଠାରୁ ପରବର୍ତ୍ତୀ ଆଠ ଦିନ ଦୋଳମଣ୍ଡପ ସାହିସ୍ଥ ନାରାୟଣୀଙ୍କ ମନ୍ଦିରକୁ ରଥାକାର ବିମାନରେ ଯାତ୍ରା କରିଥାନ୍ତି । ଏହାକୁ 'ଶାକ୍ତ ଗୁଣ୍ଡିଚା' ମଧ୍ୟ କୁହାଯାଏ ।

ଶ୍ରୀ ବିମଳା ଦେବୀଙ୍କ ନିକଟରେ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଅନୁଷ୍ଠିତ କୋଠ ଭୋଗ ମଧ୍ୟରେ ଶାରଦୀୟ ମହାପୂଜାର ରୋଷରେ ନିର୍ମିତ ହେଉଥିବା ସ୍ୱତନ୍ତ୍ର ବିମଳେଇ ପିଠା, ଗଜା ମଣ୍ଡା, ମୁଆଁ ଓ ଥାଳି ଖେଚେଡି ମଣୋହିରେ ବଢ଼ା ଯାଇ ଷୋଡଶ ଉପଚାରରେ ରଥ ସାମନ୍ତ (ଶ୍ରୋତ୍ରିୟ ବ୍ରାହ୍ମଣ)ଙ୍କ ପୂଜା କରାଯାଏ । ଦେବୀ ବିମଳାଙ୍କ ତିନିଧୂପ ଓ ରାତ୍ର ଚନ୍ଦନ ଲାଗି ନୀତି ପରେ ଦୁର୍ଗାମାଧବଙ୍କୁ ଭଣ୍ଡାର ଘରେ ବିଜେ କରାଯାଏ । ଏହିଦିନମାନଙ୍କରେ ଶ୍ରୀବିଗ୍ରହମାନଙ୍କ ତିନି ବାଡରେ ଯାହା ଭୋଗ ଲାଗେ, ସବୁ ଦେବୀ ବିମଳାଙ୍କ ପାଖକୁ ଆସି ବେଲପତ୍ର ପଡି ପୁନଃ ନୈବେଦ୍ୟ ହୋଇଥାଏ । ଏହିଦିନମାନଙ୍କରେ ଅଧିକ ଭୋଗର ତାଲିକା ନିମ୍ନରେ ପ୍ରଦତ୍ତ କରାଗଲା ।

**ସକାଳ ଧୂପ:** କାନ୍ତି ୧ ସରା, ଖେଚେଡି ଫାଳେ

**ମଧ୍ୟାହ୍ନ ଧୂପ:** କାକରା ୫ ଗୋଟି, ମାଠ ପୁଳି ୨ଗୋଟି, ସାନ ଆରିଶା-୧, ବଡ ଆରିଶା-୧

**ସନ୍ଧ୍ୟା ଧୂପ:** ପାରିଜାତକ ୯ଗୋଟି, ଅମାଲୁ-୨

**ବଡସିଂହାର ଭୋଗ:** କ୍ଷୀରି-୧, ଟାକୁଆ-୧

**ଶୀତଳ ଭୋଗ:** ସକାଳ ଧୂପ ପାଇଁ ଖଇ ପାଞ୍ଚ ଓଳି, ମୁଆଁ ୫ଟି, ମଧ୍ୟାହ୍ନ ଧୂପ ପୂଜା ପାଇଁ ୨୮ଟି କୋରା, କଦଳୀ-୭ଟି । ସନ୍ଧ୍ୟା ଧୂପ ନିମନ୍ତେ କୋରା ୨୦ଟି, ପେଡ଼ା-୭ଟି ।



ଏତଦ୍‌ବ୍ୟତୀତ ଶେଷ ତିନି ଦିନ ଅର୍ଥାତ୍ ମହାସପ୍ତମୀ, ମହାଅଷ୍ଟମୀ ଓ ମହାନବମୀରେ ବିମଳା ଦେବୀଙ୍କ ମନ୍ଦିରଠାରେ ଅସ୍ଥାୟୀଭାବେ ରୋଷ ଘର ନିର୍ମିତ ହୋଇ ସଙ୍ଖୁଡି ଭୋଗ ପ୍ରସ୍ତୁତ ପୂର୍ବକ ନୈବେଦ୍ୟ ହୋଇଥାଏ । ଉକ୍ତ ଦିନମାନଙ୍କରେ ଖେଚେଡି ୩ ହାଣ୍ଡି, କ୍ଷୀରି ୨ ହାଣ୍ଡି, ପଖାଳ ୧ ହାଣ୍ଡି, ଭଜା ଏକ ତାଡ ଓ ମାଛ ବେସର ଦେବୀ ବିମଳାଙ୍କୁ ନୈବେଦ୍ୟ ହୋଇଥାଏ । ଉଲ୍ଲେଖଯୋଗ୍ୟ ଯେ ଏହି ଭୋଗ ନୈବେଦ୍ୟ ବିମଳା ମନ୍ଦିରର ପୂଜକ ବା ସେବକଙ୍କ ଦ୍ୱାରା ସମାହିତ ହୋଇଥାଏ ।

ରନ୍‌ସିଂହାସନାଧିଷ୍ଠିତ ଶ୍ରୀବିଗ୍ରହମାନଙ୍କ ପହୁଡ ନୀତି ଶେଷ ହେବା ପରେ ଏବଂ ବିମଳା ମନ୍ଦିରରେ ସନ୍ଧ୍ୟା ଧୂପ ନୀତି ପରେ ବିମଳା ଦେବୀଙ୍କ ପାଳିଆ ସେବକଙ୍କ ଦ୍ୱାରା ଭୋଗ ଲାଗିଥାଏ । ଏହି ପ୍ରସାଦକୁ କେତେକ ସେବକ ତଥା ବ୍ୟକ୍ତିବିଶେଷଙ୍କୁ ଖେଇ ସ୍ୱରୂପ ପାଇଥାନ୍ତି । ଏତଦ୍‌ବ୍ୟତୀତ ଷୋହଳ ପୂଜା ପ୍ରଥମ ଦିନରେ ୧ଟି ନୂତନ ବାର ଲାଗି ଶାଢ଼ି ଏବଂ ସ୍ୱର୍ଣ୍ଣ ଅଳଙ୍କାର ମଧ୍ୟରେ ସୁନା ପଦକ ମାଳି, କୁରୁଜାତକ ମାଳି, ଚମ୍ପାକଢ଼ି ମାଳି, ମୁଣ୍ଡ ମାଳ ମାଳି, ସୁନା କମର, ସୁନା ଝୋବା କଣ୍ଠି ଇତ୍ୟାଦି କେତେକ ପ୍ରକାରର ସ୍ୱର୍ଣ୍ଣ ଅଳଙ୍କାର ବିଭିନ୍ନ ବେଶ ସମୟରେ ଲାଗି ହୋଇଥାଏ । ଷୋହଳ ପୂଜା ଅବସରରେ ମା' ବିମଳା ଦେବୀଙ୍କର ୧୧ଟି ବେଶ ପାଳିଆ ସେବକ, ବଦାନ୍ୟ ବ୍ୟକ୍ତି ଓ ମଠାନୁଷ୍ଠାନମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥାଏ । ମା'ଙ୍କ ଏହି ବେଶ ସେହି ଦିନର ପାଳିଆ ସେବକ ଦ୍ୱାରା ସମ୍ପାଦିତ ହୋଇଥାଏ । ବେଶଗୁଡିକ ମଧ୍ୟରେ (୧) ବନଦୁର୍ଗା ବେଶ (୨) ଭୁବନେଶ୍ୱରୀ ବେଶ (୩) ନାରାୟଣୀ ବେଶ (୪) ଶ୍ରୀ ବଗଳା ବେଶ (୫) ଜୟଦୁର୍ଗା ବେଶ (୬) ଉଗ୍ରତାରା ବେଶ (୭) ମାତଙ୍ଗିନୀ ବେଶ (୮) ଦଶଭୁଜା ବେଶ (୯) ରାଜ ରାଜେଶ୍ୱରୀ ବେଶ (୧୦) ହରଚଣ୍ଡୀ ବେଶ ଓ (୧୧) ସିଂହ ବାହିନୀ ବେଶ ।

ଉଲ୍ଲେଖଯୋଗ୍ୟ ଯେ, ସିଂହବାହିନୀ ବେଶ ଷଷ୍ଠୀ ତିଥିରେ ଅନୁଷ୍ଠିତ ହୋଇ ନବମୀ ପର୍ଯ୍ୟନ୍ତ ରହିଥାଏ । ଉପରିଲିଖିତ ବେଶମାନଙ୍କ ମଧ୍ୟରେ ଏକ ବେଶକୁ ମା' ବିମଳା ମନ୍ଦିରର ପାଳିଆ ସେବକଙ୍କ ବକ୍ତବ୍ୟ ଅନୁଯାୟୀ 'ନୀଳ ସରସ୍ୱତୀ ବେଶ' ନାମରେ କଥିତ ଅଟେ ।

ଶାରଦୀୟ ପୂଜା ଅବସରରେ ଆଶ୍ୱିନ ଶୁକ୍ଳ ଦଶମୀରେ ରାମ, କୃଷ୍ଣ, ମଦନମୋହନ, ଶ୍ରୀ ଦୁର୍ଗା ମାଧବଙ୍କ ଆଜ୍ଞାମାଳ ପ୍ରାପ୍ତ ହୋଇ ପାଲିଙ୍କି, ବିମାନ ଓ ରଥାକାର ବିମାନରେ ବଡ଼ଦାଣ୍ଡସ୍ଥିତ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ ହୋଇଥାନ୍ତି । ସେଠାରେ ପ୍ରସାଦ ଲାଗି, ଶୀତଳ ଭୋଗ ଓ ବନ୍ଦାପନା ନୀତି ଅନୁଷ୍ଠିତ ହେବା ପରେ ଶ୍ରୀମନ୍ଦିରକୁ ବାହୁଡା ବିଜେ ହୋଇଥାଏ ।

ଅତୀତରେ ଦଶହରା ବା ବିଜୟା ଦଶମୀ ଦିନ ଉତ୍କଳର ଗଜପତି ମହାରାଜା ନିଜ ପାତ୍ର ମନ୍ତ୍ରୀଙ୍କ ସହ ସମର କୌଶଳ ପ୍ରଦର୍ଶନ ପାଇଁ ଅସ୍ତ୍ରଶସ୍ତ୍ର ପୂଜା କରୁଥିଲେ । ଏବେ ବି ଶ୍ରୀମନ୍ଦିରରେ ଦଶହରା ଉତ୍ସବ ଅବସରରେ ମହାପ୍ରଭୁମାନଙ୍କ ଆୟୁଧ ପୂଜା ଅନୁଷ୍ଠିତ ହୋଇଆସୁଅଛି । ଏପରିକି ମା' ବିମଳାଙ୍କୁ ରାଷ୍ଟ୍ର ଦେବୀ ରୂପେ ପ୍ରଚ୍ଛନ୍ନ ଭାବରେ ସ୍ୱୀକାର କରି ଓଡ଼ିଶାର ଗଜପତିମାନେ ବିମଳାଙ୍କୁ ସ୍ମରଣ କରି ଯାତ୍ରା କରୁଥିଲେ ।

ଶ୍ରୀମନ୍ଦିରରେ ପାଳିତ ଶାରଦୀୟ ପୂଜା ଉତ୍ସବରେ ଶତାଧିକ ସେବକ, ଶ୍ରୋତ୍ରିୟ ବ୍ରାହ୍ମଣ, ବୀର ନରସିଂହପୁର ବ୍ରାହ୍ମଣ ଶାସନର ରଥ ସାମନ୍ତ, ଦେଉଳ ପୁରୋହିତ, ରାଜଗୁରୁ ପ୍ରମୁଖ ସଂଶ୍ଳିଷ୍ଟ ହୋଇଥାନ୍ତି । ଷୋଡଶ ଦିନାତ୍ମକ ଏହି ପୂଜାରେ ମଧ୍ୟ କେତେକ ତାନ୍ତ୍ରିକ ବିଧିବିଧାନ ଗୋପନୀୟ ଭାବେ ବିମଳା ମନ୍ଦିରରେ ପାଳିତ ହୋଇଥାଏ ।

---

ପ୍ରାକ୍ତନ ଉପ ପ୍ରଶାସକ
ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ, ପୁରୀ

# ଭାସ୍କର୍ଯ୍ୟରେ ଶକ୍ତିଙ୍କର ରୂପ ଓ ରୂପାନ୍ତର

**ଡକ୍ଟର ତୁଳସୀ ଓଝା**

''ଯା ଦେବୀ ସର୍ବ ଭୂତେଷୁ ବିଷ୍ଣୁ ମାୟେତି ଶବ୍ଦିତା ।''

ଆଚାର୍ଯ୍ୟ ଶଙ୍କରଙ୍କର ଏହି ଉକ୍ତିରୁ ଜଣାଯାଏ ସମଗ୍ର ବିଶ୍ୱର ଏକମାତ୍ର ଅଧିଷ୍ଠାତ୍ରୀ ହେଉଛନ୍ତି ମହାଦେବୀ



ଯୋଗମାୟା ଏବଂ ଏହି ମହାଦେବୀଙ୍କୁ ଉପାସନା କଲେ ପରଂବ୍ରହ୍ମଙ୍କର ସାକ୍ଷାତ୍ ହୁଏ ନାହିଁ । ପୁରାଣରେ ଉଲ୍ଲେଖ ଅଛି ।

''ଗଣେଶ ଜନନୀ ଦୁର୍ଗା, ରାଧା ଲକ୍ଷ୍ମୀଃ ସରସ୍ୱତୀ
ସାବିତ୍ରୀ ଚ ସୃଷ୍ଟି ବିଧୌ ପ୍ରକୃତିଃ ପଂଚଧା ସ୍ମୃତା ।''

ସୃଷ୍ଟିର ସଂରଚନା ପାଇଁ ଆଦିଶକ୍ତି ନିଜକୁ ପାଂଚ ଭାଗରେ ବିଭକ୍ତ କରିଥିଲେ । ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ, ରାଧା, ସାବିତ୍ରୀ, କ୍ଷିତି, ଅପ୍, ତେଜ, ମରୁତ ବ୍ୟୋମ ଆଦି ପଂଚ ମହାଭୂତର ରକ୍ଷାକାରିଣୀ ତଥା ମନୁଷ୍ୟର ସମସ୍ତ ଗୁଣମାନଙ୍କର ପ୍ରତୀକାତ୍ମକ ପରିପ୍ରକାଶ-ଯଥା-ଚେତନା, ବୁଦ୍ଧି, ଚିନ୍ତା, ନିଦ୍ରା, କ୍ଷୁଧା, ଛାୟା, ଶକ୍ତି, ତୃଷ୍ଣା, କ୍ଷାନ୍ତି, ଜାତି, ଲଜ୍ଜା, ଶାନ୍ତି, ଶ୍ରଦ୍ଧା, କାନ୍ତି, ଲକ୍ଷ୍ମୀ, ବୃତ୍ତି, ସ୍ମୃତି, ଦୟା ତୁଷ୍ଟି, ମତ ଭ୍ରାନ୍ତି, ବ୍ୟାପ୍ତି ଚିତ୍ତି ଆଦି ଏବଂ ଏହି ପଂଚ ଦେବୀ ବହୁଧା ବିଭକ୍ତ ହୋଇ ମନୁଷ୍ୟର କ୍ରିୟା ଓ ପ୍ରକ୍ରିୟାମାନଙ୍କର ଦ୍ରଷ୍ଟା ଓ ଦୀକ୍ଷା ଦାତ୍ରୀ ହୋଇଥାନ୍ତି । ଏକତାବଦ୍ଧ ହୋଇ ଶତ୍ରୁ ସହିତ ଯୁଦ୍ଧ କରି ସଂସାର ତଥା ସମାଜକୁ ରକ୍ଷା କରିବା ଲାଗି ଦଶ ପ୍ରହରଣ ଧାରିଣୀ ଅପରାଜେୟ ମହାଶକ୍ତିର ଅଧିକାରିଣୀ ଦୁର୍ଗା, ସେହିପରି ମନୁଷ୍ୟର ବୁଦ୍ଧି, ଜ୍ଞାନ, ଆତ୍ମାନ୍ୱେଷଣର ବାଙ୍ମୟ ପରିପ୍ରକାଶର ଅଧିଷ୍ଠାତ୍ରୀ ସରସ୍ୱତୀ, ଧନ ଓ ଧନ ପ୍ରାପ୍ତି ତଥା ଶସ୍ୟ ଉତ୍ପାଦନ, ସଂରକ୍ଷଣ ଓ ବିତରଣର ଅଧିଷ୍ଠାତ୍ରୀ ସୃଷ୍ଟିର ପାଳନକର୍ତ୍ତ୍ରୀ ତଥା ପରଂବ୍ରହ୍ମ ଶ୍ରୀ ପୁରୁଷୋତ୍ତମଙ୍କର କଣ୍ଠଲଗ୍ନା-ତନ୍ନୁଲୀନା ଦେବୀ ମହାଲକ୍ଷ୍ମୀ । ମନୁଷ୍ୟ ହୃଦୟର ସତ୍, ଚିତ୍, ଆନନ୍ଦ ସ୍ୱରୂପିଣୀ ସଚ୍ଚିଦାନନ୍ଦଙ୍କର ହ୍ଲାଦିନୀ ଆରାଧିକା ଶକ୍ତି ଶ୍ରୀରାଧା । ପଂଚଭୂତ ଶରୀରର ପାପବିନାଶ କାରିଣୀ, ସତ୍ୟନିଷ୍ଠା, କଲ୍ୟାଣ କାରିଣୀ ଦେବୀ ସାବିତ୍ରୀ ।



ଏହି ପଂଚ ମାତୃକା ସମୟାନୁକ୍ରମେ ଅଷ୍ଟ, ଷଡ, ଚଉରାଅଶୀ ଆଦି ବିବିଧ ମାତୃ ରୂପରେ ପ୍ରକାଶିତ ହୋଇ ସମଗ୍ର ଭୂ-ଭାରତରେ ପୂଜିତ ହେଲେ, କ୍ରମେ ବହୁ ନାମ ଧାରଣ କରି ଏମାନେ ମନୁଷ୍ୟର ସର୍ବଧର୍ମ ଓ କର୍ମର ପ୍ରତ୍ୟକ୍ଷଦର୍ଶୀ ଓ ପ୍ରତ୍ୟେକ୍ଷ ସାଥି ଭାବରେ ପରିଚିତ ହେଲେ । ଏହି ଆଦି ଶକ୍ତିଙ୍କର ମହିମା ଯେପରି ଅପାର, ଶକ୍ତି ମଧ୍ୟ ସେହିପରି ଅଜେୟ । ତା'ର ନିଦର୍ଶନ ସ୍ୱରୂପ ବିଲଂକା ରାମାୟଣର ଏହି ଅଧ୍ୟାୟଟି ପ୍ରଣିଧାନଯୋଗ୍ୟ ।

''ଅଭିଷେକର ଅବ୍ୟବହିତ ପୂର୍ବରୁ ରାମଚନ୍ଦ୍ର, ଲଙ୍କେଶ୍ୱର ରାବଣଙ୍କୁ ଯେପରି ନିଧନ କଲେ ତାହାର ବିବରଣୀ କୁଳଗୁରୁ ବଶିଷ୍ଠଙ୍କ ସମେତ ଅନ୍ୟ କେତେଜଣ ପାର୍ଷଦଙ୍କ ସମ୍ମୁଖରେ ବର୍ଣ୍ଣନା କରୁଥିବା ବେଳେ ସୀତା ଶ୍ରୀରାମଙ୍କୁ କହିଲେ-

''ଜାନକୀ ବୋଇଲେ ପ୍ରଭୁ ପ୍ରତିଜ୍ଞା ନକର<br>
ମୁହିଁ ନ ମାଇଲେ କାହୁଁ ମରନ୍ତା ଅସୁର ।<br>
ତୁମ୍ଭେ କିବା କଷ୍ଟ ପାଇ ଅଛ ରଘୁରାଣ<br>
ଘୋର କଷ୍ଟ ପାଇଲି ମୁଁ ମାଇଲି ରାବଣ<br>
ଏମନ୍ତ ପ୍ରତିଜ୍ଞା ଯେବେ ଅଛି ରଘୁ ସାଇଁ<br>
ବିଲଂକା ରାବଣକୁ ବଧ କର ଯାଇଁ ।।''

ସୀତାଂକର ଏହି ସ୍ୱର୍ଦ୍ଧିତ ଆହ୍ୱାନରେ ରାମଚନ୍ଦ୍ର ବିଲଂକା ରାବଣକୁ ବଧ କରିବାକୁ ଗଲେ ମାତ୍ର ମାରିବାକୁ ସମର୍ଥ ନ ହେବାରୁ ପୁନଶ୍ଚ ମହାମାୟୀଙ୍କୁ ସ୍ମରଣ କଲେ ଏବଂ ମହାମାୟା ସୀତା ରାବଣ ସମ୍ମୁଖରେ ଆବିର୍ଭୂତ ହୋଇ ତାଙ୍କ ଅପୂର୍ବ ରୂପ ଲାବଣ୍ୟରେ ତାଙ୍କୁ ବିଭ୍ରାନ୍ତ କରିବାରୁ ରାମଚନ୍ଦ୍ର ବିଲଙ୍କା ରାବଣକୁ ବଧ କରିବାରେ ସମର୍ଥ ହେଲେ । ଅସୁର ନିଧନରେ ମହାଦେବୀ ସରସ୍ୱତୀଙ୍କର ଭୂମିକା ମଧ୍ୟ କମ୍ ନୁହେଁ । ବାଗ୍‌ଦେବୀ ସରସ୍ୱତୀ ବୁଦ୍ଧି ଓ ଚେତନାର ଅଧିଷ୍ଠାତ୍ରୀ ଅଟନ୍ତି । ଭସ୍ମାସୁର କଣ୍ଠରେ ବିଜେ କରି ସେ ଭସ୍ମାସୁରର ବୁଦ୍ଧିକୁ ଏପରି ଭ୍ରଷ୍ଟ କରିଥିଲେ ଯେ ସେ ନିଜ ବରରେ ନିଜେ ମୃତ୍ୟୁବରଣ କରିଥିଲା । ଅସୁରମାନେ କଠୋର ତପସ୍ୟା କରି ବ୍ରହ୍ମା ଓ ଶିବଙ୍କୁ ସନ୍ତୁଷ୍ଟ କରି ବହୁ ଅପ୍ରାପ୍ୟ ବସ୍ତୁ ପ୍ରାର୍ଥନା କରନ୍ତି । କିନ୍ତୁ ମହାଦେବୀ ସରସ୍ୱତୀଙ୍କର ସେଥିରେ ଅନୁମୋଦନ ନ ଥିବାରୁ ତାହା ବ୍ୟର୍ଥ ହୋଇଯାଏ । ଏଥିରୁ ଆଦିଶକ୍ତି ମାତୃଶକ୍ତିଙ୍କର ବୈଶିଷ୍ଟ୍ୟ ସହଜରେ ଅନୁମିତ ହୋଇଯାଏ । ଏହା ବ୍ୟତୀତ ଅସୁର ନିଧନ ନିମିତ୍ତ ସ୍ୱୟଂ ପରଂବ୍ରହ୍ମ ମଧ୍ୟ ଆଦିଶକ୍ତିଙ୍କର ସାହାଯ୍ୟ କାମନା କରିଥାନ୍ତି । କଂସକୁ ମାରିବା ପାଇଁ ସ୍ୱୟଂ ପରଂବ୍ରହ୍ମ ଯୋଗମାୟାଙ୍କୁ ମର୍ତ୍ତ୍ୟାଗମନ ନିମିତ୍ତ ପ୍ରାର୍ଥନା କରିଥିଲେ ।

''ଦୁର୍ଗାଙ୍କୁ ନିକଟେ ବସାଇ<br>
କହନ୍ତି ପ୍ରଭୁ ଭାବଗ୍ରାହୀ<br>
ଅମ୍ବିକା ଶୁଣ ମୋ ଉତ୍ତର<br>
ବହନ ଯାଅ ମର୍ତ୍ତ୍ୟପୁର<br>
ଜନ୍ମିବୁ ଯଶୋଦା ଉଦରେ<br>
ମୁଁ ପୁଣି ଯିବି ମଂଚପୁରେ<br>
ଦେବକୀ ଗର୍ଭେ ହେବି ଜାତ<br>
ମୋତେ ଘେନିଣ ଯିବେ ତାତ<br>
ତୋତେ ଆଣିବେ ମୋତେ ଥୋଇ<br>
ଏକଥା ନ ଜାଣିବେ କେହି<br>
ମଂଚେ ହୋଇବୁ ତୁ ଯେ ଜାତ<br>
ଜଗତେ ହୋଇବୁ ବିଖ୍ୟାତ<br>
ଶୁଣ ବଚନ ଆଦି ମାତା<br>
ଫେଡି ଦେବକୀ ଦୁରବସ୍ଥା ।''

ଏଥିରୁ ପ୍ରତିପାଦିତ ହୁଏ ଦେବୀ ସର୍ବଦା ଶକ୍ତି ରୂପରେ ଦେବଂକର ସମସ୍ତ କାର୍ଯ୍ୟର ସହାୟିକା ହେଇଥାନ୍ତି । ଦେବୀଙ୍କ ଉପସ୍ଥିତିକୁ ସ୍କନ୍ଦ ପୁରାଣରେ ଏହିପରି ବର୍ଣ୍ଣନା କରାଯାଇଛି ।

''ତସ୍ମୈ ପ୍ରବୃତ୍ତି ରୂପାୟ ବ୍ରହ୍ମଣେ ପରମାତ୍ମନେ<br>
ପ୍ରବୃତ୍ତି ରୂପା ଶକ୍ତିଃ ଶ୍ରୀ ପ୍ରବର୍ତ୍ତୟତି ଯଦ୍ଧବିଃ ।''

(ସ୍କନ୍ଦ ପୁରାଣ/୨୯/୨୩)

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଦେବୀ ସତ୍ତା ଦେବୀତ୍ୱର ବନ୍ଧନ ମଧ୍ୟରେ କେବଳ ଆବଦ୍ଧ ନ ରହି ମନୁଷ୍ୟର କଳା ଚେତନା, କାବ୍ୟ ଚେତନା, ଭାସ୍କର୍ଯ୍ୟ



ଚେତନାର ଉନ୍ମେଷକ ଭାବରେ ମଧ୍ୟ ପରିଣତ ହୋଇଛି । ଏହାର ବହୁବିଧ ଉଦାହରଣ ଆମର ଚିତ୍ରକଳା, ଭାସ୍କର୍ଯ୍ୟ କଳା, ତଥା କାବ୍ୟ କବିତା ଆଦିରେ ଦୃଶ୍ୟମାନ ହୁଏ । ଅତଏବ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ସତ୍ତା ମଧ୍ୟରେ ସ୍ତ୍ରୀ ସତ୍ତା ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ । କବି ଅଚ୍ୟୁତା ନନ୍ଦ ତାଙ୍କର ଅମର କାବ୍ୟ 'ଶୂନ୍ୟ ସଂହିତା'ରେ ଯଥାର୍ଥରେ ଲେଖିଛନ୍ତି–

''ଏକ ବୀଜ ବେନି ଫାଳ ଯୁଗଳ ଅଙ୍ଗରେ
ଆଗେ ରାଧା ପଛେ ମୁହିଁ ଲମ୍ପଟ ଭାବରେ ।''

ଶକ୍ତି ଆଗେ ଆଗେ ଚାଲନ୍ତି ଏବଂ ଶିବ ତାଙ୍କର ଅନୁଧାବନ କରନ୍ତି ।

ମା' କୋଳ ମନୁଷ୍ୟର ସବୁଠାରୁ ନିରାପଦ ଆଶ୍ରୟସ୍ଥଳ । ତେଣୁ ଭାରତୀୟ ସଂସ୍କୃତିରେ ମାତୃଶକ୍ତି ହିଁ ମନୁଷ୍ୟର ପୂଜା ଚରଣ ବିଧିରେ ପ୍ରଥମ ସ୍ଥାନ ଅଧିକାର କରିଛି । ସମୁଦ୍ର ଗୁପ୍ତଙ୍କ ସମୟରେ ତାଙ୍କ ପ୍ରଚଳିତ ମୁଦ୍ରାରେ ଏକ ସରସ୍ୱତୀ ମୂର୍ତ୍ତି ରହିଥିବାର ଦୃଷ୍ଟିଗୋଚର ହୁଏ । କେବଳ ଆର୍ଯ୍ୟ ସଂସ୍କୃତି ନୁହେଁ ଦ୍ରାବିଡ ସଂସ୍କୃତିରେ ମଧ୍ୟ ମାତୃପୂଜା ପ୍ରଚଳିତ ଥିଲା । ମହେନ୍‌ଜୋଦାର ଓ ହରପ୍ପାରୁ ମିଳିଥିବା ସିନ୍ଧୁ ସଭ୍ୟତାର ପ୍ରାଚୀନ କୀର୍ତ୍ତିମାନଙ୍କୁ ନିରୀକ୍ଷଣ କଲେ ଦେଖାଯାଏ ସେମାନଙ୍କ ମଧ୍ୟରେ ମାତୃମୂର୍ତ୍ତିର ସଂଖ୍ୟା ସର୍ବାଧିକ ।

ଓଡିଶାର ଗାଁ ଗଣ୍ଡା ପାହାଡ ନଦୀକୂଳ, ଉପବନମାନଙ୍କରେ ଅସଂଖ୍ୟ ମାତୃପୀଠ ଦେଖିବାକୁ ମିଳେ । ଏହାର ଏକମାତ୍ର ଉଦ୍ଦେଶ୍ୟ ବିପଦ ପଡିଲେ ମା' ହିଁ ପ୍ରଥମେ ହାତ ବଢାଇ ଦେଇ ତା'ର ସନ୍ତାନକୁ ରକ୍ଷା କରିବେ । ଏହି କ୍ରମରେ ଦେଖିଲେ ଓଡିଶାରେ ପାଂଚ ହଜାରରୁ ଅଧିକ ଶକ୍ତିପୀଠ ରହିଛି । ଏହାବ୍ୟତୀତ ବର, ଆମ୍ବ, ଓସ୍ତ, କେନ୍ଦୁ ଆଦି ବୃକ୍ଷ ତଥା ପଥର ଖଣ୍ଡରେ ସିନ୍ଦୂର ଲଗାଇ ଗ୍ରାମ ଦେବତୀ ଭାବରେ ଶକ୍ତିଙ୍କର ଅର୍ଚ୍ଚନା ମଧ୍ୟ କରାଯାଇଥାଏ । ଏପରିକି ସ୍ୱୟଂ ଜଗନ୍ନାଥଙ୍କୁ ମଧ୍ୟ ଦକ୍ଷିଣ କାଳୀକା ଭାବରେ ଉପସ୍ଥାପନ କରାଯାଇଥାଏ । ମହାପ୍ରଭୁ ଜଗନ୍ନାଥଙ୍କର ଦକ୍ଷିଣ ଭାଗରେ ସ୍ୱୟଂ ଜଗଦ୍ଧାତ୍ରୀ ଯୋଗମାୟା ଆସୀନ । ଏହା ସହିତ ଶ୍ରୀମନ୍ଦିର ଭିତରେ ସ୍ୱତନ୍ତ୍ର ମନ୍ଦିରରେ ବେଢାକାଳୀ, ବିମଳା, ସରସ୍ୱତୀ, ଭୁବନେଶ୍ୱରୀ, ଲକ୍ଷ୍ମୀ, ଶୀତଳାଙ୍କ ଉପସ୍ଥିତି ଶକ୍ତି ପୂଜନର ପରଂପରା ଓ ଆବଶ୍ୟକତାଙ୍କୁ ସ୍ୱୟଂସିଦ୍ଧ କରିଥାଏ ।

କେବଳ ଭାରତ ବା ଓଡିଶା ନୁହଁ ପୃଥିବୀର ବିଭିନ୍ନ ଅଂଚଳରେ ମାତୃମୂର୍ତ୍ତିଙ୍କର ପୂଜା ପ୍ରଚଳନ ଅଛି । ଇରାନ୍, ଇରାକ୍, ଦକ୍ଷିଣ ଋଷିଆ, ମେସୋପଟାମିଆ, ପାରସ୍ୟ ଓ ପୂର୍ବ ୟୁରୋପ ଆଦି ଦେଶରେ ପ୍ରାଚୀନ କାଳରୁ ମାତୃ ପୂଜାର ପରଂପରା ରହିଆସିଛି । ସର୍ବତ୍ର ଭକ୍ତ ତା'ର ସର୍ବୋତ୍ତମ ଐଶ୍ୱର୍ଯ୍ୟ ଦେଇ ଏହି ମାତୃମୂର୍ତ୍ତିକୁ ସୁନ୍ଦର ସୁଦୃଶ୍ୟ କରିବାର ପ୍ରଚେଷ୍ଟା କରି ଆସିଛି । ମାତୃ ବନ୍ଦନା କଲାବେଳେ ମଧ୍ୟ କବି ମାତୃସତ୍ତାର ଅନୁପମ ମାଧୁର୍ଯ୍ୟ ଓ ଲାବଣ୍ୟର ବର୍ଣ୍ଣନା କରିବାକୁ ପଛାଇ ନାହିଁ । 'ସ୍ତନ ଯୁଗ ଶୋଭିତ ମୁକ୍ତା ହାରେ' ବର୍ଣ୍ଣନା କଲାବେଳେ ଭକ୍ତି ରସରେ ସୌନ୍ଦର୍ଯ୍ୟ ତୃଷ୍ଣା ସମ୍ମିଳିତ ହୋଇଯାଇଛି ।

ଏହି ଦେବୀ ସମଗ୍ର ନାରୀ ସତ୍ତା ମଧ୍ୟରେ ବିଛାଡି ହୋଇ ରହିଛନ୍ତି । ମାତା ରୂପରେ, ଭଗ୍ନୀ ରୂପରେ, ପ୍ରେମିକା ରୂପରେ, ଧାତ୍ରୀ ରୂପରେ, ଅଂସଖ୍ୟ ବିଭକ୍ତିରେ ବର୍ଣ୍ଣାୟିତ ସେ । ଏକାଧାରରେ ସେ ପ୍ରତ୍ୟେକ ମନୁଷ୍ୟର ମାୟାଶକ୍ତି କ୍ରିୟା ଶକ୍ତି ଓ ଇଚ୍ଛା ଶକ୍ତି । ଅଥଚ ସାଂପ୍ରତିକ କାଳରେ ଯତ୍ରତତ୍ର ଦେଖାଯାଏ ଏହି ଦେବୀ ସତ୍ତା, ଯାହା ନାରୀ ସତ୍ତା ଭାବରେ ପୃଥିବୀରେ ଆତଜାତ ହେଉଛି । ତା'ର କେତେକ କ୍ଷେତ୍ରରେ ଅମର୍ଯ୍ୟାଦା ହେଉଛି । ରାବଣ ସୀତାଙ୍କୁ ଚୋରାଇ ନେଇଥିଲେ ମଧ୍ୟ କୌଣସି ସମୟରେ ସେ ସୀତାଙ୍କର ମର୍ଯ୍ୟାଦା ହାନି ଘଟାଇ ନାହିଁ । ଯେଉଁ ଦେବୀଙ୍କୁ ନଅ ଦିନ ଧରି ଏତେ ଆଦର ଯତ୍ନରେ ଏତେ ଭକ୍ତିରେ ସେମାନେ ପୂଜା କରୁଛନ୍ତି ସେଇ ଦେବୀ ତାଙ୍କ ଗୃହ ପ୍ରାଂଗଣରେ ଅବସ୍ଥାନ କରୁଛନ୍ତି । କୁମାରୀ, ଗୌରୀ ଓ କାଳୀ ରୂପରେ । ଯେ ସର୍ବଦା ଓ ସର୍ବଥା ପୂଜନୀୟା ।

ସେହିପରି ନାରୀ ମଧ୍ୟ ଭୁଲିଯିବା ଉଚିତ୍ ନୁହେଁ– ସେ ମାୟାଶକ୍ତି, ସେ କ୍ରିୟାଶକ୍ତି, ସେ ଇଚ୍ଛା ଶକ୍ତି । ତା'ରି ଭିତରେ ଭରି ରହିଛି ସୃଷ୍ଟିର ଅମାପ ବୀଜ ଗଠନର ସୂକ୍ଷ୍ମ

କଣିକା ଓ ପ୍ରଳୟ ବିଧ୍ୱସ୍ତ ଅଗ୍ନି, ସେ ହୋମକୁଣ୍ଡ, ସେ ଯଜ୍ଞଶାଳା ଆଉ ନିଜର ମର୍ଯ୍ୟାଦା ଲଂଘନ କଲେ ସେହିଁ ବିନଷ୍ଟକାରୀ ବନାଗ୍ନି । ଯେଉଁ ରୂପରେ ଦେବୀ ପୂଜିତା- ସେ ରୂପ ତା'ର ଅନ୍ତଃସତ୍ତା ମଧ୍ୟରେ ମଧ୍ୟ ବିଦ୍ୟମାନ । ତାକୁ କେବଳ ପ୍ରଜ୍ୱଳିତ କରି ରଖିବାର ଆବଶ୍ୟକତା ରହିଛି ।

ଶକ୍ତି ପୂଜନ ଓ ଶକ୍ତି ଉପାସନା ଏକ ମହାର୍ଘ ପରଂପରା ଭାବରେ ଭାରତୀୟ ସଂସ୍କୃତିରେ ସ୍ୱୀକୃତ । ଭାରତୀୟ ସଂସ୍କୃତି ସହିତ ପୃଥିବୀର ବହୁ ସଂସ୍କୃତିରେ ଶକ୍ତି ପୂଜନ ପରଂପରା ଦୃଷ୍ଟିଗୋଚର ହୋଇଥାଏ । ସୃଷ୍ଟିର ଆଦି କାଳରୁ ମନୁଷ୍ୟ ହିଁ ଶକ୍ତିର ମହତ୍ତ୍ୱ ଉପଲବ୍ଧି କରି ତା'ର ଉପାସନାର ପ୍ରାରମ୍ଭ କରିଥିଲା । ବୃକ୍ଷଲତା, ଫଳପୁଷ୍ପ, ନଦୀ ସମୁଦ୍ର, ଗ୍ରହ ନକ୍ଷତ୍ର, ଚନ୍ଦ୍ର ସୂର୍ଯ୍ୟଙ୍କର କମନୀୟତା ଯେପରି ଭାବରେ ତାକୁ ଚୈତନ୍ୟ ଉଦୟର ପ୍ରାଥମିକ ସ୍ତରରେ ଆକୃଷ୍ଟ କରିଛି, ସେହିପରି ମେଘର ଗର୍ଜନ, ବିଦ୍ୟୁତ୍‌ର ସ୍ଫୁରଣ, ଝଞ୍ଜା ପବନ, ବନ୍ୟା ବିପ୍ଳାତ, ପ୍ରଚଣ୍ଡ ବଜ୍ରପାତ, ପ୍ରବଳ ତୁଷାର ପାତ ଆଦି ପ୍ରକୃତିର ପ୍ରଳୟଂକରୀ ରୂପମାନ ତାକୁ ଭୟଭୀତ ମଧ୍ୟ କରିଛି ଏବଂ ଏ ବିପର୍ଯ୍ୟୟ ସମୟରେ ପ୍ରକୃତି ମଧ୍ୟ କୋମଳ ହସ୍ତ ପ୍ରସାରଣ କରି ତାକୁ ଆଶ୍ରୟ ଓ ଅଭୟ ପ୍ରଦାନ କରିଛି । ମନୁଷ୍ୟର ପ୍ରାଥମିକ ଆବଶ୍ୟକତା ଖାଦ୍ୟ ବସ୍ତ୍ର ଓ ବାସ ମଧ୍ୟ ପ୍ରକୃତି ଦତ୍ତ । ଫଳରେ ପ୍ରକୃତି ପ୍ରତି ତା'ର ସ୍ୱାଭାବିକ ଆନୁଗତ୍ୟ କ୍ରମେ ତାକୁ ମାତୃଶକ୍ତିର ଉପଲବ୍ଧି କରାଇଛି । କ୍ରମେ ଏହି ମାତୃଚେତନା ତାକୁ ଆଧ୍ୟାତ୍ମିକ ଭାବଚେତନାର ପ୍ରବର୍ତ୍ତନରେ ସହାୟକ ହୋଇଛି । ପ୍ରକୃତି ଓ ଜନ୍ମଦାତ୍ରୀ, ପାଳନକର୍ତ୍ତ୍ରୀ ମାତାଙ୍କଠାରୁ ପ୍ରାରମ୍ଭ ହେଲା ମାତୃଶକ୍ତି ପୂଜନର ପରଂପରା । ଶ୍ରୀମଦ୍ ଭାଗବତରେ ଶକ୍ତି ଶବ୍ଦର ଯେଉଁ ତାତ୍ତ୍ୱିକ ବ୍ୟାଖ୍ୟା କରାଯାଇଛି, ତାହା ଏହିପରି-'ଶ' ଶବ୍ଦର ଅର୍ଥ ମଂଗଳ ଦାୟକ ଓ 'କ୍ତି' ଶବ୍ଦର ଅର୍ଥ ପରାକ୍ରମ ଅର୍ଥାତ୍ ଯେ ଏକାଧାରରେ ଐଶ୍ୱର୍ଯ୍ୟ ଓ ପରାକ୍ରମ ଉଭୟ ପ୍ରଦାନ କରନ୍ତି ସେ ଶକ୍ତି । ସଭ୍ୟତାର ପ୍ରାରମ୍ଭିକ କାଳରେ ମିଶର, ମେଶୋପଟାମିୟା, ଇରାକ୍, ପ୍ରାଗ୍ ଐତିହାସିକ ଭାରତେ ମିଳୁଥିବା ପ୍ରାଚୀନ ପ୍ରମାଣମାନଙ୍କରୁ ଏହି ଶକ୍ତି ପୂଜନର ଆଦିମ ପରଂପରାର ନିର୍ଯ୍ୟାସ ମିଳିଥାଏ। ସ୍ଫୀତ ଉଦର, ପୃଥୁଳ ବକ୍ଷୋଜ ସଂପନ୍ନା କେତେକ ମାତୃମୂର୍ତ୍ତି ମହେନ୍‌ଯୋଦାର ଓ ହରପ୍ପାରେ ମିଳିଥାଏ । ଯାହା ମାତୃଗର୍ଭ, ସନ୍ତାନର ପ୍ରଥମ ଆହାର(ସ୍ତନ୍ୟପାନ)କୁ ସାଂକେତିକ ଭାବରେ ବ୍ୟକ୍ତ କରିଥାଏ । ସଭ୍ୟତାର କ୍ରମ ପରିବର୍ତ୍ତନ ସହିତ ଆଧ୍ୟାତ୍ମିକ ଚେତନା ଓ ଜ୍ଞାନର ପରିପୁଷ୍ଟି କ୍ରମେ ଏହାକୁ ଅଧିକ ପରିପୁଷ୍ଟ ଓ ସଂସ୍କାରିତ କରି ପାରିଥିଲା ଏବଂ ଶକ୍ତିଙ୍କର ସ୍ଥୂଳ ପ୍ରକାଶମାନ ରୂପ ମଧ୍ୟରେ ଯେଉଁ ଅଚିନ୍ତ୍ୟ, ଅବିନାଶୀ, ସୂକ୍ଷ୍ମରୂପ ରହିଛି ତାହାକୁ ମଧ୍ୟ ଉପଲବ୍ଧ କରି ଦେବୀଙ୍କ ସ୍ୱରୂପକୁ ଉଦ୍‌ଘାଟିତ କଲା । ''ଅହମେବାସ ପୂର୍ବଂହି ନାନ୍ୟତ କିଂଚନ୍ନ ଗାଧିପି ''- ଯାହା ହିମାଳୟକୁ ଦେବୀ ସୂଚନା ଦେଇଥିଲେ, ତାହାକୁ ସମଗ୍ର ମାନବ ସମାଜ ସ୍ୱୀକାର କରିନେଲେ ।''

ଭାରତରେ ବହୁ ଧାର୍ମିକ ସଂପ୍ରଦାୟ ରହିଛନ୍ତି । ଶୈବ, ବୈଷ୍ଣବ, ଶାକ୍ତ, ବ୍ରାହ୍ମଣ ଇତ୍ୟାଦି । କିନ୍ତୁ ଶକ୍ତି ଉପାସନା ବିନା କେହି ପୂର୍ଣ୍ଣାଙ୍ଗ ନୁହଁନ୍ତି । ''ସର୍ବେ ଶାକ୍ତା ଦ୍ୱିଜାଃ ପ୍ରୋକ୍ତାନ ଶୈବାନଚ ବୈଷ୍ଣବାଃ ଆଦି ଶକ୍ତି ମୁପାସନ୍ତେ ଗାୟତ୍ରୀ ବେଦ ମାତରମା'' ଭାରତରେ ଶରତ କାଳରେ ଦେବୀଙ୍କର ଯେଉଁ ପୂଜା ଉପାସନା ପ୍ରଚଳିତ ରହିଛି ସେଥିରେ ଦେବୀ ପାଳନ କର୍ତ୍ତ୍ରୀ, ସଂହାର କର୍ତ୍ତ୍ରୀ, ସୃଷ୍ଟି କର୍ତ୍ତ୍ରୀ ଇତ୍ୟାଦି ବହୁଳ ରୂପରେ ପୂଜା ପାଇଥାନ୍ତି । ମହାଶକ୍ତିଙ୍କର ଅନନ୍ତ ରୂପ ରହିଛି । କିନ୍ତୁ ପ୍ରତୀକାତ୍ମକ ଭାବରେ ତାଙ୍କୁ ନଅଭାଗରେ ନବରାତ୍ର ପୂଜାରେ, ଷୋଡଶ ଭାଗରେ ଷୋଳ ପୂଜା ଅବସରରେ, ବା କେତେକ ଦେବୀପୀଠରେ ଏଗାର ବା ତେର ଇତ୍ୟାଦି ଭାଗରେ ପୂଜା ବିଭକ୍ତ କରାଯାଇ ସଜ୍ଜିତ ପୂଜା ମଣ୍ଡପରେ ତାଙ୍କର ଅର୍ଚ୍ଚନା କରାଯାଇଥାଏ । ଏହି ବିଭକ୍ତିକରଣ ରୂପକୁ ସ୍ୱଚ୍ଛ ଭାବରେ ଅନୁଧ୍ୟାନ କଲେ ଶକ୍ତିର ଅନନ୍ତ ପ୍ରକାଶ୍ୟ ଓ ଅପ୍ରକାଶ୍ୟ ସ୍ୱରୂପକୁ ସହଜରେ ଉପଲବଧି କରାଯାଇପାରେ ।

ଶାସ୍ତ୍ରୀୟ ସ୍ୱରୂପରେ ଶକ୍ତି-ଆଶ୍ୱିନ ଶୁକ୍ଳପକ୍ଷ ପ୍ରତିପଦାଠାରୁ ନବମୀ ପର୍ଯ୍ୟନ୍ତ ନବରାତ୍ର ପାଳନ ଅବସରରେ





ତ୍ରୈଲୋକ୍ୟ ଜନନୀ ମା' ଦୁର୍ଗାଙ୍କର ଯେଉଁ ଅର୍ଚ୍ଚନା କରାଯାଏ ସେଥିରେ ଶକ୍ତିଙ୍କର ନଅଟି ଶାସ୍ତ୍ରୀୟ ସ୍ୱରୂପକୁ ପୂଜା କରାଯାଏ । ସେଗୁଡିକ ହେଲା ଶୈଳ ପୁତ୍ରୀ, ବ୍ରହ୍ମ ଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡ, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରୀ, ମହାଗୌରୀ ଓ ସିଦ୍ଧିଦାତ୍ରୀ–

''ପ୍ରଥମଂ ଶୈଳପୁତ୍ରୀ ଚ ଦ୍ୱିତୀୟଂ ବ୍ରହ୍ମଚାରିଣୀ
ତୃତୀୟଂ ଚନ୍ଦ୍ରଘଣ୍ଟେତି କୁଷ୍ମାଣ୍ଡେତି ଚତୁର୍ଥକମ୍
ପଂଚମଂ ସ୍କନ୍ଦ ମାତେତି ଷଷ୍ଠଂ କାତ୍ୟାୟନୀତି ଚ
ସପ୍ତମଂ କାଳରାତ୍ରୀ ତି ମହାଗୌରୀ ତି ଚଷ୍ଟମମ୍
ନବମଂ ସିଦ୍ଧିଦାତ୍ରୀ ଚ ନବଦୁର୍ଗାଃ ପ୍ରକୀର୍ତ୍ତିଣଃ ।''

ଆଦି ଶକ୍ତିଙ୍କର ପ୍ରଥମ ସ୍ୱରୂପ ଶୈଳପୁତ୍ରୀ– ପର୍ବତରାଜ ହିମାଳୟଙ୍କର କନ୍ୟା ସେ । ଦକ୍ଷ ପ୍ରଜାପତିଙ୍କ ଯଜ୍ଞରେ ନିଜକୁ ଭସ୍ମ କଲା ପରେ ପର୍ବତରାଜ ହିମାଳୟଙ୍କର କନ୍ୟାରୂପରେ ଜନ୍ମଲାଭ କରି ସେ ତପଶ୍ଚରଣ କରି ଯୋଗୀ ଶିବଙ୍କୁ ପ୍ରାପ୍ତ ହୋଇଥିଲେ । ବୃଷଭ ବାହନରେ ଉପବିଷ୍ଟା ଦେବୀ ଦକ୍ଷିଣ ହସ୍ତରେ ତ୍ରିଶୂଳ ଏବଂ ବାମ ହସ୍ତରେ ପ୍ରସ୍ଫୁଟିତ ପଦ୍ମଧାରଣ କରିଥାନ୍ତି ।

**ବ୍ରହ୍ମଚାରିଣୀ–** ସ୍ୱରୂପରେ ଦେବୀ ନବରାତ୍ରର ଦ୍ୱିତୀୟ ଦିବସରେ ପୂଜା ପାଇଥାନ୍ତି । ତାଂକର ଏହି ଦିବ୍ୟ ସ୍ୱରୂପ ଅତ୍ୟନ୍ତ ଦିବ୍ୟ ଓ ଜ୍ୟୋତିର୍ମୟ । ଶ୍ୱେତବସ୍ତ୍ର ପରିହିତା ଦେବୀ ଦକ୍ଷିଣ ହସ୍ତରେ ଜପମାଳ ଓ ବାମ ହସ୍ତରେ କମଣ୍ଡଳୁ ଧାରଣ କରିଥାନ୍ତି । ଏହା ତାଙ୍କର ଅନନ୍ୟ ତପସ୍ୟାରତ ବେଶ । ଶୈଳପୁତ୍ରୀ ବ୍ରହ୍ମଚରଣ କରି ନିଜ ତପସ୍ୟାରେ ତ୍ରିଲୋକକୁ ପ୍ରକମ୍ପିତ କରିପାରିଥିଲେ ।

**ଚନ୍ଦ୍ରଘଣ୍ଟା–** ନବରାତ୍ରର ତୃତୀୟ ଦିବସରେ ଦେବୀ ଚନ୍ଦ୍ରଘଣ୍ଟା ଭାବରେ ପୂଜିତ ହୁଅନ୍ତି । ତାଙ୍କର ମସ୍ତକରେ ଅର୍ଦ୍ଧଚନ୍ଦ୍ର ଘଣ୍ଟା । ତାଙ୍କର ଦେହର ବର୍ଣ୍ଣ ସ୍ୱର୍ଣ୍ଣ ସମ ଉଜ୍ଜ୍ୱଳ ସେ ଦଶଭୁଜା । ତାଙ୍କର ଦୁଇ ଭୁଜରେ କମଣ୍ଡଳୁ ଏବଂ ପଦ୍ମ ସୁଶୋଭିତ ହେଲେ ମଧ୍ୟରେ ସେ ସିଂହ ବାହିନୀ ଏବଂ ଅନ୍ୟାନ୍ୟ ସମସ୍ତ ବାହୁରେ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଯୁଦ୍ଧ ନିମିତ୍ତ ଉଦ୍ୟତ ମୁଦ୍ରାରେ ବିରାଜିତ । ତାଙ୍କର ଘଣ୍ଟାଧ୍ୱନି ଓ ଅସୁର ଝଂକାର ଧ୍ୱନି ସମସ୍ତ ଅତ୍ୟାଚାରୀ ଦୈତ୍ୟ, ଦାନବ, ରାକ୍ଷସମାନଙ୍କ ଚିତ୍ତରେ ପ୍ରବଳ ଭୟ ସୃଷ୍ଟି କରିଥାଏ ।

**କୁଷ୍ମାଣ୍ଡ–** ଏହା ଜଗତ୍‌ଜନନୀଙ୍କର ଚତୁର୍ଥ ସ୍ୱରୂପ । ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଭାବରେ ଦେବୀଙ୍କର ଏହି ରୂପ ପରିକଳ୍ପିତ । ମାତା ସୂର୍ଯ୍ୟ ମଣ୍ଡଳରେ ଅନ୍ତଃ ଆଲୋକରେ ନିବାସ କରିଥାନ୍ତି । ତାଙ୍କର କାନ୍ତି ଓ ପ୍ରଭା ସୂର୍ଯ୍ୟଙ୍କ ପରି ଦେଦୀପ୍ୟମାନ । ଶକ୍ତି ଅଷ୍ଟଭୁଜା । ସାତ ଗୋଟି ହସ୍ତରେ ସେ ଧାରଣ କରିଥାନ୍ତି କମଣ୍ଡଳୁ ଧନୁ, ବାଣ, ପଦ୍ମ, ଅମୃତ ପୂର୍ଣ୍ଣ କଳସ, ଚକ୍ର, ଗଦା ଓ ଜପାମାଳ । ସେ ସିଂହ ବାହିନୀ ।

**ସ୍କନ୍ଦ ମାତା–** ଶକ୍ତିଙ୍କର ଏହା ପଞ୍ଚମ ସ୍ୱରୂପ । କୁମାର କାର୍ତ୍ତିକେୟ ବା ସ୍କନ୍ଦଙ୍କର ମାତା ହୋଇଥିବାରୁ ଏହି ଭାବରେ ଦେବୀ ପରିକୀର୍ତ୍ତିତା । ଭଗବାନ ବିଷ୍ଣୁ ତାଙ୍କ କୋଳରେ ସ୍କନ୍ଦ ଭାବରେ ବିରାଜମାନ କରିଥାନ୍ତି । ଦେବୀ ଚତୁର୍ଭୁଜା ଓ ସିଂହ ବାହିନୀ । ଦେବାସୁର ଯୁଦ୍ଧରେ ସ୍କନ୍ଦ ଦେବ ସେନାପତି ଭାବରେ ନିର୍ବାଚିତ ହୋଇଥିଲେ ।

**କାତ୍ୟାୟନୀ–** ଆଦି ଦେବୀଙ୍କର ଏହା ଷଷ୍ଠ ସ୍ୱରୂପ । ଦାନବ ମହିଷାସୁରର ନିଧନ ନିମିତ୍ତ ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱରଙ୍କ ତେଜ ଆହରଣ କରି ଦେବୀ ପ୍ରକଟ ହୋଇଥିଲେ । ଦେବତାମାନଙ୍କର କାର୍ଯ୍ୟସିଦ୍ଧି ନିମିତ୍ତ ମହର୍ଷି କାତ୍ୟାୟନଙ୍କର ଆଶ୍ରମରେ ତାଙ୍କର କନ୍ୟା ରୂପରେ ସେ ଆବିର୍ଭୂତା ହୋଇଥିଲେ । ସେ ଚତୁର୍ଭୁଜା ଓ ସିଂହବାହିନୀ । ତରବାରୀ, ପ୍ରସ୍ଫୁଟିତ ପଦ୍ମ, ଅଭୟ ମୁଦ୍ରା ଓ ବରଦମୁଦ୍ରା ତାଙ୍କ ଚତୁର୍ଭୁଜରେ ସୁଶୋଭିତ ।

**କାଳରାତ୍ରୀ–** ଆଦି ଦେବୀଙ୍କର ଏହା ସପ୍ତମ ସ୍ୱରୂପ । ଦେବୀଙ୍କର ଏହା ପ୍ରଳୟକାଳୀନ ରୂପ ହୋଇଥିବାରୁ ଦେବୀଙ୍କର ବର୍ଣ୍ଣ ଘନ କୃଷ୍ଣ । ମସ୍ତକରେ ମୁକ୍ତଳା କେଶ, କଣ୍ଠରେ ବିଦ୍ୟୁତ ସମ ଉଜ୍ଜ୍ୱଳ ମାଳା, ଗୋଲାକାର ବ୍ରହ୍ମାଣ୍ଡ ସ୍ୱରୂପ ତ୍ରିନେତ୍ର । ତାଙ୍କ ଶ୍ୱାସ ପ୍ରଶ୍ୱାସରେ ସଦା ସର୍ବଦା ଅଗ୍ନିର ଜ୍ୱାଳା ନିର୍ଗତ ହେଉଥାଏ । ଚତୁର୍ଭୁଜା ଦେବୀ ଦୁଇ ହାତରେ ଲୌହ କୀଳକ, ଖଡ୍‌ଗ

ଧାରଣ ସହିତ ବରମୁଦ୍ରା ଓ ଅଭୟ ମୁଦ୍ରାରେ ବିରାଜିତା । ଦେବୀଙ୍କର ବାହନ ଗଧ ।

**ମହାଗୌରୀ–** ଦେବୀଙ୍କର ଏହା ଅଷ୍ଟମ ଶକ୍ତି ସ୍ୱରୂପ-ଗୌରବର୍ଣ୍ଣା, ଚତୁର୍ଭୁଜା ଦେବୀ ଶ୍ୱେତ ବସନ ପରିଧାନ ପୂର୍ବକ ବୃଷଭ ବାହନରେ ଆରୂଢ଼ା । ଭଗବାନ ଶିବଙ୍କୁ ପତି ରୂପରେ ପାଇବା ନିମିତ୍ତ ଘୋର ତପସ୍ୟା କରି ଅତ୍ୟନ୍ତ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଯାଇଥିବାରୁ ପ୍ରସନ୍ନ ସଦାଶିବ ଦେବୀଙ୍କୁ ପବିତ୍ର ଗଂଗା ଜଳରେ ସ୍ନାନ କରାଇଥିଲେ ଏବଂ ଦେବୀ ସ୍ନାନାନ୍ତେ ଉଜ୍ଜ୍ୱଳ ଗୌରବର୍ଣ୍ଣ ଧାରଣ କରି ମହାଗୌରୀ ଭାବରେ ଆବିର୍ଭୂତା ହୋଇଥିଲେ ।

**ସିଦ୍ଧିଦାତ୍ରୀ–** ଶକ୍ତିଙ୍କର ଏହା ନବମ ସ୍ୱରୂପ । ମାତା ଏହି ସ୍ୱରୂପରେ ପଦ୍ମାସନା ଓ ଚତୁର୍ଭୁଜା । ଦକ୍ଷିଣ ହସ୍ତରେ ଗଦା ଓ ଚକ୍ର ଏବଂ ବାମ ହସ୍ତରେ ଶଙ୍ଖ ଓ ପଦ୍ମଧାରଣ କରିଥାନ୍ତି । ଦେବୀ ପୁରାଣରେ ବର୍ଣ୍ଣିତ ହୋଇଛି, ଭଗବାନ ଶଙ୍କର ମା' ଦୁର୍ଗାଙ୍କ କୃପାରୁ ସିଦ୍ଧିଲାଭ କରିଥିଲେ । ତେଣୁ ତାଙ୍କର ଅର୍ଦ୍ଧାଙ୍ଗ ଦେବୀଙ୍କ ଶରୀର ପରି ହୋଇଯାଇଥିବାରୁ ସେ ଅର୍ଦ୍ଧନାରୀଶ୍ୱର ଭାବରେ ନାମିତ ହେଲେ । ଯେଉଁ ଦେବୀ ସକଳ ସିଦ୍ଧିର ଆଧାରଙ୍କୁ ସିଦ୍ଧି ପ୍ରଦାନ କରିଥାନ୍ତି ସେ ସମଗ୍ର ବ୍ରହ୍ମାଣ୍ଡର ସିଦ୍ଧ ସାଧକ ମାନଙ୍କୁ ମଧ୍ୟ କୃପାରସ ଦାନ କରିଥାନ୍ତି । ନବ ଦୁର୍ଗାଙ୍କର ଏହିପରି କଳ୍ପନା ନବ ଶକ୍ତି ଓ କ୍ରିୟାର ପ୍ରତୀକ ଭାବରେ ପ୍ରତୀୟମାନ ହୋଇଥାନ୍ତି ।

ଏହା ବ୍ୟତୀତ ଧବଳମୁଖୀ ଗଂଗା ଓ ରାଜ ରାଜେଶ୍ୱରୀ ମହାଲକ୍ଷ୍ମୀ, ମହା ସରସ୍ୱତୀଙ୍କ ଦିବ୍ୟ ରୂପ ଧାରଣ ପୂର୍ବକ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । କାରଣ ଦେବୀ ଏକାଧାରରେ ସିଂହ ବାହିନୀ, ତ୍ରିଶୂଳ ଧାରିଣୀ, ବଳ ଦାୟିନୀ, ବିଦ୍ୟା ପ୍ରଦାୟିନୀ, ପ୍ରେମ ଦାୟିନୀ, ଶକ୍ତି ସ୍ୱରୂପିଣୀ ଓ ସଂହାର କାରିଣୀ । ଦେବୀଙ୍କର ଏହି ବହୁ ରୂପ ଓ ତା'ର ଉପାସନା ଦେବୀଙ୍କର ଅମାପ ଅନନ୍ତ ଶକ୍ତିର ସୂଚନା ଦିଏ । ସେ ଏକାଧାରରେ ତପଶ୍ଚର୍ଯ୍ୟା କରି ଯେପରି ତ୍ରିଲୋକକୁ ଟଳମଳ କରିପାରନ୍ତି ଠିକ୍ ସେହିପରି ଅସ୍ତ୍ରର ଝଂକାର ସୃଷ୍ଟି କରି ସମଗ୍ର ଅସୁର ଶକ୍ତିକୁ ଥରହର କରିପାରନ୍ତି । ସେ ପୁରୁଷର ସକଳ ଶକ୍ତିର ଆଧାର, ଐଶ୍ୱର୍ଯ୍ୟର ଆଧାର, ଜ୍ଞାନ ଓ ଗାରିମାର ଆଧାର । ନିଜର ମାୟାଶକ୍ତି ଦ୍ୱାରା ସକଳ ବ୍ରହ୍ମାଣ୍ଡକୁ ସୃଷ୍ଟି କରି ପରଂବ୍ରହ୍ମଙ୍କୁ ନିଜର କୋଳରେ ଧାରଣ କରି ମାତୃଶକ୍ତିର ମହିମା ଗାନ କରିଥାନ୍ତି । ସର୍ବଦା ସୌନ୍ଦର୍ଯ୍ୟର ଦ୍ୟୋତକ ଭାବରେ ପଦ୍ମ, ଶକ୍ତିର ପ୍ରକାଶକ ଭାବରେ ଅସ୍ତ୍ର, ତପଶ୍ଚରଣର ପ୍ରତୀକ ଭାବରେ ଅକ୍ଷମାଳା, କଲ୍ୟାଣର ପ୍ରତୀକ ଭାବରେ ବରଦ ହସ୍ତ ଏବଂ ସୃଷ୍ଟିର ପାଳନ କର୍ତ୍ତ୍ରୀ ଭାବରେ ଅମୃତ କଳସ ମଧ୍ୟ ଧାରଣ କରିଥାନ୍ତି । ସ୍ୱୟଂ ଭଗବାନ ସର୍ବଦା ଏହି ମହାଶକ୍ତିଙ୍କର ଆରାଧନା କରିଥାନ୍ତି । ସ୍ୱୟଂ ବିଷ୍ଣୁ ରାମାବତାରରେ ସେତୁ ବଂଧ ପ୍ରତିଷ୍ଠା କରି ରାବଣ ନିଧନ ନିମିତ୍ତ ଶକ୍ତିଙ୍କୁ ପ୍ରାର୍ଥନା କରିଥିଲେ ଠିକ୍ ସେହିପରି ମହାଭାରତ ଯୁଦ୍ଧ କାଳରେ ଯୁଦ୍ଧରେ ଜୟଲାଭ କରିବା ନିମିତ୍ତ ପରଂବ୍ରହ୍ମ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ସହିତ ରହିଥିଲେ ମଧ୍ୟ ଶକ୍ତିଙ୍କୁ ଆରାଧନା କରିବା ନିମିତ୍ତ ଅର୍ଜ୍ଜୁନଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

କେବଳ ଏତିକି ନୁହେଁ ପ୍ରକୃତି ସ୍ୱରୂପିଣୀ ଦେବୀଙ୍କର ରୂପ ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ କ୍ରିୟାର ମୂଳାଧାର ହୋଇଥିବାରୁ ସର୍ବତ୍ର ତାଙ୍କର ଅସ୍ତିତ୍ୱକୁ ଅନୁଭବ କରିହୁଏ । ବହୁବିଧ ଜ୍ଞାନ ବିଜ୍ଞାନ, ଶିଳ୍ପ, କଳା ଓ ଭାସ୍କର୍ଯ୍ୟର ପ୍ରେରଣାଦାତ୍ରୀ ଭାବରେ ମଧ୍ୟ ଦେବୀ ଶକ୍ତି ସ୍ୱୀକୃତା । ତେଣୁ ପ୍ରାୟ ଅଧିକାଂଶ ଦେବୀ ମନ୍ଦିର ଗାତ୍ରରେ ଦେବୀଙ୍କର ବିଭିନ୍ନ ରୂପଚିତ୍ର ଦେଖିବାକୁ ମିଳେ ।

**ଜ୍ୟୋତିର୍ବିଜ୍ଞାନରେ ଶକ୍ତି–** ଜ୍ୟୋତିର୍ବିଜ୍ଞାନ ଶାସ୍ତ୍ରରେ ଦେବୀଶକ୍ତି ମନୁଷ୍ୟ ଜୀବନର ବିଶେଷ ନିୟନ୍ତ୍ରକ ଭାବରେ ବର୍ଣ୍ଣିତ । ମନୁଷ୍ୟ ଜୀବନରେ ଜ୍ୟୋତିବିଜ୍ଞାନର ଏକ ମହତ୍ତ୍ୱ ପୂର୍ଣ୍ଣ ସ୍ଥାନ ରହିଛି । ଆକାଶରେ ଚିକ୍ ମିକ୍ କରୁଥିବା ନକ୍ଷତ୍ରମାନଙ୍କର ସଂଯୋଗରେ ଅନେକ ଆକାର ପ୍ରସ୍ତୁତ ହୁଏ, କାଳ ପୁରୁଷ, ସପ୍ତର୍ଷି, ଧ୍ରୁବ ଭଲ୍ଲୁକ ଇତ୍ୟାଦି ଅନେକ ଆକାର ମଧ୍ୟରେ ଏକ ବିଶେଷ ଆକାର ହେଉଛି ତାରା ଦେବୀ, ନକ୍ଷତ୍ର ମଣ୍ଡଳର ଅଧିଷ୍ଠାତ୍ରୀ ଦେବୀଙ୍କର ଆକୃତି । ନକ୍ଷତ୍ର ମଣ୍ଡଳର କେତେକ ନିର୍ଦ୍ଦିଷ୍ଟ ନକ୍ଷତ୍ରମାନଙ୍କୁ ନକ୍ସା



ଆକାର ଦେଇ ଯୋଡି ଦେଲେ ତାରା ଦେବୀଙ୍କର ରୂପ ପ୍ରସ୍ତୁତ ହୋଇଯାଏ । ପ୍ରତ୍ୟେକ ମଣିଷର ଜନ୍ମ କୁଣ୍ଡଳୀରେ ତାରା ଦେବୀଙ୍କର ଅଙ୍ଗୀଭୂତ କୌଣସି ନା କୌଣସି ନକ୍ଷତ୍ରର ଅଧିବାସ ଥାଏ ଏବଂ ଏହି ସମସ୍ତ ନକ୍ଷତ୍ର ସ୍ତ୍ରୀ ଲିଙ୍ଗଧାରୀ ଅଟନ୍ତି । ଯଥା-ମୂଳା, ରୋହିଣୀ, ଅଶ୍ୱିନୀ, ପୂର୍ବ ଫାଲଗୁନି, ଉତ୍ତରା ଫାଲଗୁନି, କୃତିକା, ପୂର୍ବ ଆଷାଢା, ଉତ୍ତର ଆଷାଢା, ଭଦ୍ରପଦା, ରେବତୀ, ଅନୁରାଧା, ଧନିଷ୍ଠା, ବିଶାଖା, ହସ୍ତା, ପୁନର୍ବସୁ, ଆଶ୍ଳେଷା,ଜ୍ୟୋଷ୍ଠା, ଶ୍ରବଣା, ପୁଷ୍ୟା, ଶ୍ୱାତୀ, ଶତଭିଷା, ମଘା, ମୃଗଶିରା, ଚିତ୍ରା, ଭରଣୀ, ଆଦ୍ରା ଇତ୍ୟାଦି । ଏହି ନକ୍ଷତ୍ରମାନେ ତାରା ଦେବୀଙ୍କର ବିଭିନ୍ନ ଅଂଗରେ ନିବାସ କରନ୍ତି ।

''ପାଦୌ ମୂଳଂ ଜଂଘେଚ ରୋହିଣୀ ଜାନୁନୀ ତଥାଶ୍ୱିନ୍ୟଃ
ଉରୁ ଚାଷାଢ ଦ୍ୱୟମଥ ଗୁହ୍ୟଂ ଫାଲଗୁନି ଦ୍ୱିତୟମ୍ ।।
କଟିରପିଚ କୃତ୍ତିକା ପାର୍ଶ୍ୱୟୋଶ୍ଚ
ଯମଳା ଭବନ୍ତି ଭଦ୍ରପଦାଃ
କୁକ୍ଷିସ୍ଥା ରେବତ୍ୟୋ ବିଜ୍ଞେୟମୁରୋଽନୁରାଧା ଚ ।''
ପୃଷ୍ଠଂ ବିଦ୍ଧି ଧନିଷ୍ଠାଂ ଲୁଜୌ
ବିଶାଖା ସ୍ମୃତୌ କରୌହସ୍ତଃ
ଅଙ୍ଗୁଲ୍ୟଶ୍ଚ ପୁନର୍ବସୁରା ଶ୍ଳେସାସନଙ୍କିତା ଶ୍ଚନଖାଃ ।।
ଗ୍ରୀବା ଜ୍ୟୋଷ୍ଠା ଶ୍ରବଣଂ ଶ୍ରବଣୌ
ପୁଷ୍ୟୋ ମୁଖଂ ଦ୍ୱିଜାଃ ସ୍ୱାତିଃ
ହସିତଂ ଶତ ଭିଷା ଗଥ ନାସିକୋ
ମଘା ମୃଗଶିରୋ ନେତ୍ରେ ।
ଚିତ୍ରା ଲଲାଟ ସଂସ୍ଥା ଶିରୋ
ଭରଣ୍ୟଃ ଶିରୋ ରୁହା ଶ୍ଚାଦ୍ରାଂ
ନକ୍ଷତ୍ର ପୁରୁଷ କୋଽୟଂ କର୍ତ୍ତବ୍ୟୋ ରପମିଚ୍ଛଦ୍ ଭିଃ ।।''

ଅର୍ଥାତ୍- ମୂଳା ନକ୍ଷତ୍ର ପାଦ, ରୋହିଣୀ ଜଂଘା, ଅଶ୍ୱିନୀ ଜାନୁ, ପୂର୍ବା ଓ ଉତ୍ତର ଆଷାଢା ଗୁହ୍ୟ ପୂର୍ବ ଓ ଉତ୍ତରା ଫାଲଗୁନି ଦ୍ୱୟ ନିତମ୍ବ, କୃତ୍ତିକା କଟିଦେଶ, ଭଦ୍ରପଦା ଦୁଇପାର୍ଶ୍ୱ, ଉଦର ରେବତୀ, ସ୍ତନ ଅନୁରାଧା, ପୃଷ୍ଠ ଧନିଷ୍ଠା, ବାହୁ ବିଶାଖା, ହସ୍ତ ହସ୍ତା, ଅଙ୍ଗୁଷ୍ଠ ପୁନର୍ବସୁ, ନଖ ଆଶ୍ଳେଷା, ଗ୍ରୀବା ଜ୍ୟୋଷ୍ଠା, କର୍ଣ୍ଣ ଶ୍ରବଣା, ମୁଖ ଗହ୍ୱର ପୁଷ୍ୟା, ଦନ୍ତ ଶ୍ୱାତୀ, ହାସ୍ୟ ଶତଭିଷା, ନାସିକା ମଘା, ନେତ୍ର ମୃଗଶିରା, କପାଳ ଚିନ୍ତା, ମସ୍ତକ, ଭରଣୀ ଓ କେଶଦାମ ଆଦ୍ରା ଏହିପରି ଭାବରେ ତାରା ଦେବୀଙ୍କର ଦେହର ପରିକଳ୍ପନା । ଏହି ଦେବୀଙ୍କର ପୂଜନ ଦ୍ୱାରା ପୁରୁଷ ପୌରୁଷଦୀପ୍ତ ହୁଏ ଏବଂ ନାରୀ ସମସ୍ତ ସୌନ୍ଦର୍ଯ୍ୟର ଗନ୍ତାଘର ପାଲଟିଯାଏ । ଏହି ନକ୍ଷତ୍ରମାନଙ୍କର ଗତି ଓ ଆଧିପତ୍ୟ ଅନୁସାରେ ମାସମାନେ ନାମାଙ୍କିତ ମଧ୍ୟ ହୋଇଥାନ୍ତି ଏବଂ ଏହି ଅନୁସାରେ ଭଗବାନ ବିଷ୍ଣୁ ବିଭିନ୍ନ ନାମରେ ପୂଜିତ ହୋଇଥାନ୍ତି । ସାଧାରଣତଃ ମୃଗଶିରା ନକ୍ଷତ୍ର ଅନୁଯାୟୀ ମାର୍ଗଶିର ମାସର ପ୍ରାରମ୍ଭ ହୋଇଥାଏ ।

''ମୃଗଶୀର୍ଷଦ୍ୟାଃ କେଶବ ନାରାୟଣ
ମାଧବାଃ ସଗୋବିନ୍ଦାଃ
ବିଷ୍ଣୁ ମଧୁସୂଦନାସୌ୍ୟ ତ୍ରିବିକ୍ରମୋ ବାମନ ଶୈବ
ଶ୍ରୀଧର ନାମା ତସ୍ମାତ୍ ସହୃଷୀ କେଶଶ୍ଚ ପଦ୍ମନାଭଶ୍ଚ
ଦାମୋଦର ଇତ୍ୟେତେ ମାସାଃ
ପ୍ରୋକ୍ତା ଯଥା ସଙ୍କଷ୍ୟମ୍ ।।''

ମାର୍ଗଶିରରେ ଭଗବାନ ବିଷ୍ଣୁ କେଶବ, ପରବର୍ତ୍ତୀ ମାସଗୁଡିକରେ ନାରାୟଣ, ମାଧବ, ଗୋବିନ୍ଦ, ବିଷ୍ଣୁ, ମଧୁସୂଦନ, ତ୍ରିବିକ୍ରମ, ବାମନ, ଶ୍ରୀଧର, ହୃଷିକେଶ, ପଦ୍ମନାଭ ଓ ଦାମୋଦର । ଏହିପରି ବାର ମାସରେ ବାର ରୂପରେ ପୂଜିତ ହୁଅନ୍ତି ତାରା ଦେବୀଙ୍କ ସହିତ । ନକ୍ଷତ୍ରମାନଙ୍କ ପରି ପ୍ରତ୍ୟେକ ଗ୍ରହର ମଧ୍ୟ ଜଣେ ଜଣେ ଅଧିଷ୍ଠାତ୍ରୀ ଦେବୀ ଅଛନ୍ତି । ଗ୍ରହ ପୂଜନ କାଳରେ ପ୍ରଥମେ ଦେବୀଙ୍କୁ ଆବାହନ କରାଯାଇ ତତ୍‌ପରେ ଗ୍ରହ ପୂଜନ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ପରବର୍ତ୍ତୀ କାଳରେ ଏହି ନକ୍ଷତ୍ର ଦେବୀ ତାରା ବୌଦ୍ଧ ଓ ଜୈନ୍ୟ ସ୍ଥାପତ୍ୟରେ ଏକ ବିଶେଷ ସ୍ଥାନ ଗ୍ରହଣ କରିଥିଲେ ।

**ତନ୍ତ୍ରଶାସ୍ତ୍ରରେ ଶକ୍ତି-** ତନ୍ତ୍ର ଶାସ୍ତ୍ରରେ ମଧ୍ୟ ଦେବୀ ପୂଜନ ଓ ଦେବୀଙ୍କର ମହତ୍ତ୍ୱ ବର୍ଣ୍ଣିତ ହୋଇଛି । ବୈଷ୍ଣବ ଶାସ୍ତ୍ରରେ ଯେପରି ଭଗବାନ ବିଷ୍ଣୁଙ୍କର ଦଶାବତାରର ବର୍ଣ୍ଣନା ଦେଖାଯାଏ ଠିକ୍ ସେହିପରି ତନ୍ତ୍ର ଶାସ୍ତ୍ରରେ ଶକ୍ତିଙ୍କର

ଦଶାବତାରର ବର୍ଣ୍ଣନା ରହିଛି । ଯାହାଙ୍କୁ ଦଶମହାବିଦ୍ୟା ଭାବରେ ପୂଜନ କରାଯାଏ ।

''କୃଷ୍ଣସ୍ତୁ କାଳିକା ଦେବୀ ଶ୍ରୀ ରାମସ୍ତାରିଣୀ ତଥା
ଭାର୍ଗବଃ ଷୋଡଶୀ ବିଦ୍ୟା ବାମନୋ ଭୁବନେଶ୍ୱରୀ
ମତ୍ସ୍ୟସ୍ତୁ ବଗଳା ଦେବୀ ବାରାହୋଛିନ୍ନମସ୍ତିକା
ଧୂମାବତୀ କୂର୍ମ ରୂପା ନୃସିଂହୋ ଭୈରବୀ ସ୍ୱୟମ୍
ବୁଦ୍ଧ ରୂପା ମହାଲକ୍ଷ୍ମୀ ମାତଙ୍ଗୀ କଳ୍କୀ ରୂପିଣୀ
ଏତାଦଶ ମହାବିଦ୍ୟା ଅବତାରା ହରେ ଦଶଃ ।''

ଏହାବ୍ୟତୀତ ବଜ୍ରଯାନୀ ବୌଦ୍ଧମାନଙ୍କ ଦ୍ୱାରା ପୂଜିତା ତାରା ଓ ଯୋଗିନୀଗଣ ଶକ୍ତିଙ୍କର ଏକ ଅନନ୍ୟ ରୂପାନ୍ତର କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡିଶାରେ ହୀରାପୁର ଓ ରାଣୀପୁର ଝରିଆଲରେ ଯେଉଁ ଚୌଷଠୀ ଯୋଗିନୀଙ୍କର ପ୍ରସ୍ତର ନିର୍ମିତ ମୂର୍ତ୍ତିମାନ ଉପଲବ୍ଧ ହୁଏ ସେଥିରୁ ଶକ୍ତି ପୂଜନ ଓ ଶକ୍ତି ନିଗୂଢ ତତ୍ତ୍ୱ ସଂପର୍କରେ ବହୁଳ ସୂଚନା ମିଳିଥାଏ । ଏହି ଯୋଗିନୀମାନେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବାହନ ଉପରେ ଆରୂଢା । କ୍ରମାନ୍ୱୟରେ ଚଣ୍ଡିକା ଶବ, ତାରା ଶବ, ନର୍ମଦା ହାତୀ, ଯମୁନା କଚ୍ଛପ, ମାନନ୍ଦା ପଦ୍ମ, ବାରୁଣୀ ତରଂଗ, ଗୌରୀ ଗୋଧି, ଇନ୍ଦ୍ରାଣୀ ହାତୀ, ବରାହୀ ମହିଷ, ପଦ୍ମାବତୀ ସର୍ପ, ଓଷ୍ଟଗ୍ରୀବା ଓଟ, ବୈଷ୍ଣବୀ ପେଚା, ପଂଚ ବରାହୀ ଘୁଷୁରି, ବାଦ୍ୟରୂପୀ ବାଜା, ଚର୍ଚ୍ଚିକା ରାକ୍ଷସୀ, ବେତାଳି ମାଛ, ଛିନ୍ନମସ୍ତା ମସ୍ତକ, ବିନ୍ଧ୍ୟବାସିନୀ ପାହାଡ, ଜଳ କାମିନୀ ବେଙ୍ଗ, ଘଟବରା ସିଂହ, କାକରାଳି କୁକୁର, ସରସ୍ୱତୀ ପଦ୍ମସର୍ପ, ବିରୂପା ତରଂଗ, କୁବେରୀ ସପ୍ତ ଭଣ୍ଡାର, ଭଲୁକୀ ଫୁଲ, ନରସିଂହୀ ଫୁଲ, ବିରଜା-ପଦ୍ମ, ବିକଟ ନୟନା-(ଭଗ୍ନ), ମହାଲକ୍ଷ୍ମୀ ପଦ୍ମ, କୌମାରୀ ମୟୂର, ମହାମାୟା ପଦ୍ମ, ରତି କାମଦେବ, କର୍କରୀ କଂକଡା, ସର୍ପସା ଅଦୃଶ୍ୟ, ଯଶା ଖଟୁଲି, ଅଘୋରା ଛେଳି, ରୁଦ୍ରକାଳୀ କାଉ, ବିନାୟକୀ ଗଧ, ବିନ୍ଧ୍ୟବାଳିନୀ-ମୂଷା, ବୀର କୁମାରୀ-ବିଛା, ମାହେଶ୍ୱରୀ-ବୃଷଭ, ଅମ୍ବିକା-ନେଉଳ, କାମାକ୍ଷୀ-କୁକୁଡା, ଘଟବାରୀ-ସିଂହ, ସ୍ତୁତି-ଚନ୍ଦନ କାଠୁଆ, କାଳୀ-ଶିବ, ଉମା-ଫୁଲ, ନାରାୟଣୀ-କଳସ, ସମୁଦ୍ରୀ ଶଙ୍ଖ, ବ୍ରହ୍ମାଣୀ-ପୁସ୍ତକ, ଜ୍ୱାଳାମୁଖୀ-ଖଟ, ଅଗ୍ନିହୋତ୍ରୀ-ମେଣ୍ଢା, ଅଦିତି-ଶୁଆ, ଚନ୍ଦ୍ରକାନ୍ତି-ଖଟୁଲି, ବାୟୁବେଗା-ଚମରୀ ଗାଈ, ଚାମୁଣ୍ଡା-କସ୍ତୁରୀମୃଗ, ମାରୁତି-ହରିଣ, ଗଂଗା-କୁମ୍ଭୀର, ଧୂମାବତୀ-ବତକ, ଗାନ୍ଧାରୀ-ଗଧ,ଅଜିତା-ହରିଣ, ସୂର୍ଯ୍ୟପୁତ୍ରୀ-ଘୋଡା, ବାୟୁବୀଣା-ହରିଣ ଇତ୍ୟାଦି ଏଥିରୁ ପ୍ରତୀୟମାନ ହୁଏ । ଶକ୍ତି ସମସ୍ତ ଜୀବ ଜଗତର ପାଳନକର୍ତ୍ତ୍ରୀ । ତାଙ୍କ ପାଖରେ କୌଣସି ଜୀବ ନଗଣ୍ୟ ନୁହେଁ । ସମସ୍ତ ପଶୁପକ୍ଷୀ, ଜୀବଜନ୍ତୁ ସରୀସୃପ ଜଳଚର ତାଙ୍କ କରୁଣାର ଅପେକ୍ଷା ରଖନ୍ତି । ଶକ୍ତି ଯେପରି ସାମର୍ଥ୍ୟର ଉତ୍ସ ସେହିପରି ମଧ୍ୟ କରୁଣାର ଉତ୍ସ । ଜଳ ସ୍ଥଳ ଆକାଶ ସର୍ବତ୍ର ସେ ପରିବ୍ୟାପ୍ତ । ଏହା ହିଁ ଶକ୍ତିଙ୍କର ବୈଶିଷ୍ଟ୍ୟ । ଶକ୍ତି ଯେ କେବଳ ସାମର୍ଥ୍ୟର ଉତ୍ସ ବା ଅଭିବ୍ୟକ୍ତି ଏହା ନୁହେଁ । ଶକ୍ତିଙ୍କର ଅନ୍ୟ ଏକ ବୈଶିଷ୍ଟ୍ୟ- ସେ କ୍ରିୟା ଶକ୍ତି ଅର୍ଥାତ୍ ସମସ୍ତ କାର୍ଯ୍ୟର ସେ ମୂଳାଧାର ।

କ୍ରିୟାଶକ୍ତି ହେତୁ ସେ ସମସ୍ତ ଜ୍ଞାନରୁ ଆଧାର ମଧ୍ୟ ଅଟନ୍ତି । ତେଣୁ ସେ କେବଳ ଧର୍ମ ଚିନ୍ତନ ମଧ୍ୟରେ ଆବଦ୍ଧ ନ ରହି ମନୁଷ୍ୟର ସମସ୍ତ କ୍ରିୟା ପ୍ରତିକ୍ରିୟା ସହିତ ଏତେ ଗଭୀର ଭାବରେ ଜଡିତ ଯେ ନୃତ୍ୟ, ସଂଗୀତ, ସ୍ଥାପତ୍ୟ, କଳା ବିଳାସ ଆଦି ସମସ୍ତ ମନୁଷ୍ୟକୃତ ସୃଜନ କଳାର ଆଦି ଆଧାର ଭାବରେ ଶକ୍ତିଙ୍କର ଉପସ୍ଥିତିକୁ ଉପଲବ୍ଧ କରାଯାଇପାରେ । ପ୍ରାଚୀନ କାଳରୁ ଗୁଣାବଳୀ ଅନୁସାରେ ଶକ୍ତିଙ୍କର ବହୁବିଧ ରୂପର ପରିକଳ୍ପନା କରାଯାଇଛି । ଯେପରି ସଂଗୀତ ଗୁରୁ ଭାବରେ ସରସ୍ୱତୀ, ନୃତ୍ୟ ଗୁରୁ ଭାବରେ ପାର୍ବତୀ, ମାତୃମୂର୍ତ୍ତି ଓ ସେବାକାରିଣୀ ଭାବରେ ମହାଲକ୍ଷ୍ମୀ, ତଥା ରସମୟୀ ରାସକ୍ରୀଡାର ସଂଗିନୀ ଭାବରେ ରାଧାଙ୍କର ପରିକଳ୍ପନା । ମନ୍ଦିରର ଗର୍ଭ ଗୃହରେ ଯେପରି ଦେବୀଙ୍କର ପୁରାଣ ପ୍ରସିଦ୍ଧ କଳ୍ପିତ ରୂପ ପୂଜିତ ହୁଏ , ଠିକ୍ ସେହିପର ମନ୍ଦିରର ବାହ୍ୟ ଦେଶରେ ବିଭିନ୍ନ ମୁଦ୍ରାରେ ସ୍ଥାପିତ ନାରୀମୂର୍ତ୍ତି ସମୂହ ଦେବୀଙ୍କର ଶୌର୍ଯ୍ୟ, ସୌନ୍ଦର୍ଯ୍ୟ, ଶକ୍ତି, ବୀର୍ଯ୍ୟ, ଲାସ୍ୟ ତଥା କଳା ବିଳାସର ପରିଚାୟକ ଭାବରେ ସ୍ଥାପିତ ହୋଇଥାନ୍ତି । ଏମାନେ ଦେବୀଙ୍କର ପାର୍ଶ୍ୱଚରୀ ସଖୀ ଭାବରେ ପରିକୀର୍ତ୍ତିତ ।





ବିଭିନ୍ନ ରୂପାଙ୍କନରେ ସଜ୍ଜିତ ଅଳସକନ୍ୟା, ନର୍ତ୍ତକୀ, ବାଦକୀମାନଙ୍କୁ ଦେଖିଲେ ନାରୀର ଅନ୍ତଃ ଚେତନା ଓ ବର୍ହି ଚେତନାର ବିସ୍ତୃତ ରୂପ ଦୃଷ୍ଟିକୁ ଆସେ । ଦେବୀଙ୍କର ଏହି ମାନବୀ କରଣ ଯେପରି ଅଚିନ୍ତ୍ୟ ସେହିପରି ପରମ ଆନନ୍ଦ ଉଦ୍ରେକକାରୀ । ରକ୍ତ ବୀଜର ରକ୍ତ ଶୋଷଣ କରି ଚାମୁଣ୍ଡା ଓ କାଳରାତ୍ରୀ ଅସୁରମାନଙ୍କ ରକ୍ତ ପାନ କରି ଦେବୀଙ୍କ ଚତୁର୍ପାର୍ଶ୍ୱରେ ନୃତ୍ୟ କରୁଥିବାର ଚିତ୍ର ଯେପରି ଚିତ୍ରିତ ସେହିପରି ନାରୀ ଚରିତ୍ରର ସମସ୍ତ ଭାବ ଅନୁଭବର କଳାତ୍ମକ ରୂପ ମନ୍ଦିର ଗାତ୍ରରେ ଉତ୍‌କୀର୍ଣ୍ଣ ।

'ଶିଳ୍ପ ପ୍ରକାଶ' ନାମକ ଏକ ଶିଳ୍ପ ଗ୍ରନ୍ଥରେ ବର୍ଣ୍ଣିତ ରହିଛି-

''ଲୌକିକେ କଥିତୋ ନାରୀ ବଂଧଃ ଶିଳ୍ପ ସମୁଦ୍ ଭବଃ
ବିନା ନାରୀ ଯଥା ବାସଃ ବିନା ନାରୀ ଯଥା କ୍ରୀଡା
ବିନା ଲଳନାଂ ହୀନଂ ଚ ଜାୟତେ ଶିଳ୍ପଂ ନିଷ୍ଫଳମ୍
ଗନ୍ଧର୍ବ ଯକ୍ଷ ରକ୍ଷାଂସି ପନ୍ନଗାଃ କିନ୍ନରାସ୍ତଥା
ଦର୍ଶନାତ୍ ତତ୍ର ମୁହ୍ୟନ୍ତି ନାଗରୀ ଭଂଗି ମୁତ୍ତମାମ୍
ଉତ୍ତମା ରମଣୀ ଶ୍ରେଷ୍ଠା ସର୍ବାଳଂକାର ଭୂଷିତା ।''

ଅର୍ଥାତ୍-ସ୍ତ୍ରୀ ବିନା ଯେପରି କୌଣସି ଗୃହାଙ୍ଗନା ଶୋଭିତ ହୁଏ ନାହିଁ, ସେହିପରି କୌଣସି କଳାକୃତି ସ୍ତ୍ରୀ ମୂର୍ତ୍ତିର ସୌନ୍ଦର୍ଯ୍ୟ ପ୍ରକାଶ ବିନା ପୂର୍ଣ୍ଣାଙ୍ଗ ହୁଏ ନାହିଁ । ଗନ୍ଧର୍ବ, ଯକ୍ଷ, ରାକ୍ଷସ, ପନ୍ନଗ, କିନ୍ନରମାନେ ଏହାଦ୍ୱାରା ଆକୃଷ୍ଟ ହୋଇଥାନ୍ତି । କାରଣ ''ଅଳଂକୃତା ନାରୀ ପୃଥିବୀର ସମସ୍ତ ସୁନ୍ଦର ବସ୍ତୁଠାରୁ ଅଧିକ ସୁନ୍ଦର ।'' ଶକ୍ତିଙ୍କର ଏହି ଲାସ୍ୟମୟୀ ରୂପ, ନାରୀମାନଙ୍କ ଦ୍ୱାରା ସାଧାରଣତଃ ମନ୍ଦିରର ଗବାକ୍ଷ, ଶିଖର, ମୁଖଶାଳା ଆଦି ଶୋଭିତ ହୋଇଥାଏ । ଏହାକୁ ନାରୀ ବଂଧ କୁହାଯାଏ । ଶିଳ୍ପଶାସ୍ତ୍ରରେ ଏହି କନ୍ୟାମାନଙ୍କୁ ଅଳସ କନ୍ୟା ଭାବରେ ପରିଚିତ କରାଯାଇଛି । ନିଜର ମନୋଭାବ, ଭଂଗୀମା ତଥା କାର୍ଯ୍ୟାନୁଯାୟୀ ଏମାନଙ୍କୁ ଅଳସା, ତୋରଣା, ମୁଗ୍ଧା, ମାନିନୀ, ଡାଳ ମାଳିକା, ପଦ୍ମ ଗଂଧା, ଦର୍ପଣା, ବିନ୍ୟାସି, ଧ୍ୱାନାକର୍ଷିତା, କେତକୀ ଭରଣା, ମାତୃମାର୍ତ୍ତି, ଚାମରା, ଗୁଣ୍ଠନା, ନର୍ତ୍ତକୀ, ଶୁକ ଶାରିକା, ନୂପୁର ପାଦିକା, ମର୍ଦ୍ଦଳା ଆଦି ଷୋଳ ଭାଗରେ ବିଭକ୍ତ କରାଯାଇଛି । ପ୍ରାଚୀନ ଶାସ୍ତ୍ରରେ ଅନ୍ୟ ଏକ ସୁନ୍ଦରୀ ନାରୀର ବର୍ଣ୍ଣନା ରହିଛି- ଶାଳ ଭଂଜିକା, ଅର୍ଥାତ୍ ଶାଳ ବୃକ୍ଷର ଡାଳ ଭାଂଗୁଥିବା ଏକ ନାରୀ । ଏହି ନାରୀଟି ଭାସ୍କର୍ଯ୍ୟ ଶିଳ୍ପରେ ମଧ୍ୟ ଦୃଷ୍ଟିଗୋଚର ହୁଏ । ତୋରଣ ଭଂଜିକା ଓ ଶାଳ ଭଂଜିକା । ପୁରାଣରେ ବର୍ଣ୍ଣିତ ରହିଛି ସୁନ୍ଦରୀ ସ୍ତ୍ରୀର ପାଦ ସ୍ପର୍ଶରେ ଅଶୋକ ବୃକ୍ଷରେ କଢ ଦେଖାଯାଏ । ସେହି ରୀତିରେ ଏକ ଅପରୂପା ନାରୀର ପାଦ ଏକ ବୃକ୍ଷ ଉପରେ ଥାଏ ଏବଂ ହାତରେ ଏକ ଡାଳ ଧରିଥିବାର ଦେଖାଯାଏ । ଏହା ବହୁଳ ଭାବରେ ମନ୍ଦିରମାନଙ୍କର ତୋରଣରେ ଦୃଷ୍ଟିଗୋଚର ହୁଏ । ପୂର୍ବରୁ ଏ ସଂପର୍କରେ ବିଶଦ ବର୍ଣ୍ଣନା କରାଯାଇଛି।

ଶିଳ୍ପ ଶାସ୍ତ୍ରର ଏହି ନାରୀ ମୂର୍ତ୍ତି ବା ଯୁବତୀ କନ୍ୟାମାନେ ଅଳଂକାର ଶାସ୍ତ୍ରରେ ବର୍ଣ୍ଣିତ ନାୟିକାମାନଙ୍କ ସହିତ ଅନେକ ସାମ୍ୟ ରଖିଥାନ୍ତି । ଯେପରି ମାନିନୀ, ମୁଗ୍ଧା, ପଦ୍ମଗଂଧା, ଶୁକ ଶାରିକା ଆଦି ନାୟିକାର ଅନୁରୂପ ଅନେକ କାବ୍ୟରେ ମେଘଦୂତ, ହଂସ ଦୂତ ଆଦି ପ୍ରେରିତ ହେଲାବେଳେ ନାୟିକା ତା'ର ପ୍ରିୟ ପକ୍ଷୀ ଶୁକଶାରୀ, ମୟୂର, ପାରା, ହଂସକୁ ହାତରେ ଧରି ନିଜର ଭାବ ବ୍ୟକ୍ତ କରୁଥିବାର ଅନ୍ତରଂଗ ଚିତ୍ର ବର୍ଣ୍ଣନା ସହିତ ସମାନତା ରଖେ । ମନ୍ଦିରର ମଧ୍ୟ ପାଗଠାରୁ ଦକ୍ଷିଣ ବାମ ଦିଗକୁ ସମସ୍ତ ବରାଣ୍ଡିରେ ପୁରୁଷ ମୂର୍ତ୍ତି ସହିତ ସ୍ତ୍ରୀ ମୂର୍ତ୍ତିମାନେ ଧୂପ, ଦୀପ, ଅର୍ଘ୍ୟ, ଚାମର, ଝାଞ୍ଜ ଓ ମୃଦଙ୍ଗ ଆଦି ଧରି ଦେବାର୍ଚ୍ଚନା ଉଦ୍ଦେଶ୍ୟରେ ନୃତ୍ୟ, ଗୀତ କରୁଥିବାର ଦେଖାଯାଏ । ସେଥିରେ ଚାମରା, ନୂପୁର ପାଦିକା, ମର୍ଦ୍ଦଳା ଆଦି ମୂର୍ତ୍ତିମାନେ ବିଦ୍ୟମାନ । କାବ୍ୟ ନାଟକକୁ ରସ ସିକ୍ତ କରିବା ପାଇଁ ଯେପରି ବିଭିନ୍ନ ଶାସ୍ତ୍ରୀୟ ନାୟିକାମାନଙ୍କର ପ୍ରୟୋଗ ହୋଇଛି, ତୋରଣରେ ଛନ୍ଦାୟିତ ଭଂଗୀରେ ଶାୟିତା ତୋରଣା, ସୌନ୍ଦର୍ଯ୍ୟର ଅଭିମାନରେ ଗରିୟସୀ ମାନିନୀ, ଅଳଂକୃତା ନାଗ ମୁଦ୍ରାରେ ବିମୋହିତା ମୁଗ୍ଧା, ଲତା ଛନ୍ଦରେ ପ୍ରଦର୍ଶିତା ଡାଳ ମାଳିକା, ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ପରି ପ୍ରକାଶିକା ପଦ୍ମ ଗଂଧରେ ମୋହିତା ପଦ୍ମ ଗଂଧା, ହାତରେ ଲୀଳା କମଳ, ନିଜ ରୂପକୁ ଦର୍ପଣରେ ଦର୍ଶନ କରି ଆତ୍ମ ବିଭୋରା ଦର୍ପଣା, ନିଜର ମୁଖର ପାର୍ଶ୍ୱ ପ୍ରଦର୍ଶନ କରୁଥିବା ବିନ୍ୟାସା, କେତକୀ ପୁଷ୍ପରେ ସଜ୍ଜିତା ଗୁରୁ ନିତମ୍ୱା



କେତକୀ ଭରଣା, ସଦାଦେବ ସେବାରେ ଚାମର ଧାରଣ ପୂର୍ବକ ଉପସ୍ଥିତା ଚାମରା, ସନ୍ତାନ ବତ୍ସଳା ମାତୃମୂର୍ତ୍ତି ନିଜର ମୁଖକୁ ଅବଗୁଣ୍ଠନ ମଧ୍ୟରେ ସ୍ୱଳ୍ପ ପ୍ରକାଶ କରୁଥିବା ଗୁଣ୍ଠନା, ନୃତ୍ୟ ଛନ୍ଦରେ ଛନ୍ଦାୟିତ ନର୍ତ୍ତକୀ, ମର୍ଦ୍ଦଳ ବାଦିକା କମନୀୟ ଭଂଗୀରେ ନୃତ୍ୟ ପ୍ରସ୍ତୁତି ପୂର୍ବରୁ ପାଦରେ ନୂପୁର ବନ୍ଧନ କରୁଥିବା ନୂପୁର ପାଦିକା ଆଦି ଷୋଡଶ ଅଳସ କନ୍ୟାଙ୍କ ଅପୂର୍ବ ସମାହାର ଚନ୍ଦ୍ରପକ୍ଷ ରାତ୍ରରେ ମନ୍ଦିରକୁ ଏକ ଅପୂର୍ବ କନ୍ଦର୍ପ ନଗରୀରେ ପରିଣତ କରିଦିଏ । ପାଷାଣର ବୁକୁ ଚିରି ସତେଯେପରି ଝରି ଆସେ ଅନର୍ଗଳ ସଂଗୀତର ମଧୁ ବିତାନ, ଯାହା ଅନନ୍ତ କାଳଧରି କବି ଲେଖକ ଭାବୁକଙ୍କୁ ଭାବ ବିହ୍ୱଳ କରିଥାଏ ।

''ନଥିବା ଫୁଲର ବାସ୍ନାରେ ଯେବେ
ପବନ ମଦିରା ହୁଏ
ଅକୁହା କଥାର ଗୁଂଜନେ ଯେବେ
ସ୍ୱପ୍ନ ମୋ ଭିଜିଯାଏ
ଆସ ତୁମେ ତେବେ ଅଳସ କନ୍ୟା ହୋଇ ।।''

ଜୀ.ପାଣି.

**କେବଳ ଭାସ୍କର୍ଯ୍ୟରେ ନୁହେଁ–** ଚିତ୍ରରେ ମଧ୍ୟ ଦେବୀଙ୍କର ଅନୁପମ ନାରୀ ସୌନ୍ଦର୍ଯ୍ୟକୁ ପ୍ରସ୍ଫୁଟନ କରିଥାଏ ଶିଳ୍ପୀ । ଶିଳ୍ପୀର ସେ ପ୍ରଥମ ପ୍ରେରଣାଦାତ୍ରୀ । ଓଡିଆ ପଟ୍ଟଚିତ୍ରର ପ୍ରାରମ୍ଭିକ କାଳରେ ଦୁର୍ଗା, କାଳୀ, ଲକ୍ଷ୍ମୀ, ସରସ୍ୱତୀ, ଦଶମହାବିଦ୍ୟା, ସପ୍ତମାତୃକାଙ୍କ ସହିତ ରସମୟୀ ରାଧାଙ୍କର ଚିତ୍ର ଅଂକନରେ ପଟ୍ଟଚିତ୍ର ଶିଳ୍ପ ପରିପୂର୍ଣ୍ଣତା ଲାଭ କରିଥିଲା । ସଂପ୍ରତି ଏହିଧାରା ମଧ୍ୟ ଅବ୍ୟାହତ ରହିଛି । ଓଷା ଓ ବ୍ରତକଥା ଅନୁଯାୟୀ ମଧ୍ୟ ଦେବୀଙ୍କର ବହୁବିଧ ରୂପ ଚିତ୍ରଣ ପ୍ରଦର୍ଶିତ ହୋଇଥାଏ । ଯାହା ଏକାଧାରରେ ଦେବୀଙ୍କର ବହୁବିଧ ପ୍ରକାଶ୍ୟ ରୂପର ଦ୍ୟୋତନା କହିଲେ ଅତ୍ୟୁକ୍ତି ହେବ ନାହିଁ । କୃଷ୍ଣବର୍ଣ୍ଣା କାଳୀ, ହଳଦିବର୍ଣ୍ଣା କମଳା, କାଂଚନବର୍ଣ୍ଣା ଶ୍ରୀରାଧା, କୁଙ୍କୁମ ବର୍ଣ୍ଣା ଭଗବତୀ ତଥା ସପ୍ତବର୍ଣ୍ଣା ସପ୍ତମାତୃକା, ଦଶ ରଂଗର ଦଶମହାବିଦ୍ୟାଙ୍କର ଅନୁପମ ଚିତ୍ର ଦେବୀଶକ୍ତି ସଂସାରର ସମସ୍ତ ବର୍ଣ୍ଣ ଓ ରୂପରେ କିପରି ସମାହିତ ତାହାର ସୂଚନା ମିଳିଥାଏ ।

ଏହିପରି ଭାବରେ ଶକ୍ତିଙ୍କର ବହୁଳ ରୂପ ଓ ରୂପାନ୍ତର ଦୃଷ୍ଟିଗୋଚର ହୁଏ ଏବଂ ଏହି ସମସ୍ତ ଆଲୋଚନାରୁ ଆମେ ଏହି ସିଦ୍ଧାନ୍ତରେ ପହଂଚିଥାଉ ଯେ ଶକ୍ତିଙ୍କର ରୂପର ରୂପାନ୍ତର ଭାବରେ ସ୍ତ୍ରୀ ସୃଷ୍ଟି ଏ ସଂସାରରେ ଆତଜାତ ହେଉଛି ଏବଂ ସ୍ତ୍ରୀର ରୂପାନ୍ତରିତ ରୂପ ହେଉଛନ୍ତି ଆଦି ଶକ୍ତି । ସେ ଏକାଧାରରେ ଜନ୍ମଦାତ୍ରୀ, ପାଳନକର୍ତ୍ତ୍ରୀ ଓ ସଂହାରକର୍ତ୍ତ୍ରୀ ମଧ୍ୟ । ସୃଷ୍ଟିର ସେ ଆହ୍ଲାଦିନୀ ଶକ୍ତି । ପ୍ରକୃତିଠାରୁ ଜନ୍ମଲାଭ କରି, ପ୍ରକୃତି ଦ୍ୱାରା ପରିପାଳିତ ହୋଇ, ପ୍ରକୃତିର ଅମାପ କଳା ସଂସ୍କରଣରେ ଆହ୍ଲାଦିତ ହୋଇ ଶେଷରେ ପ୍ରକୃତି ମଧ୍ୟରେ ସମସ୍ତ ପ୍ରାଣୀ ଜଗତ ବିଲୀନ ହୁଏ । ଏଣୁ ପ୍ରକୃତି ବା ସ୍ତ୍ରୀ ଶକ୍ତିର ଉପାସନା ସର୍ବାଦୌ ଗ୍ରହଣୀୟ । ଯୁଗ ଯୁଗ ଧରି ବହୁ ମନୀଷୀମାନେ ନିଜର ସ୍ୱକୀୟ ସାଧନା ଦ୍ୱାରା ଏହି ନିଷ୍କର୍ଷର ସଂଧାନ କରିଥିଲେ, ଯାହାକୁ ଜୀବ ବିଜ୍ଞାନ, ଧର୍ମାଚରଣ, ତନ୍ତ୍ରଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ଶିଳ୍ପ, କଳା ଭାସ୍କର୍ଯ୍ୟ ଯୁଗ ଯୁଗ ଧରି ପର୍ଯ୍ୟାଲୋଚନା କରିଆସିଛନ୍ତି । ତ୍ରିଗୁଣା ଶକ୍ତିର ଆଧାର ବ୍ୟତୀତ ସୃଷ୍ଟିର କୌଣସି କର୍ମ ସଂପନ୍ନ ହେବା ସଂଭବ ନୁହେଁ । ଏଣୁ ଶକ୍ତିଙ୍କର ରୂପ ଓ ରୂପାନ୍ତର ଭାସ୍କର୍ଯ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥାଏ।

---

ନରେନ୍ଦ୍ରକୋଣ, ପୁରୀ



# ଶାଶ୍ୱତ ସମ୍ପର୍କ : ଗାନ୍ଧୀ ଓ ଗୋପବନ୍ଧୁଙ୍କର

**ପ୍ରହଲାଦ କୁମାର ସିଂହ**

ମହାମାନବ ମହାତ୍ମା ଗାନ୍ଧୀ ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଶରୀର ସିନା ଥିଲା ଦୁଇଟି, କିନ୍ତୁ ସେମାନଙ୍କ ଚିନ୍ତା ଓ ଚେତନା ଥିଲା ଏକାପରି । ବୟସରେ ଗାନ୍ଧୀ ଥିଲେ ଗୋପବନ୍ଧୁଙ୍କଠାରୁ ୮ବର୍ଷ ବଡ । କିନ୍ତୁ ଗୋପବନ୍ଧୁ ମାତ୍ର ୫୧ ବର୍ଷ ବୟସରେ ଗାନ୍ଧୀଙ୍କଠାରୁ ଆଗେ ଚାଲିଗଲେ । ଭଗୀରଥ ଗଙ୍ଗାମାତାଙ୍କର ଧରାବତରଣ କରିବା ଭଳି ଓଡ଼ିଶାରେ ଗାନ୍ଧୀ ବିଚାର ଓ ସତ୍ୟାଗ୍ରହ ସଂଗ୍ରାମରେ ସ୍ରୋତ ବୁହାଇଥିଲେ ଗୋପବନ୍ଧୁ । ଦୁଇଜଣଙ୍କ ବିଚାରରେ ଥିଲା ଅଭୂତପୂର୍ବ ସାମଞ୍ଜସ୍ୟ । ସତ୍ୟ, ଅହିଂସା, ସମର୍ପଣ, ସ୍ୱଦେଶୀ, ସ୍ୱାବଲମ୍ବନ, ସେବା, ସଂଗ୍ରାମ, ଆଧ୍ୟାତ୍ମିକତା ଓ ନୈତିକତା ଆଦି ଥିଲା ଏହି ଦୁଇ ଯୁଗଜନ୍ମା ଓ ଯୋଗଜନ୍ମାଙ୍କ ଜୀବନର ମୂଳାଧାର । ଦୁଇଜଣଙ୍କ ଜନ୍ମ ଅକ୍ଟୋବର ମାସରେ । ଗାନ୍ଧୀ ୧୮୬୯ ଅକ୍ଟୋବର ୨ ତାରିଖରେ ଜନ୍ମ ହୋଇଥିବାବେଳେ ଗୋପବନ୍ଧୁଙ୍କ ଜନ୍ମ ୧୮୭୭ ଅକ୍ଟୋବର ୯ ତାରିଖରେ । ଗାନ୍ଧୀ ଓ ଗୋପବନ୍ଧୁ ପରସ୍ପରକୁ ଦେଖିବା, ଜାଣିବା ଓ ଚିହ୍ନିବା ପୂର୍ବରୁ ଭାବନା ରାଜ୍ୟରେ ଯୋଡି ହୋଇ ଯାଇଥିଲେ । ଏହି ଦୁଇ ବିରଳ ବିଭୂତି ପରସ୍ପର ସମ୍ପର୍କରେ ଯେଉଁ ମତ ଓ ମନ୍ତବ୍ୟ ଦେଇଛନ୍ତି ତାହା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି ।

ଏହି ଦୁଇ ମହାପୁରୁଷ ଉଚ୍ଚ ଶିକ୍ଷିତ । ପିଲାଦିନୁ ଦୁଇ ଜଣଙ୍କର ସେବା ଓ ସଂସ୍କାର ପ୍ରତି ଆଗ୍ରହ ଥିଲା । ଦୁଇଜଣ ଯାକ ବି ଓକିଲାତି, ସାମ୍ବାଦିକତା ଓ ସାହିତ୍ୟ ରଚନା କ୍ଷେତ୍ରରେ ନିଜ ନିଜର ସ୍ୱାକ୍ଷର ଛାଡି ଯାଇଛନ୍ତି । ସ୍ୱାଧୀନତା ସଂଗ୍ରାମ ସହ ଦେଶର ରାଜନୈତିକ, ଆର୍ଥିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ସଂସ୍କାର ଆଣିବା ପାଇଁ ସମର୍ପିତ ଭାବେ ଏମାନେ ଯେଉଁ ସାଧନା ଚଳାଇଥିଲେ, ତାହାର ସିଦ୍ଧି ସ୍ୱରୂପ ମିଳିଛି ଆମ ସ୍ୱାଧୀନତା । ଗାନ୍ଧିଜୀ ୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିଥିଲେ । କିନ୍ତୁ ଏହାର ପ୍ରାୟ ୧୨ ବର୍ଷ ପୂର୍ବରୁ ଗୋପବନ୍ଧୁ ବିହାର-ଓଡ଼ିଶା ବିଧାନ ପରିଷଦରେ ଲବଣ ସମସ୍ୟା ଉଠାଇଥିଲେ । ଓଡ଼ିଶାରେ ଦୁର୍ଭିକ୍ଷର କରାଳ ଚିତ୍ରକୁ ଗୋପବନ୍ଧୁ ବିଧାନ ପରିଷଦରେ ଉଠାଇ ବିପନ୍ନ ଲୋକଙ୍କ ବେଦନା ବ୍ୟକ୍ତ କରିବାବେଳେ କାନ୍ଦି ପକାଇଥିଲେ । ଗାନ୍ଧୀ କିନ୍ତୁ ଏ ସମସ୍ୟା ଶୁଣିବା ପରେ ମୃତ୍ୟୁ ମୁଖରୁ ଦୁର୍ଭିକ୍ଷ ପୀଡିତ ଲୋକଙ୍କୁ ବଞ୍ଚାଇବା ପାଇଁ ବ୍ୟାପକ ରିଲିଫ୍ ବନ୍ଦୋବସ୍ତ କରିଥିଲେ । ଏହି କାମରେ ଗୋପବନ୍ଧୁଙ୍କ ସହ ଯୋଗସୂତ୍ର ରଖିବା ପାଇଁ ସେ ପଠାଇଥିଲେ ଅମୃତ ଲାଲ ଠକ୍କରଙ୍କୁ । ପରେ ବନ୍ୟା ରିଲିଫ୍ କାମରେ ଗୋପବନ୍ଧୁଙ୍କୁ ସହାୟତା ଦେବା ପାଇଁ ଆସିଥିଲେ ସି.ଏଫ୍. ଆଣ୍ଡ୍ରୁଜ୍ । ଏମାନଙ୍କଠାରୁ ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନଙ୍କ ସମ୍ପର୍କରେ ଗାନ୍ଧିଜୀ ଯାହା ଶୁଣିଥିଲେ ଓ ପରେ ଯାହା ଦେଖିଲେ ସେଥିରେ ଏତେ ଅଭିଭୂତ ହୋଇଗଲେ ଯେ ଗୋପବନ୍ଧୁଙ୍କ ଭଳି ତ୍ୟାଗୀ ଓ ନୀତିନିଷ୍ଠ ସହକର୍ମୀ କେତେଜଣ ମିଳିଗଲେ ବର୍ଷକ ଭିତରେ ସ୍ୱରାଜ ଆସିଯିବ ବୋଲି ଗାନ୍ଧିଜୀ 'ୟଙ୍ଗ୍ ଇଣ୍ଡିଆ'ରେ ଲେଖିଥିଲେ ।

ଭାଷାଭିତ୍ତିକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଓଡ଼ିଶାରେ ଯେଉଁମାନେ ସଙ୍କଳ୍ପବଦ୍ଧ ସଂଗ୍ରାମ ଚଳାଉଥିଲେ ସେମାନଙ୍କ ଭିତରେ ଗୋପବନ୍ଧୁ ଥିଲେ ଅନ୍ୟତମ । ଗାନ୍ଧିଜୀ





ଏହି ଦାବିକୁ ସମର୍ଥନ ଜଣାଇବା ସହ ଜାତୀୟ ସ୍ତରରେ ଓଡ଼ିଶାକୁ ରାଜନୈତିକ ପରିଚିତି ଦେବା ଲାଗି ୧୯୨୧ରେ ଗଢ଼ାଇଥିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗୋପବନ୍ଧୁଙ୍କ ଅଧକ୍ଷତାରେ । ଏହାର ୧୫ ବର୍ଷ ପରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଜନ୍ମ ନେଇଥିଲା । ଗୋପବନ୍ଧୁଙ୍କ ନିମନ୍ତ୍ରଣ କ୍ରମେ ଗାନ୍ଧିଜୀଙ୍କ ପ୍ରଥମ ଓଡ଼ିଶା ଗସ୍ତ ହୋଇଥିଲା ୧୯୨୧ ମାର୍ଚ୍ଚ ୨୩ରୁ ୨୯ ପର୍ଯ୍ୟନ୍ତ । ସେଦିନ ଥିଲା ଦୋଳପୂର୍ଣ୍ଣିମା । ହାଓଡା-ପୁରୀ ଏକ୍ସପ୍ରେସ୍‌ରେ ଆସି ବଡିଭୋର୍‌ରେ କଟକ ରେଳ ଷ୍ଟେସନରେ ପଦାର୍ପଣ କଲେ ମହାତ୍ମା ଗାନ୍ଧୀ । ସାଙ୍ଗରେ ଥିଲେ ପତ୍ନୀ କସ୍ତୁରବା ଓ ପୁତ୍ର ଦେବଦାସ । ଭାରତ ମୁକ୍ତି ସଂଗ୍ରାମର ସେନାପତିଙ୍କୁ ପାଛୋଟି ନେବାଲାଗି ପୂର୍ବ ରାତିରୁ ହଜାର ହଜାର ଲୋକ କଟକରେ ସମବେତ ହୋଇଥିଲେ । ଏହି ଗସ୍ତ ଅବସରରେ ଗାନ୍ଧୀଙ୍କୁ ସ୍ୱାଗତ ଜଣାଇ କାଠଯୋଡି ନଈ ବାଲିରେ ଆୟୋଜିତ ବିରାଟ ସାଧାରଣ ସଭାରେ ସ୍ୱାଗତ ଭାଷଣ ଦେଇ ଗୋପବନ୍ଧୁ କହିଥିଲେ, 'ବୁଦ୍ଧଦେବଙ୍କଠାରୁ ଆରମ୍ଭ କରି କବୀର, ରାମାନୁଜ, ଶଙ୍କର, ନାନକ, ଚୈତନ୍ୟ ପ୍ରଭୃତି ଉତ୍କଳ ମାଟିରେ ସେମାନଙ୍କର ଚିହ୍ନ ରଖି ଯାଇଛନ୍ତି । ୩୦୦ ବର୍ଷ ତଳେ ଠିକ୍ ଆଜିର ଦୋଳ ପୂର୍ଣ୍ଣମୀ ତିଥିରେ ଚୈତନ୍ୟ ମହାପ୍ରଭୁ ଏହି ନଦୀର ବାଲୁକା ଶଯ୍ୟାରେ ପ୍ରେମ, ଧର୍ମ ପ୍ରଚାର କରିଥିଲେ । ଆଜି ଅନ୍ୟ ଜଣେ ମହାପୁରୁଷ ପୁଣି ୩୦୦ ବର୍ଷ ପରେ ସେହି ପବିତ୍ର ତିଥିରେ ରାଜନୈତିକ ପ୍ରେମ ଧର୍ମ ପ୍ରଚାର କରିବାକୁ ଆସିଛନ୍ତି । ଉତ୍କଳ ଧର୍ମ ନିମନ୍ତେ ପ୍ରତିଷ୍ଠା ପାଇଛି । ଆଜି ମହାତ୍ମାଙ୍କ ଯୋଗୁଁ ରାଜନୀତି ପୁଣି ଧର୍ମ ଉପରେ ପ୍ରତିଷ୍ଠିତ ହେଉଛି । ଏହି ଧର୍ମାତ୍ମା ଓ ପୁଣ୍ୟାତ୍ମାଙ୍କ ରାଜନୀତିରେ କୂଟ କପଟତାର ସତ୍ତା ନାହିଁ.....ଆଜି ମହାତ୍ମା ଗାନ୍ଧୀଙ୍କ ଶୁଭାଗମନ ଉତ୍କଳ ଇତିହାସରେ ଏକ ନୂତନ ଓ ଚିରସ୍ମରଣୀୟ ଘଟଣା । ଆପଣମାନେ ଉତ୍କଳୀୟଙ୍କର ପୂର୍ବ ଗୌରବ ଓ ଧର୍ମ ଉଦାରତା ସ୍ମରଣ ରଖି ମହାତ୍ମାଙ୍କ କଥା ଶୁଣନ୍ତୁ ।'

ସେହି ମାସ ୨୬ ତାରିଖରେ ପୁରୀରେ ଅନୁଷ୍ଠିତ ସଭାରେ ଲୋକେ ଗାନ୍ଧିଜୀଙ୍କୁ ସ୍ୱାଗତ କରି ଦୀର୍ଘ ସମୟ ଧରି ତାଳି ମାରିବାବେଳେ ଲୋକଙ୍କୁ ସମ୍ବୋଧିତ କରି ଗୋପବନ୍ଧୁ କହିଥିଲେ, 'ଇଂରେଜ ସରକାର ତାଳି ମରାକୁ ଡରନ୍ତି । ୩୦କୋଟି ଭାରତବାସୀ ତାଳି ମାରିଦେଲେ ଲକ୍ଷେ ଇଂରେଜଙ୍କର ପତ୍ତା ରହିବ ନାହିଁ....ମହାତ୍ମାଙ୍କ ନାମ ଆଜି ଘରେ ଘରେ ଚର୍ଚ୍ଚିତ । ମଣିଷ ନୁହଁନ୍ତି, ସେ ଦେବଦୂତ । ପୁରୀରେ ଗତ ଦୁର୍ଭିକ୍ଷରେ କେତେ କେତେ ଲୋକ ମଲେ, କେତେ ଝଡ ଝଞ୍ଜା ସହିବାକୁ ହେଲା । ଲାଟ୍‌ସାହେବ ପୁରୀ ଆସିଲେ, ଦୁର୍ଭିକ୍ଷ ଘୋଷଣା କଲେ ନାହିଁ । କିନ୍ତୁ, ପୁରୀର ପଶ୍ଚିମରେ ଥିବା ଦ୍ୱାରକାଧାମ ନିକଟରେ ଆମ ହୃଦୟର ଲାଟ୍ ମହାତ୍ମା ଗାନ୍ଧୀ ଗୁଜୁରାଟରେ ଥାଇ ପୁରୀକୁ ନ ଦେଖି, ନ ଆସି ପୁରୀ ଜିଲ୍ଲାରେ ଦୁର୍ଭିକ୍ଷ ଘୋଷଣା କଲେ....ମହାତ୍ମାଙ୍କ ବଳରେ, ଆଶ୍ୱାସନାରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକ ନବଜୀବନ ପାଇଛନ୍ତି । ଆମ ପ୍ରାଣଦାତା ହୃଦୟର ବଡଲାଟ୍, ଏଠାରେ ବିଦ୍ୟମାନ....... ଆଜି ମହାତ୍ମା ଗାନ୍ଧୀ ଭାରତରେ ଏକ ମହା ପ୍ରୟାଗ ସୃଷ୍ଟି କରିଛନ୍ତି । ତାଙ୍କ ବାଣୀକୁ ଏ ପବିତ୍ର ଧାମରେ ପ୍ରକାଶ କରନ୍ତୁ । ମୋର ପୂର୍ଣ୍ଣ ବିଶ୍ୱାସ ପୁରୀବାସୀ ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଉକ୍ତ ଈଶ୍ୱରୀୟ ବାଣୀକୁ ଗ୍ରହଣ କରିବା ପାଇଁ ମନ ଖୋଲା ରଖିଛନ୍ତି । ଜଗନ୍ନାଥ ଆମକୁ ସାହାଯ୍ୟ କରନ୍ତୁ । ଆମ୍ଭମାନଙ୍କ ଉଦ୍‌ଯୋଗ ସଫଳ ହେଉ । ତାଙ୍କର ନୀଳଚକ୍ର ଓ ବାନା ତଳେ ଆମ୍ଭେମାନେ ଏକ ମହାଭାରତୀୟ ଜାତି ହେଉ ।' ଭଦ୍ରକ, ସାକ୍ଷୀଗୋପାଳ ଓ ବ୍ରହ୍ମପୁର ସଭାରେ ଗାନ୍ଧିଜୀଙ୍କ ସମ୍ପର୍କରେ ଗୋପବନ୍ଧୁ ଯେଉଁ ବକ୍ତବ୍ୟ ରଖିଥିଲେ ତାହା ଅବିସ୍ମରଣୀୟ । ଗାନ୍ଧିଜୀ ଆଠ ଥରରେ ଓଡିଶାରେ ବିତାଇଛନ୍ତି ପ୍ରାୟ ୬୯ଦିନ । ଏଥିରୁ ୧୯୨୧, ୧୯୨୫ ଓ ୧୯୨୭ର ଗସ୍ତ ସମୟରେ ଗୋପବନ୍ଧୁ ତାଙ୍କ ସହିତ ଥିଲେ । ୧୯୨୮ ଜୁନ୍ ୧୭ ତାରିଖ ପବିତ୍ର ନେତ୍ରୋତ୍ସବ ପୂର୍ବରୁ ମାତ୍ର ୫୧ ବର୍ଷ ବୟସରେ ଗୋପବନ୍ଧୁଙ୍କ ମହାପ୍ରୟାଣ ଘଟିଲା । ତେବେ ପରବର୍ତ୍ତୀ ସମସ୍ତ ଗସ୍ତ ବେଳେ ଗାନ୍ଧୀ ଗୋପବନ୍ଧୁଙ୍କୁ ଝୁରିଛନ୍ତି । ଓଡିଶା ବାହାରେ ଏମିତିକି ବିଭିନ୍ନ ପତ୍ରପତ୍ରିକାରେ ଗୋପବନ୍ଧୁଙ୍କ ଜୀବନ ଓ କାର୍ଯ୍ୟର ଭୂୟସୀ ପ୍ରଶଂସା କରି ସେ ଅନେକ ଲେଖିଛନ୍ତି । କାରାଦଣ୍ଡ କାଟି ଫେରିଥିବା ଗୋପବନ୍ଧୁଙ୍କୁ ଗାନ୍ଧିଜୀଙ୍କ ଘନିଷ୍ଠତମ ସହଯୋଗୀ ବୈଜ୍ଞାନିକ ଡ.ପ୍ରଫୁଲ୍ଲ ଚନ୍ଦ୍ର ଏକ ସମାବେଶରେ





ସମ୍ବୋଧନ କରିଥିଲେ 'ଉତ୍କଳମଣି' ଭାବେ । ଯେତେଦିନ ପର୍ଯ୍ୟନ୍ତ ଓଡିଆ ଜାତି ଥିବ ସେତେଦିନ ପର୍ଯ୍ୟନ୍ତ ଗୋପବନ୍ଧୁ ଝଟକୁଥିବେ 'ଉତ୍କଳମଣି' ଭାବେ ।

**ଗୋପବନ୍ଧୁଙ୍କ କବିତାରେ ଗାନ୍ଧୀ**

ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଗୋପବନ୍ଧୁ ବହୁବାର କାରାବରଣ କରିଛନ୍ତି । ଗାନ୍ଧିଜୀଙ୍କ ପ୍ରଥମ ଓଡିଶା ଗସ୍ତର ଏକ ଆବେଗମୟ ଘଟଣାକୁ ମନେ ପକାଇ 'ବନ୍ଦୀର ଆତ୍ମକଥା'ରେ ଗୋପବନ୍ଧୁ ଲେଖିଛନ୍ତି-

'ପଡ଼େ ମନେ ମୋର ଯେବେ ସିନ୍ଧୁକୂଳେ
ନୀଳାଚଳେ ଗାନ୍ଧୀ ଥିଲେ ପତ୍ନୀ ତୁଲେ ।
ଦେଖି ଉତ୍କଳର ଦୁର୍ଭିକ୍ଷ ଆଭାସ
ପାଇଥିଲେ ହୃଦେ ଗୁରୁତର ତ୍ରାସ ।
ଦେଶବାସୀଙ୍କର ହେଲେ ଆତ୍ମଶୁଦ୍ଧି
ସତ୍ୟେ ଅନୁରାଗ ଧର୍ମେ ଦିବ୍ୟ ବୁଦ୍ଧି,
ମେଣ୍ଟିବ ଦୁର୍ଗତି ଦୁଃଖ ଯିବ କ୍ଷୟ,
ଆସିବ ସୁଦିନ ହେବ ସୁଖୋଦୟ ।
କେତେ ନରନାରୀ ବୃଦ୍ଧ ଯୁବା ବାଳ,
ଅନାହାରେ ଯେହ୍ନେ କେବଳ କଙ୍କାଳ ।
ଦେଖିଣ ମହାତ୍ମା କାତର ଅନ୍ତରେ
କହିଥିଲେ ମତେ ଦୁଃଖେ ଏକାନ୍ତରେ
ଦେଖି ଏ ଦାରୁଣ ଦୃଶ୍ୟ ହୁଏ ମନ
ଅନଶନେ ଆଜି ତେଜନ୍ତି ଜୀବନ ।
ବଞ୍ଚିବାରୁ ବଳି ଦେଖି ଏ କଷଣ
ଶତଗୁଣ ଶ୍ରେୟ ମଣେ ମୁଁ ମରଣ ।
ମାତ୍ର ମୋ ପରାଣେ ରହିଛି ଭରସା,
ଅଚିରେ ଦେଶର ଘୁଞ୍ଚିବ ଏ ଦଶା ।
ଏସବୁ ଯାତନା ନର କର୍ମଫଳ
ହୋଇଛି ଏ ଦେଶେ ପାତକ ପ୍ରବଳ ।'

ଜାତୀୟତାବାଦୀ ଓ ଦରଦୀ ଜନନେତା ଗୋପବନ୍ଧୁ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱ ପ୍ରତି ଆକର୍ଷିତ ହେବା ସହ ଅସହଯୋଗ ଆନ୍ଦୋଳନକୁ ଓଡ଼ିଶାରେ ବ୍ୟାପକ କରିଥିଲେ । ଏଇ ମୂଳଦୁଆ ଏତେ ସୁଦୃଢ଼ ଥିଲା ଯେ ପରେ ଗୋପବନ୍ଧୁଙ୍କ ଅବର୍ତ୍ତମାନରେ ଦେଶମାତୃକା ଲାଗି ବଳିଦାନ ଦେବା ପାଇଁ ଓଡ଼ିଆଙ୍କ ଭିତରେ ସୃଷ୍ଟି ହୋଇଥିଲା ଉନ୍ମାଦନା । ଗାନ୍ଧିଜୀ ଓ ତାଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମ ପ୍ରସଙ୍ଗରେ ଗୋପବନ୍ଧୁ ପୁଣି ଲେଖିଛନ୍ତି-

'ନ ସହିବ କଷ୍ଟ କେହି ଅନାହାରେ,
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ ।
ଡରାଇ ଶାସିବା ନୀତି ଭାଙ୍ଗିଯିବ,
ପ୍ରଜାଙ୍କ ମତରେ ଶାସନ ଚାଲିବ ।
ଏହି ନବ ଯୁଗ ଆଣିବା ସକାଶେ,
ଗାନ୍ଧୀ ରହିଛନ୍ତି ସିନା କାରାବାସେ ।
ଭାରତର କେତେ କେତେ ମହାଜନ
ବନ୍ଦୀଶାଳେ ଏବେ କାଟନ୍ତି ଜୀବନ ।
ମୁଁ ଅତି ସାମାନ୍ୟ ତାଙ୍କ ଅନୁଚର,
ତୁମ ଅକିଞ୍ଚନ ଆତ୍ମୀୟ ସୋଦର ।
ଉତ୍କଳମାତାର ଆଉ କେତେ ସୁତ
ସଙ୍ଗେ କାରାଗାରେ କଲି ପିଣ୍ଡ ପୂତ ।
ବସି ଏଥି ସଦା ରହିଛି ଅନାଇଁ
କାରାଗାର ଛିଦ୍ରେ ତୁମ ଆଡ଼େ ଭାଇ!
ଅରଟ ଚଳାଅ ପ୍ରତି ଘରେ ଘରେ,
ଗ୍ରାମର କଳହ ତୁଟାଇ ଗ୍ରାମରେ ।
ଚାଲ ସତ୍ୟ ପଥେ ନାହିଁ ଡର ଭୟ,
ଅସହଯୋଗରେ ବିଜୟ ନିଶ୍ଚୟ ।
ଛାଡ଼ ଉଚ୍ଚ ନୀଚ ଭେଦ ଅହଙ୍କାର
ହେଉ ନୀଳାଚଳୁଁ ସମତା ପ୍ରଚାର ।
ଭାରତେ ଉତ୍କଳ ମହା ପୁଣ୍ୟ ଧାମ,
ଭାରତ ପାଞ୍ଜିରେ ନଥିଲା ତା ନାମ,
ସାହସ, ସାହିତ୍ୟ, ଧନ, ମାନ ବଳେ
ଉତ୍କଳର ନାମ ସମସ୍ତଙ୍କ ତଳେ ।
ଭାରତ ଜାତୀୟ ମହାସମ୍ମିଳନେ,
ନ ବସେ ଉତ୍କଳ ସ୍ୱତନ୍ତ୍ର ଆସନେ ।
ତେଣୁ ଜଗନ୍ନାଥ କରୁଣା ନିଧାନ
କରୁଣା କଟାକ୍ଷେ କଲେ ଅବଧାନ ।
ଅସହଯୋଗର ପବିତ୍ର ସରିତ



ଉତ୍କଳର ବକ୍ଷେ ହେଲା ପ୍ରବାହିତ ।
ଗାନ୍ଧୀ ଭଗୀରଥ ନିଜ ପୁଣ୍ୟ ବଳେ
ଆଣିଲେ ଅସଙ୍ଗ ଜାହ୍ନବୀ ଉତ୍କଳେ ।

...........

ଥରେ ଭଲା ଭାଇ ମନରେ ବିଚାର
କିମ୍ପାଇ ମହାତ୍ମା ଏତେ ନାରଖାର!
କ୍ଷୀଣ ଅଙ୍ଗେ କେତେ ସହନ୍ତି କଷଣ
ତେଜି ଧନ ଜନ, ଅଶନ, ବସନ
କାରାଗାରେ ବସି ନୀରବେ ଏକାକୀ
ଧ୍ୟାନମଗ୍ନ ଏବେ ମୁଦି ବେନି ଆଖି ।
ମହାତ୍ମା ସାଧନ ମହାତ୍ମା କଷଣ
ନ ଯାଏ ଜଗତେ କେବେ ଅକାରଣ
ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବଶେଷେ ସତ୍ୟ ପାଖେ ହାର
ଏ ବିଶ୍ୱାସେ ସର୍ବେ ଦୃଢ଼ କରି ମନ
ସ୍ୱରାଜ୍ୟ ଧରମ କର ଆଚରଣ ।
ବିଦେଶୀ ଅମେଧ୍ୟ ବସ୍ତ୍ର ଛାଡ଼ ଆଗେ
ହାତ ସୂତା ଲୋଡ଼ା ଏ ସ୍ୱରାଜ୍ୟ ଜାଗେ
ପିନ୍ଧ ଦେଶୀ ଲୁଗା ହେଉ ଅଙ୍ଗ ଶୁଦ୍ଧି,
ମାମଲାରେ ଆଉ ନ ଖେଳାଅ ବୁଦ୍ଧି
ଗ୍ରାମେ ପାଞ୍ଚ ପରା ପରମ ଈଶ୍ୱର
କର ପୁଣି ଗ୍ରାମେ ସ୍ଥାପନା ତାଙ୍କର ।
ଗ୍ରାମ ବିଚାରରେ ସକଳେ ସମାନ
ଛାଡ଼ି ମନୁ ବଡ଼ ସାନ ଅଭିମାନ ।
ସ୍ୱରାଜ ଧରମେ ନାହିଁ ଭେଦ ଜ୍ଞାନ,
ସମସ୍ତେ ଯେ ଏକ ମାତାର ସନ୍ତାନ ।
ଗୃହର ଅରଟ, ଗ୍ରାମେ ପଞ୍ଚାୟତ,
ଗ୍ରାମବାସୀଗଣ ମଧ୍ୟେ ଏକମତ,
ସ୍ୱରାଜ-ସାଧନ ଏହି ତିନି ପଦ,
ପାଳିଲେ ଖଣ୍ଡିବ ଉତ୍କଳ ବିପଦ ।
ଘୁଞ୍ଚିବ ଉତ୍କଳ ଦୁଃଖ ଦରିଦ୍ରତା
ଉଜ୍ଜ୍ୱଳିବ ଗ୍ରାମ, ହସିବେ ଦେବତା ।'

**ଗାନ୍ଧୀ ସାହିତ୍ୟରେ ଗୋପବନ୍ଧୁ**

ପ୍ରଥମ ଓଡିଶା ଗସ୍ତର ଅନୁଭୂତି ବଖାଣି ଗାନ୍ଧିଜୀ 'ୟଙ୍ଗ୍ ଇଣ୍ଡିଆ'ରେ ୧୩.୪.୧୯୨୧ରେ ଲେଖିଥିଲେ ଯେ ଗୋପବନ୍ଧୁଙ୍କ ଭଳି କିଛି ସାଧୁ କର୍ମୀ ମିଳିଲେ ବର୍ଷକ ଭିତରେ ସ୍ୱରାଜ ଆସିବ ବୋଲି ସେ ବିଶ୍ୱାସ କରୁଛନ୍ତି । ସେହି ମାସରେ ନବଜୀବନରେ ଗାନ୍ଧିଜୀ ପୁଣି ଲେଖିଲେ, 'ପ୍ରକୃତିର କ୍ରୋଧ ହେତୁ ଓଡିଶାର ଲୋକେ ଦୁଃଖ ପାଉଛନ୍ତି । କେତେବେଳେ ବର୍ଷା ଅଭାବରୁ ଫସଲ ହୁଏ ନାହିଁ ତ ଆଉ କେତେବେଳେ ଅତ୍ୟଧିକ ବୃଷ୍ଟିଜନିତ ବନ୍ୟା ଯୋଗୁଁ ଫସଲ ଓ ଘରଦ୍ୱାର ଧୋଇଯାଏ । ଏଠାରେ ଦୁର୍ଭିକ୍ଷ ଭଳି ଅବସ୍ଥା ତେଣୁ ଲାଗି ରହିଥାଏ । ଏମିତି ଏକ ଭଗବାନଙ୍କ ପରିତ୍ୟକ୍ତ ଅଞ୍ଚଳରେ ଜଣେ ପ୍ରକୃତ ନେତା ଅଛନ୍ତି । ସେ ହେଉଛନ୍ତି ଗୋପବନ୍ଧୁ ଦାସ ........ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନେ ପୂର୍ବରୁ ଖାଦ୍ୟରେ କେତେ ଟୋପା ଘିଅ ଖାଉଥିଲେ, ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ପରେ ଏମାନେ ତାହା ଛାଡିଦେଇଛନ୍ତି । ଆମ ଦେଶରେ ଏପରି କ୍ୱଚିତ୍ ଲୋକ ଥିବେ, ଯେଉଁମାନେ ସ୍ୱେଚ୍ଛାକୃତ ଭାବେ ଏତେ ଦୁଃଖରେ ବଞ୍ଚିଥିବେ । ମୁଁ ପଚାରିଥିଲି ଯେ ଏଭଳି ଖାଦ୍ୟ ଖାଇ ରହିଲେ ସ୍ୱାସ୍ଥ୍ୟହାନି ଘଟିବ ନାହିଁ କି? ଗୋପବନ୍ଧୁ ବାବୁ କହିଲେ ଯେ ଏ ପ୍ରକାର ଦୈନ୍ୟ ଓ ଅଭାବ ସ୍ୱରାଜ ପାଇଁ ମାନିନେବା କ'ଣ ଉଚିତ ନୁହେଁ । ମୁଁ ଚୁପ୍ ହୋଇଗଲି । ଯେତେବେଳେ ଜଣେ ଲୋକ କୌଣସି ଦୁଃଖ ଯନ୍ତ୍ରଣାର ସମ୍ମୁଖୀନ ହୁଏ, ସେ ଜାଣିପାରେ ନାହିଁ ଭଗବାନ ତାକୁ ତାହା ସହିବାର କେତେ ଶକ୍ତି ଦିଅନ୍ତି ।' ଗୋପବନ୍ଧୁ କିଭଳି ଜନତାଙ୍କ ସ୍ୱାର୍ଥଲାଗି ବିହାର ଓଡିଶା କାଉନସିଲ୍ ସଭ୍ୟ ପଦ ସହିତ ଓକିଲାତି ବୃତ୍ତି ଛାଡିଲେ ଓ ବ୍ରିଟିଶ ସରକାରର ଅନୁକମ୍ପା ନ ନେବା ପାଇଁ ତାଙ୍କର ପ୍ରାଣଠାରୁ ଅଧିକ ପ୍ରିୟ ସତ୍ୟବାଦୀ ବନ ବିଦ୍ୟାଳୟକୁ ବାଜି ଲଗାଇ ଦେଲେ ଏବଂ ଲୋକଙ୍କ ସୁଖ ଦୁଃଖରେ ଜଡିତ ରହିବା ସହ ଓଡିଆମାନଙ୍କ ଭିତରେ ଅସହଯୋଗ ଆନ୍ଦୋଳନକୁ ବ୍ୟାପକ କଲେ, ସେ ସଂକ୍ରାନ୍ତରେ ଗାନ୍ଧିଜୀ ଗୋପବନ୍ଧୁଙ୍କ ଭୁରିଭୁରି ପ୍ରଶଂସା ବିଭିନ୍ନ ସମ୍ବାଦପତ୍ରରେ ଓ





ଦେଶର ବିଭିନ୍ନ ସଭା ସମିତିରେ କରି ଆସିଛନ୍ତି । ଏହା ଗାନ୍ଧୀ ରଚନାବଳୀରେ ଦେଖିବାକୁ ମିଳେ ।

ଓଡିଆ ଜାତିର ମୁଖପତ୍ର ଭାବେ ଗୋପବନ୍ଧୁ ସୃଷ୍ଟି କରିଥିଲେ 'ସମାଜ' । ପରବର୍ତ୍ତୀ ସମୟରେ ଏହା ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ବାଣ୍ଟୁଥାଏ । ଏଣୁ ସମାଜ ସହ ଗୋପବନ୍ଧୁଙ୍କୁ ଜବତ କରିବା ପାଇଁ ବ୍ରିଟିଶ୍ ସରକାର ଓର ଉଣ୍ଡୁଥାନ୍ତି । ଏ ପରିପ୍ରେକ୍ଷୀରେ ଦାସେ ଆପଣେ ଗାନ୍ଧିଜୀଙ୍କ ପାଖକୁ ପତ୍ର ଲେଖିଲେ । ତାହାର ଉତ୍ତରରେ ଗାନ୍ଧିଜୀ ୧୯୨୧ ଅକ୍ଟୋବର ୮ ତାରିଖରେ ପଠାଇଥିବା ତାରବାର୍ତ୍ତା କଲେକ୍ଟେଡ୍ ୱାର୍କସ୍ ଅଫ୍ ମହାତ୍ମା ଗାନ୍ଧୀର ୨୧ତମ ଖଣ୍ଡରେ ରହିଛି । ଏଥିରେ ଗାନ୍ଧିଜୀ ଗୋପବନ୍ଧୁଙ୍କୁ କହିଛନ୍ତି, 'କେବଳ ନିର୍ଭୀକ ଓ ସତ୍ୟ ବିବୃତି ଦିଅନ୍ତୁ । ପରିଣାମକୁ ଖାତିର କରନ୍ତୁ ନାହିଁ ।' ସତକୁ ସତ ଗୋପବନ୍ଧୁଙ୍କ ବିରୁଦ୍ଧରେ ଫୌଜଦାରୀ ମାମଲା ସମାଜର ଏକ ସମ୍ପାଦକୁ ନେଇ ସରକାର ରୁଜୁ କରି ତାଙ୍କୁ ଖୋରଧା ଜେଲ୍‌ରେ ବନ୍ଦୀ କରି ରଖିଲେ । ସେ ଅସହଯୋଗୀ ହୋଇଥିବାରୁ ଜାମିନ୍‌ରେ ଗଲେ ନାହିଁ, ଏମିତିକି ତାଙ୍କ ପ୍ରତି କଠୋରତମ ଦଣ୍ଡ ବିଧାନ କରିବାକୁ ବିଚାରପତିଙ୍କୁ ଆହ୍ୱାନ ଦେଲେ । ଏହି ମାମଲାର ବିଚାରପତି ଥିଲେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଭାଇ ସୁରେଶଚନ୍ଦ୍ର ବୋଷ । ସେ ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଇଥିଲେ । ଏହା ପରେ ମହାତ୍ମା ଗାନ୍ଧୀଙ୍କ ବିରୁଦ୍ଧରେ ଅନୁରୂପ ଦଫାରେ ତାଙ୍କ ସମ୍ପାଦିତ 'ୟଙ୍ଗ୍ ଇଣ୍ଡିଆ'ରେ ପ୍ରକାଶିତ ୪ଟି ଲେଖାକୁ ଆଧାର କରି ବ୍ରିଟିଶ ସରକାର ମଧ୍ୟ ଫୌଜଦାରୀ ମାମଲା ରୁଜୁ କରିଥିଲେ । ଏଥିରେ ଗାନ୍ଧିଜୀ ଆତ୍ମପକ୍ଷ ସମର୍ଥନ ନ କରି କଡା ଦଣ୍ଡ ବିଧାନ କରିବାକୁ ଅଦାଲତକୁ ଆହ୍ୱାନ ଦେଇଥିଲେ ଓ ବିଚାରପତି ତାଙ୍କୁ ୬ ବର୍ଷ କାରାଦଣ୍ଡାଦେଶ ଶୁଣାଇଥିଲେ ।

ଆଉଠାଏ ଗୋପବନ୍ଧୁଙ୍କୁ ଗାନ୍ଧୀ ଲେଖିଥିଲେ, 'ଭୂତର ଆଦେଶ ପରି ଓଡିଶା ମୋ ମନକୁ ଆଚ୍ଛନ୍ନ କରି ରଖିଛି । ଏପରି ଏକ ଗୌରବୋଜ୍ଜ୍ୱଳ ତଥା ବୀରତ୍ୱପୂର୍ଣ୍ଣ ମାଟି ଦାରିଦ୍ର୍ୟ ପ୍ରପୀଡିତ ଓ ଏହାର କର୍ମୀମାନେ ସତ୍ ଅଥଚ ଅସହାୟ । ଏଣେ ତେଣେ ବୁଲି ନିଜ ଶରୀରର ସ୍ୱାଭାବିକ ଅବସ୍ଥାକୁ ଆପଣ ନଷ୍ଟ କରନ୍ତୁ ନାହିଁ । ସରଳ ସ୍ୱାସ୍ଥ୍ୟବିଧି ପାଳନ କରି ନିଜ ସ୍ୱାସ୍ଥ୍ୟ ରକ୍ଷା କରନ୍ତୁ । କ'ଣ ହେଉଛି ଦୟାକରି ମୋତେ ଜଣାଇବେ' । ଗୋପବନ୍ଧୁ ବଞ୍ଚିଥିବା ବେଳେ ୧୯୨୧ ଓ ୧୯୨୭ରେ ଗାନ୍ଧୀ ସତ୍ୟବାଦୀ ଆସିଥିଲେ । ତାଙ୍କ ବିୟୋଗ ପରେ ୧୯୩୪ରେ ପଦଯାତ୍ରାବେଳେ ପୁଣି ଥରେ ସତ୍ୟବାଦୀ ଆସି ଗାନ୍ଧିଜୀ ଗୋପବନ୍ଧୁଙ୍କ ହାତଗଢ଼ା କାଦୁଆ ଆଶ୍ରମରେ ରହିଥିଲେ । ଗୋପବନ୍ଧୁ ଆରମ୍ଭ କରିଥିବା ଖଦି କାମ ତାଙ୍କ ଅବର୍ତ୍ତମାନରେ ଧିମା ପଡିଯାଇଥିବାରୁ ଏହି ଗସ୍ତବେଳେ ଗାନ୍ଧିଜୀ ସ୍ୱତନ୍ତ୍ର ଆର୍ଥିକ ବ୍ୟବସ୍ଥା କରିବା ସହ ଗୋପବନ୍ଧୁ ଦରିଦ୍ର ନାରାୟଣ ସେବା ସଂଘକୁ ଆଗେଇ ନେବା ପାଇଁ ଗୋପବନ୍ଧୁ ଚୌଧୁରୀଙ୍କୁ ଦାୟିତ୍ୱ ଦେଇଥିଲେ । ଏଠାରେ ଉଲ୍ଲେଖନୀୟ ଯେ ପ୍ରଥମ ଓଡିଶା ଗସ୍ତବେଳେ ଗାନ୍ଧିଜୀଙ୍କ ପରିଧାନ ଥିଲା ଧୋତି, କମିଜ ଓ ଟୋପି । ତେବେ ଓଡିଶାରେ ସେ ଯେଉଁ ଉତ୍କଟ ଦାରିଦ୍ର୍ୟ ଦେଖିଲେ ତାହା ତାଙ୍କ ଆତ୍ମାକୁ ଏତେ ଛଟପଟ କଲା ଯେ ଓଡିଶାର ଦୁରବସ୍ଥା ସମ୍ପର୍କରେ ସେ ଦେଶସାରା ବୁଲି ବୁଲି ବଖାଣିଲେ ଏବଂ ୬ ମାସ ଭିତରେ ନିଜର ପରିଧାନ ବଦଳାଇ ଆଣ୍ଠୁଲୁଚା ଖଦି ଖଣ୍ଡେ ପିନ୍ଧିଥିଲେ । ପରେ ଏଭଳି ପୋଷାକ ପାଇଁ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ତାଙ୍କୁ ଅଧା ଲଙ୍ଗଳା ଫକୀର କହି ବିଦ୍ରୂପ କରିଥିଲେ ।

୧୯୩୪ ମଇ ୮ ତାରିଖରେ ଗାନ୍ଧିଜୀ ପୁରୀ ସିଂହଦ୍ୱାର ନିକଟରେ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରି କହିଥିଲେ, 'ଗୋପବନ୍ଧୁ ଆମ୍ଭମାନଙ୍କୁ ଅପୂର୍ବ ଆଦର୍ଶ ଦେଖାଇ ଯାଇଛନ୍ତି । ସେ ଜଣେ ତ୍ୟାଗୀ ଦେଶସେବକ ଥିଲେ । ଆପଣମାନେ ତାଙ୍କ ଆଦର୍ଶ ଯେତେ ଦେଖିଛନ୍ତି ଓ ଜାଣିଛନ୍ତି ମୁଁ ହୁଏତ ସେତେ ଜାଣିନାହିଁ । ତେବେ ତାଙ୍କର ଧର୍ମନିଷ୍ଠା, ସତ୍ୟନିଷ୍ଠା, ସାଧୁତା, ସରଳତା ଓ ବୀରତ୍ୱର ପ୍ରଭାବ ମୋ ଜୀବନ ଉପରେ ମଧ୍ୟ ପଡ଼ିଛି । ଆଜି ଏ ପୁଣ୍ୟଭୂମିରେ ମୁଁ ତାଙ୍କର ଅଭାବ ଅଧିକ ଅନୁଭବ କରୁଛି । ଯେଉଁ ମହତ୍ ମାର୍ଗରେ ସେ ଚାଲି ଯାଇଛନ୍ତି, ପ୍ରତ୍ୟେକ ପ୍ରାଣୀକୁ ସେହି ମାର୍ଗରେ ଯିବାକୁ ହିଁ ପଡ଼ିବ । ମୁଁ ବିଶ୍ୱାସ

କରୁଛି ଓ ଆପଣମାନେ ବିଶ୍ୱାସ କରନ୍ତୁ ଯେ ତାଙ୍କ ମହତ୍ ଆତ୍ମା ଅମର ହୋଇ ରହିଛି ଓ ଚିରକାଳ ରହିବ । ମୋର ବରାବର ଆଶା ଯେ କେବଳ ଉତ୍କଳ କାହିଁକି ସମଗ୍ର ଭାରତ ସେହି ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁଙ୍କର ତ୍ୟାଗମାର୍ଗ ଅନୁସରଣ କରିବ ଏବଂ ତାଙ୍କ ସ୍ମୃତିର ପ୍ରଭାବରେ ନିଜକୁ ଧନ୍ୟ କରିବ ।' ସେହି ସଭାରେ ଗାନ୍ଧିଜୀ ଘୋଷଣା କରିଥିଲେ ଯେ ପରଦିନ ପ୍ରତ୍ୟୁଷରୁ ସେ ଶ୍ରୀକ୍ଷେତ୍ର ପୁରୀରୁ ତାଙ୍କ ପଦଯାତ୍ରା ବିନା ପ୍ରାକ୍ ପ୍ରସ୍ତୁତିରେ ଆରମ୍ଭ କରିବେ ବୋଲି ।

ଗୋପବନ୍ଧୁଙ୍କ ମହାପ୍ରୟାଣ ପରେ 'ନବଜୀବନ'ର ୦୧.୦୭.୧୯୨୮ ସଂସ୍କରଣରେ 'ଜଣେ ସଚ୍ଚା ସେବକ' ଶିରୋନାମାରେ ପ୍ରକାଶ ପାଇଥିବା ଗାନ୍ଧୀଙ୍କ ଶ୍ରଦ୍ଧାଞ୍ଜଳିରୁ ଜଣାପଡେ ସେ ଗୋପବନ୍ଧୁଙ୍କୁ କେତେ ସମ୍ମାନ ଓ ଶ୍ରଦ୍ଧା କରୁଥିଲେ । ଏଥିରେ ଗାନ୍ଧିଜୀ ଲେଖିଥିଲେ, 'ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମୃତ୍ୟୁ ଫଳରେ ଭାରତବର୍ଷ ବିଶେଷକରି ଉତ୍କଳ, ଜଣେ ସଚ୍ଚା ଓ ଶୁଦ୍ଧମନା ସେବକଙ୍କୁ ହରାଇଲା । ସେ ଓଡିଶାର ରତ୍ନ ଥିଲେ.......ଅସହଯୋଗ ଆନ୍ଦୋଳନ ପୂର୍ବରୁ ଗୋପବନ୍ଧୁ ବାବୁ ବିଧାନସଭାର ସଦସ୍ୟ ଥିଲେ ଏବଂ ଓକିଲାତି କରୁଥିଲେ । ଓକିଲାତି କରି ଧନ ରୁଣ୍ଡେଇବା ପରିବର୍ତ୍ତେ ସେ ସାକ୍ଷୀଗୋପାଳରେ ଗୋଟିଏ ଅତି ଲୋକପ୍ରିୟ ବିଦ୍ୟାଳୟ ସ୍ଥାପନ କରିଥିଲେ....... ଅସହଯୋଗର ସିଦ୍ଧାନ୍ତକୁ ଭଲ ଭାବେ ବୁଝି ସରକାର ସହ ବିଦ୍ୟାଳୟର ସମ୍ପର୍କ ତୁଟାଇ ଥିଲେ । ଓକିଲାତି ମଧ ଛାଡିବା ସହ ନିଜ ଜୀବନରେ ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ କରିଥିଲେ । ବିଧାନସଭାକୁ ବି ସେ ତୁଚ୍ଛ କରିଦେଇଥିଲେ........ ଗୋପବନ୍ଧୁ ବାବୁଙ୍କ ମନରେ କୌଣସି ଗ୍ଲାନି ମୁଁ କେବେ ଅନୁଭବ କରିନାହିଁ । ଓଡ଼ିଶାର ଦାରିଦ୍ର୍ୟ ଦୂର କରିବାରେ ଖଦିର ଗୁରୁତ୍ୱ ଥିବା ସେ ଜାଣିଥିଲେ । ସେଥିପାଇଁ ଖଦି କାମକୁ ବଢ଼ାଇବା ଲାଗି ମୋ ସହିତ ବାରମ୍ବାର ପରାମର୍ଶ କରୁଥିଲେ । ଲାଲାଜୀଙ୍କ ଲୋକସେବକ ମଣ୍ଡଳ ସହିତ ଗୋପବନ୍ଧୁ ବାବୁଙ୍କର ସୁସମ୍ପର୍କ ଥିଲା । ସେ ଏହି ମଣ୍ଡଳର ଉପ ସଭାପତି ଥିଲେ । ଆମେ ଏହା ହିଁ ଆଶା କରୁଛୁ ଯେ ଓଡ଼ିଶାର ସ୍ୱେଚ୍ଛାସେବକମାନେ ତାଙ୍କର କାର୍ଯ୍ୟକୁ ମୁଣ୍ଡେଇବେ । ସାଧୁ ପୁରୁଷମାନେ ମରି ସୁଦ୍ଧା ଅମର, ଅସାଧୁ ଲୋକେ ବଞ୍ଚିଥିଲେ ବି ମଲା ପରି । ଗୋପବନ୍ଧୁ ବାବୁଙ୍କ ଭଳି ସାଧୁ ପୁରୁଷଙ୍କ ଦୈହିକ ମୃତ୍ୟୁରେ ଆମେ ସ୍ୱାର୍ଥପରବଶ ହୋଇ ଦୁଃଖ କରୁଛୁ, ମାତ୍ର ପବିତ୍ର ଦୃଷ୍ଟିରେ ଦେଖିଲେ ଜାଣିବା ଯେ ଈଶ୍ୱର ନିର୍ଦ୍ଦୟ ନୁହନ୍ତି, ନ୍ୟାୟବନ୍ତ । ଏହା ବିଶ୍ୱାସ କରୁଥିବା ଲୋକ ପାଇଁ ଏ ବିୟୋଗ ଦୁଃଖଦାୟକ ହେବା ଉଚିତ ନୁହେଁ । ସେ ଜୀବିତ ଥିବା ବେଳେ ଆମେ ତାଙ୍କର ପବିତ୍ର ଜୀବନକୁ ଅନୁକରଣ କରିପାରିନାହୁଁ, ବର୍ତ୍ତମାନ ତାଙ୍କର ଗୁଣଗୁଡିକୁ ସ୍ମରଣ କରି ଆମେ ନିଜ ଭିତରେ ସେହିପରି କରିପାରିବାର ଶକ୍ତି ଜନ୍ମାଇବା ଉଚିତ । ଏ ପ୍ରକାରେ ଘଟିବାର ଅନେକ ଦୃଷ୍ଟାନ୍ତ ରହିଛି । ତେଣୁ ମୋହ ରହିତ ହୋଇ ଆମେ ମୃତ୍ୟୁଜନିତ ଶୋକ ଓ ଭୟ ଛାଡିଦେଇ ଆତ୍ମାର ଅମରତାକୁ ହିଁ ସିଦ୍ଧ କରିବା ।'

ପରେ 'ୟଙ୍ଗ୍ ଇଣ୍ଡିଆ'ର ୨୧.୦୬.୧୯୨୮ ସଂସ୍କରଣରେ ଗାନ୍ଧିଜୀ ପୁଣି 'ସ୍ୱର୍ଗୀୟ ଗୋପବନ୍ଧୁ ବାବୁ' ଶୀର୍ଷକ ଏକ ହୃଦୟସ୍ପର୍ଶୀ ଶ୍ରଦ୍ଧାଞ୍ଜଳି ପ୍ରକାଶ କରିଥିଲେ । ଏଥିରେ ଗାନ୍ଧିଜୀ ଲେଖିଛନ୍ତି, 'ମୁଁ 'ୟଙ୍ଗ୍ ଇଣ୍ଡିଆ' ପାଇଁ ଲେଖିବାକୁ ବସିଛି, ଏହି ଅବସରରେ ନୀଳକଣ୍ଠ ବାବୁଙ୍କଠାରୁ ଟେଲିଗ୍ରାମ୍ ପାଇଲି ଯେ ସାକ୍ଷୀଗୋପାଳଠାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଦେହାନ୍ତ ହୋଇଗଲା । ଦୁଃଖ ବା ବିପତ୍ତିରେ ଓଡ଼ିଶାର ଶ୍ରେଷ୍ଠ ସୁପୁତ୍ରମାନଙ୍କ ମଧ୍ୟରୁ ପଣ୍ଡିତ ଗୋପବନ୍ଧୁ ଦାସ ଅନ୍ୟତମ । ସେ ଓଡ଼ିଶାକୁ ନିଜର ସର୍ବସ୍ୱ ସମର୍ପଣ କରିଦେଇଥିଲେ........ ଗୋପବନ୍ଧୁ ବାବୁଙ୍କ ନିଷ୍କଳଙ୍କ ଚରିତ୍ର ଓ ଦୃଢ଼ତା ସମ୍ପର୍କରେ ମୁଁ ଅନେକ ଜାଣିଛି । କେଉଁ ପ୍ରକାରେ ଅସହାୟ ଲୋକଙ୍କୁ ସାହାଯ୍ୟ କରିବା ନିମିତ୍ତ ସେ କଷ୍ଟ ଓ ରୋଗର ସମ୍ମୁଖୀନ ହୋଇଥିଲେ, ତାହା ଶ୍ରୀ ଅମୃତଲାଲ ଠକ୍କର ମୋତେ ଜଣାଉଥିଲେ । ଅସହଯୋଗ ଯୁଗରେ ସେ ନିଜର ଓକିଲାତି ଓ କାଉନ୍‌ସିଲ୍ ସଦସ୍ୟ ପଦ ଛାଡ଼ିଦେଲେ ଏବଂ ଏହି ତ୍ୟାଗରେ ସତତ ଅଟଳ ରହିଥିଲେ । ମାତ୍ର ତାଙ୍କ ପାଇଁ ସର୍ବଶ୍ରେଷ୍ଠ ତ୍ୟାଗ ଥିଲା ପ୍ରିୟତମ କୃତି ସତ୍ୟବାଦୀ ବିଦ୍ୟାଳୟ । ତାକୁ ମଧ ସେ ବିପଦରେ ପକାଇ ଦେଇଥିଲେ । ଏଥିପାଇଁ ତାଙ୍କର

କେତେକ ନିକଟତମ ବନ୍ଧୁଙ୍କ ଆକ୍ଷେପକୁ ସେ ସହିଥିଲେ । ଏହି ବନ୍ଧୁମାନେ ଗୋପବନ୍ଧୁଙ୍କ ତ୍ୟାଗକୁ ମୂର୍ଖତା ମନେ କରିଥିଲେ । ମାତ୍ର ଗୋପବନ୍ଧୁ ନିଜ ମାର୍ଗରୁ ବିଚ୍ୟୁତ ବା ବିଚଳିତ ହୋଇନଥିଲେ । ଏହି କଥା ତାଙ୍କର କୀର୍ତ୍ତିକୁ ଚିରକାଳ ଜୀବିତ ରଖିବ । ତାଙ୍କ ଜୀବନର ଗୋଟିଏ ଅଭିଳାଷ ଥିଲା ଖଣ୍ଡ ବିଖଣ୍ଡିତ ଉତ୍କଳକୁ ଏକତ୍ରୀକରଣ କରି ତାକୁ ସୁଖୀ ଦେଖିବେ । କିଛିଦିନ ତଳେ ସେ ଲାଲା ଲାଜପତ ରାୟଙ୍କ ଲୋକସେବକ ମଣ୍ଡଳରେ ଯୋଗ ଦେଇଥିଲେ । ଦାରିଦ୍ର୍ୟ ଓ ବନ୍ୟାରେ ପ୍ରପୀଡ଼ିତ ଉତ୍କଳବାସୀଙ୍କୁ ଆର୍ଥିକ ସ୍ୱାବଲମ୍ବୀ କରିବା ଉଦ୍ଦେଶ୍ୟରେ ଖଦିକୁ ଉପଯୋଗୀ ସାଧନ ଭାବି ତାହାର ଯୋଜନା କରୁଥିଲେ । ଗୋପବନ୍ଧୁ ବାବୁଙ୍କ ମୃତ୍ୟୁରେ ଦେଶ ଆହୁରି ଗରିବ ହୋଇଗଲା । ସେ ସଶରୀର ଆମ ମଧ୍ୟରେ ନ ଥିଲେ ବି ତାଙ୍କର ଆତ୍ମା ଆମ ପାଖରେ ଅଛି । ଏହି ପୁଣ୍ୟାତ୍ମା ଓଡ଼ିଶାର କର୍ମୀଙ୍କୁ ପଥ ପ୍ରଦର୍ଶନ କରନ୍ତୁ । ରାଷ୍ଟ୍ରୀୟ ଆବଶ୍ୟକତା ଅନୁପାତରେ ଆମର କର୍ମୀମାନଙ୍କର ସଂଖ୍ୟା ଅତି ଅଳ୍ପ ଓ ସେମାନେ ଏଣେତେଣେ ବିକ୍ଷିପ୍ତ ଭାବରେ ରହିଛନ୍ତି । ତାଙ୍କର ମୃତ୍ୟୁ ପରେ ଆମର ଏହି କର୍ମୀମାନେ ନିଜ ନିଜର ସେବା କାର୍ଯ୍ୟରେ ମିଳିତ ଭାବେ ପୂର୍ବାପେକ୍ଷା ଅଧିକ ଯତ୍ନ କରନ୍ତୁ ଏବଂ ଅଧିକ ଆତ୍ମତ୍ୟାଗ କରନ୍ତୁ, ସେମାନଙ୍କ ମଧ୍ୟରେ ବେଶି ଏକତା ଆସୁ-ଏହି ପ୍ରେରଣା ସେମାନଙ୍କୁ ମିଳୁ । ମୁଁ ଏହି ସ୍ୱର୍ଗତ ଦେଶଭକ୍ତଙ୍କ ପରିବାର ଓ ଶିଷ୍ୟମାନଙ୍କ ପ୍ରତି ସମବେଦନା ପ୍ରକଟ କରୁଛି ।'

ଗାନ୍ଧୀ ଓ ଗୋପବନ୍ଧୁଙ୍କ ସମ୍ପର୍କର ବହୁ ଝଲକ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଯାଇଛି ।

'କଲେକ୍ଟେଡ୍ ୱାର୍କସ୍ ଅଫ୍ ଗାନ୍ଧୀ', 'ଗାନ୍ଧୀ ରଚନାବଳୀ', 'ଗାନ୍ଧିଜୀଙ୍କ ଉତ୍କଳରେ ପଦଯାତ୍ରା' ଏବଂ ପୁରୁଣା ସମାଜ ଓ ସତ୍ୟବାଦୀ ତଥା ଗୋପବନ୍ଧୁ ରଚନାବଳୀରେ ଏ ଦୁଇ ମହାମନୀଷୀଙ୍କ କଥା ଓ କାମ ସମ୍ପର୍କରେ ଯେତେ ଅମୂଲ୍ୟ ତଥ୍ୟ ରହିଛି, ବର୍ତ୍ତମାନର ପିଢି ତାହା ଉପରେ ଅଧିକ ଗବେଷଣା କରିବା ସହ ପ୍ରୟୋଗାତ୍ମକ କ୍ଷେତ୍ର ପ୍ରସ୍ତୁତ କଲେ ଓଡ଼ିଆ ଜାତି ଏହି ଦୁଇ ବିଭୂତିଙ୍କ ଛାଡ଼ିଯାଇଥିବା ଆଦର୍ଶରୁ ବହୁ ଭାବରେ ଉପକୃତ ହୋଇପାରିବ ।

ନିନ୍ଦା ପ୍ରଶଂସାକୁ ଖାତିର ନ କରି ଗାନ୍ଧୀ, ଗୋପବନ୍ଧୁଙ୍କ ଭଳି ସଂକଳ୍ପବଦ୍ଧ ସାଧକମାନେ ବଦଳାଇ ଥିଲେ ଇତିହାସର ମୋଡ଼ । ମହାତ୍ମାମାନଙ୍କ ବଚନ ଓ କଷଣ କେବେ ବି ଅକାରଣରେ ବୃଥା ଯିବ ନାହିଁ ବୋଲି ଗୋପବନ୍ଧୁ ବାରମ୍ବାର ଉଲ୍ଲେଖ କରି ଦେଶ ପାଇଁ କାରାବାସକୁ ପବିତ୍ର ପ୍ରବାସ ବୋଲି ଉଲ୍ଲେଖ କରିଯାଇଛନ୍ତି । ଏହାଛଡା ମହାତ୍ମାଙ୍କ ଭାଷଣ ଓ କଷଣ କେବେ ବୃଥା ଯିବ ନାହିଁ ବୋଲି ଚେତାଇ ଦେଇଛନ୍ତି । ସୂର୍ଯ୍ୟ ଚନ୍ଦ୍ର ଥିବା ପର୍ଯ୍ୟନ୍ତ କୃତଜ୍ଞତାର ସହ ଏ ଜାତି ଗାନ୍ଧୀ ଓ ଗୋପବନ୍ଧୁଙ୍କ ଭଳି ଯୁଗ ପୁରୁଷମାନଙ୍କୁ ସ୍ମରଣ କରିବାକୁ ବାଧ୍ୟ । ସେମାନଙ୍କ କଥା ଓ କାମ ବତିଘର ଭଳି ସମସ୍ୟା ସାଗରରେ ଉବୁଟୁବୁ ହୋଇଥିବା ଏ ଦେଶକୁ ମାର୍ଗ ଦର୍ଶନ ଦେଉଥିବ । ତେବେ ସେମାନଙ୍କ ପ୍ରଦର୍ଶିତ ପଥକୁ ଅନୁସରଣ କରି ଆଗକୁ ବଢ଼ିବା କାମ ଆମ ସମସ୍ତଙ୍କର ।







# ବୁଦ୍ଧି ଓ ସିଦ୍ଧିଦାତା ଅଗ୍ରପୂଜ୍ୟ ଶ୍ରୀଗଣେଶ

**କାଞ୍ଚନାରାୟଣ ମହାନ୍ତି**

ଓଡ଼ିଶା ହେଉଛି ଦେବଭୂମି । ଶ୍ରୀଜଗନ୍ନାଥଙ୍କ ଦେଶ । ପ୍ରତ୍ୟେକ ଓଡ଼ିଆ ଧର୍ମପ୍ରାଣ ବ୍ୟକ୍ତିମାନଙ୍କ ଦେହ ମନ ପ୍ରାଣରେ ଜଗନ୍ନାଥ ହିଁ ସର୍ବମୟକର୍ତ୍ତା । ତାଙ୍କରିଠାରୁ ବାରମାସରେ ତେର ପର୍ବର ଆୟୋଜନ । ସାରା ଓଡ଼ିଶାରେ ଗ୍ରାମରୁ ନଗର ପର୍ଯ୍ୟନ୍ତ ପ୍ରତିଦିନ କିଛି ନା କିଛି ପର୍ବପର୍ବାଣି, ଯାନିଯାତ୍ରା ଜନଜୀବନକୁ ଉତ୍ସବମୁଖର କରିଥାଏ । ଦେବଦେବୀଙ୍କର ଆରାଧନା ପଶ୍ଚାତ୍‌ରେ ଥାଏ ଜଗତମଙ୍ଗଳ କାମନା, ସୁଖଶାନ୍ତିର ସହାବସ୍ଥାନ ଓ ଆଧ୍ୟାତ୍ମିକ ଚେତନା ଭଳି ଦିବ୍ୟ ଆନନ୍ଦ ।

ପୁରାଣ କାବ୍ୟରେ ଆମ ମହାନ୍ ସଂସ୍କୃତିର ମହାନତାକୁ ଆମେ ସ୍ମରଣ କରିଥାଉ । ପୁରାଣ କାହାଣୀ ଭିତରେ ଦୁଇଟି ଦିଗ ଥାଏ । ଗୋଟିଏ ହେଲା କଥାବସ୍ତୁ ଓ ଅନ୍ୟଟି ଦାର୍ଶନିକ ଦିଗ । ବିନାୟକ ହେଉଛନ୍ତି ବିନୟର ପ୍ରତୀକ । ଯେଉଁ ମନୁଷ୍ୟଠାରେ ବିନୟୀ ସ୍ୱଭାବ ରହିଛି ସେ ଜଣେ ସଫଳ ମଣିଷରେ ଗଣା । ଆରାଧନାର ଅର୍ଥ ଆଡମ୍ବର ନୁହେଁ । ଆମ ଭାବଭକ୍ତି ପରମ୍ପରାକୁ ଫିଙ୍ଗିଦେଇ ଅପସଂସ୍କୃତିକୁ ଆପଣେଇ ନେବା ବର୍ତ୍ତମାନ ସମୟରେ ଦେଖାଯାଉଛି । ଆରାଧନା ହେଉଛି ଆଧ୍ୟାତ୍ମିକ ସମ୍ପଦ । ଏ ଜଗତରେ ଜଣେ ସାଧାରଣ ମଣିଷର ଜ୍ଞାନ ବା ଚୈତନ୍ୟ ଉଦୟ ଏହି ଆଧ୍ୟାତ୍ମିକ ସମ୍ପଦରୁ ମିଳିଥାଏ । ତାହାର ମୂର୍ତ୍ତିମାନ ଦେବତା ହେଲେ ଶ୍ରୀଗଣେଶ । ସେ ହେଲେ ବୁଦ୍ଧି ଓ ସିଦ୍ଧିର ଦେବତା । ସମଷ୍ଟିର ଶ୍ରୀବୃଦ୍ଧି ଓ ଗଣର ଆତ୍ମିକ ବିକାଶ ପାଇଁ ତାଙ୍କର ଆବିର୍ଭାବ । ବ୍ୟାସଦେବ ମହାଭାରତ ରଚନା କଲାବେଳେ ପରମଜ୍ଞାନୀ ଶ୍ରୀଗଣେଶଙ୍କର ସହଯୋଗ ଚାହିଁଥିଲେ । ବ୍ୟାସଦେବ



ଡାକିଲେ, ଶ୍ରୀଗଣେଶ ଲେଖିଲେ । ଶ୍ରୀଗଣେଶ ଥିଲେ ଏକଦନ୍ତ । ଏହାର କାରଣ ହେଲା ଥରେ ମହାବୀର ପର୍ଶୁରାମ ଯୋଗେଶ୍ୱର ଶିବଙ୍କ ଦର୍ଶନ ପାଇଁ କୈଳାସରେ ପହଞ୍ଚି ଥିଲେ । ଗିରି ଗୁମ୍ଫା ଦ୍ୱାରରେ ଗଣେଶ ଥିଲେ ଦ୍ୱାରପାଳ । ଭିତରେ ଶିବ ଧ୍ୟାନସ୍ଥ ଥିଲେ । ତାଙ୍କର ଧ୍ୟାନ





ଭଙ୍ଗ ନ ହେବା ପାଇଁ ସେ ପର୍ଶୁରାମଙ୍କୁ ଜଣାଇବା ସତ୍ତ୍ୱେ ପର୍ଶୁରାମ ନିଜର କ୍ଷମତା ପ୍ରଦର୍ଶନ କରି ଗଣେଶଙ୍କ ସହ ଯୁଦ୍ଧ କଲେ । ପ୍ରବଳ ଯୁଦ୍ଧରେ ଗଣେଶଙ୍କର ଦୁଇଟି ଦାନ୍ତ ସବୁ ଅସ୍ତ୍ରକୁ ପ୍ରତିହତ କରୁଥିଲା, ଶେଷରେ ପର୍ଶୁରାମ ଶିବପ୍ରଦତ୍ତ କୁଠାର ନିକ୍ଷେପ କରିବାରୁ ଗଣେଶଙ୍କର ଗୋଟିଏ ଦାନ୍ତ ଅଧା ଭାଙ୍ଗିଯାଇଥିଲା । ସେହିଦିନୁ ସେ ହେଲେ ଏକଦନ୍ତ । ଗଣେଶଙ୍କର ଅନ୍ୟ ନାମଗୁଡିକ ହେଲା ମହୋଦର, ଗଜାନନ, ବିକଟ, ବିଘ୍ନରାଜ, ବିନାୟକ, ବକ୍ରତୁଣ୍ଡ, ଓଁକାର ଭାଲଚନ୍ଦ୍ର, ସୁପକର୍ଣ୍ଣ, ମଙ୍ଗଳମୂର୍ତ୍ତି, ମହାକାୟ, ଗଣପତି, ସୁଦଗଲ, ଗଣାଧୀଶ, ଉମାପୁତ୍ର ଇତ୍ୟାଦି । ପୁରାଣରେ ଶ୍ରୀଗଣେଶଙ୍କର ଆବିର୍ଭାବ ସମ୍ପର୍କରେ ବିଭିନ୍ନ ଆଖ୍ୟାନ ରହିଛି । ବ୍ରହ୍ମବୈବର୍ତ୍ତ ପୁରାଣରେ ମାତା ପାର୍ବତୀ ପରମଜ୍ଞାନୀ ଶିବଙ୍କୁ ବିବାହ କରିବା ପରେ ପୁତ୍ର ସନ୍ତାନଟିଏ ପାଇଁ କାମନା କରିଥିଲେ । ଶିବ ଯେକି ମହାବ୍ରତଚାରୀ । ସେ କହିଲେ, ତୁମେ 'ପନ୍ୟକବ୍ରତ' ପାଳନ କର । ଏହି ବ୍ରତ ମାଘ ଶୁକ୍ଳ ଏକାଦଶୀଠାରୁ ଆରମ୍ଭ ହୋଇ ଏକବର୍ଷ ପର୍ଯ୍ୟନ୍ତ କଠୋର ତପ ସାଧନ ଦ୍ୱାରା ସମ୍ପନ୍ନ ହୋଇଥାଏ ।

ଏହି ବ୍ରତ ପୂରଣ ପରେ ସ୍ୱୟଂ ବିଷ୍ଣୁ ଆବିର୍ଭୂତ ହୋଇ ଏକ ଦିବ୍ୟ ସୁନ୍ଦର ଶିଶୁ ରୂପରେ ପାର୍ବତୀଙ୍କର ମାତୃତ୍ୱର ମୋହକୁ ପରୀକ୍ଷା କରିଥିଲେ । ପାର୍ବତୀ ସେହି ଦିବ୍ୟଶିଶୁଟିକୁ ହୃଦୟରେ ଜଡାଇ ଧରିଥିଲେ । ସେହି ଶିଶୁପୁତ୍ର ହେଲେ ଶ୍ରୀବିଷ୍ଣୁଙ୍କର ଅନ୍ୟ ରୂପ ଅଗ୍ରପୂଜ୍ୟ ଶ୍ରୀଗଣେଶ ।

ମତ୍ସ୍ୟ ପୁରାଣ ଅନୁସାରେ ମାତା ପାର୍ବତୀଙ୍କ ଦେହର ମଳିରୁ ଶ୍ରୀଗଣେଶଙ୍କର ଜନ୍ମ । ମାଆ ତାଙ୍କୁ ଜୀବନ୍ୟାସ ଦେଇଥିବାରୁ ସେ ହେଲେ ମାନସପୁତ୍ର ।

ଗଣେଶ ପୁରାଣ ଅନୁସାରେ ମହର୍ଷି କଶ୍ୟପ ତାଙ୍କ ପତ୍ନୀ ଅଦିତିଙ୍କୁ ବିନାୟକଙ୍କର ଧ୍ୟାନ ମନ୍ତ୍ର ଇତ୍ୟାଦି ଜପର କୌଶଳ ଏବଂ ନ୍ୟାସ ପୁରଶ୍ଚରଣ ଆଦି ଶିଖାଇ ଦେଲେ । ପତିଙ୍କ ଆଜ୍ଞା ମାନି ଭାଗ୍ୟବତୀ ଅଦିତି ଏକ ଅରଣ୍ୟର ଶାନ୍ତ ପରିବେଶରେ କଠୋର ତପସ୍ୟା କଲେ ।

କୋଟି ସୂର୍ଯ୍ୟସମ ତେଜଧାରୀ ବଳୟ ମଧ୍ୟରେ ଗଜାନନ ଆବିର୍ଭୂତ ହୋଇ ବର ଯାଚନା କଲେ । ଅଦିତି ଅତି ଆନନ୍ଦରେ ତାଙ୍କର ବନ୍ଦନା ପୂର୍ବକ ନିଜର ପୁତ୍ରଭାବେ ତାଙ୍କୁ ପାଇବାକୁ ପ୍ରାର୍ଥନା ଜଣାଇଥିଲେ ।

କଶ୍ୟପ୍ୟ ଗୃହେ ଦେବୋବତରିଷ୍ୟାତି ସମ୍ପ୍ରତାମ୍
କରିଷ୍ୟତ୍ୟଦ୍ଭୂତଂ କର୍ମ ପ୍ରଦାନୀତ୍ତ୍ୱଃ ପ୍ରବାସ୍ୟତି
ଦୁଷ୍ଟାନାଂ ନିଧନଂ ଚୈବ ସାଧୁନାଂ ପାଳନଂ ତଥା

(ଗଣେଶ ପୁରାଣ)

ଦେବଗଣ ଗଣେଶର ଆବିର୍ଭାବରେ ନୃତ୍ୟଗୀତରେ ଆବିର୍ଭାବ ଉତ୍ସବ ପାଳନ କରିଥିଲେ । ଶ୍ରୀଗଣେଶ ସାଧୁସନ୍ଥଙ୍କୁ ପାଳନ କରିବା ସହିତ ରାକ୍ଷସୀ ବିରଜା, ଉଦ୍ଭଟ ଓ ଧୁନ୍ଧୁରକୁ ବଧ କରିଥିଲେ । ପ୍ରତାପୀ ରାକ୍ଷସ ଅନ୍ଧକ, ନରାନ୍ତକ, ଜୁମ୍ଭା, ଧୂମ୍ରାକ୍ଷ ଦେବାନ୍ତକ ପ୍ରଭୃତିଙ୍କୁ ମଧ୍ୟ ବଧ କରିଥିଲେ ।

ଆମ ଓଡ଼ିଶାରେ ଥିବା ସର୍ବପ୍ରାଚୀନ ଓ ପ୍ରସିଦ୍ଧ ମନ୍ଦିରମାନଙ୍କ ମଧ୍ୟରେ ଗଞ୍ଜାମ ଜିଲ୍ଲାର ପଞ୍ଚମ ପୀଠରେ ଥିବା ଏକ ଗୁମ୍ଫା ଭିତରେ ଆରାଧିତ ସିଦ୍ଧି ବିନାୟକ ପ୍ରସିଦ୍ଧ । ଏହା ଏକ ଅଶ୍ୱତ୍ଥ ବୃକ୍ଷମୂଳରେ ୬୦୦ ବର୍ଷ ଧରି ପୂଜା ପାଉଛନ୍ତି ।

ଅନୁରୂପ ଭାବେ ବୈତରଣୀ ନଦୀକୂଳ ଦଶାଶ୍ୱମେଧ ଘାଟ ଏକ ପ୍ରସିଦ୍ଧ ତୀର୍ଥଭୂଇଁ । ଏହାର ପାଖାପାଖି ଯଜ୍ଞବରାହ ମନ୍ଦିର ନିକଟରେ ବୁଢାଗଣେଶ ମନ୍ଦିର ମଧ୍ୟ ଅତି ପ୍ରାଚୀନ ଓ ପ୍ରସିଦ୍ଧ ମନ୍ଦିର । ସୋନପୁର ଓ ଭୁବନେଶ୍ୱର ପରି ଏହି ମନ୍ଦିର ରେଖ ଓ ପୀଢ ଶୈଳୀରେ ନିର୍ମିତ ହୋଇଥିଲା । ଗଣେଶ ଚତୁର୍ଥୀ ସହିତ ଅନ୍ୟାନ୍ୟ ସମସ୍ତ ଶୁଭ କାମର ଆରମ୍ଭରେ ଭକ୍ତମାନେ ଶ୍ରୀଗଣେଶଙ୍କୁ ଆବାହନ ଓ ପୂଜନ ଦ୍ୱାରା ସେମାନଙ୍କର ସବୁକାମ ନିର୍ବିଘ୍ନରେ ସମ୍ପନ୍ନ ହୋଇଥାଏ । ବିଦ୍ୟାର୍ଥୀମାନେ ଗଣେଶ ଚତୁର୍ଥୀରେ ଶ୍ରୀଗଣେଶଙ୍କ ପାଦପଦ୍ମରେ ବହି ଖାତା ଲେଖନୀ ପୂଜା କରିବା ସହିତ ପୁଷ୍ପାଞ୍ଜଳି ପ୍ରଦାନ କରି 'ନମଃ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୁ, ମମ ବିଘ୍ନ ବିନାଶାୟ ଗଣାଧିପତୟେ ନମଃ' ମନ୍ତ୍ର ଦ୍ୱାରା ପୂଜନ କରିଥାନ୍ତି ।



ଗୁଜୁରାଟସ୍ଥିତ ସିଦ୍ଧି ବିନାୟକ ମନ୍ଦିର ଭାରତର ସବୁଠାରୁ ବଡ ଗଣେଶ ମନ୍ଦିର । ଅହମ୍ମଦାବାଦ ନିକଟସ୍ଥ ମହେମଦାବାଦ୍‌ର ଭାତ୍ରକ୍ ନଦୀକୂଳରେ ନିର୍ମିତ ଏହି ମନ୍ଦିର ୬ଲକ୍ଷ ବର୍ଗଫୁଟ ଅଞ୍ଚଳ ମଧ୍ୟରେ ନିର୍ମିତ ହୋଇଛି । ଗଣେଶଙ୍କ ଆକୃତିରେ ନିର୍ମିତ, ଏହି ମନ୍ଦିରଟି ଭୂମିଠାରୁ ୨୦ ଫୁଟ ଉଚ୍ଚରେ ନିର୍ମିତ, ଯେଉଁଠି ୫୬ ଫୁଟ ଉଚ୍ଚରେ ଶ୍ରୀଗଣେଶ ବିଜେ କରିଛନ୍ତି । ମୁମ୍ବାଇର ପ୍ରସିଦ୍ଧ ସିଦ୍ଧି ବିନାୟକ ମନ୍ଦିରରୁ ଆସିଥିବା ଆଜ୍ଞାମାଳ ଓ ଜ୍ୟୋତି ଏଠାରେ ସ୍ଥାପନା କରାଯାଇଛି । ସେଥିପାଇଁ ଏହାକୁ ସିଦ୍ଧି ବିନାୟକ ଭାବେ ନାମିତ କରାଯାଇଛି ।

ହିନ୍ଦୁ ସଂସ୍କୃତିରେ ଅଷ୍ଟ ବିନାୟକ ଯାତ୍ରା ଗଣପତି ଉପାସନାରେ ଶ୍ରେଷ୍ଠ ଧର୍ମାଚାର ଭାବେ ଗ୍ରହଣ କରାଯାଏ । ବିଶେଷତଃ ମହାରାଷ୍ଟ୍ରର ପୁନେଠାରୁ ମୟୂରେଶ୍ୱର-ମନ୍ଦିର ନିକଟରୁ ୬୫୪ କି.ମି. ପରିକ୍ରମା ମଧ୍ୟରେ ଆଠଟି ଗଣପତି ଦେବଙ୍କୁ ଦର୍ଶନ କରି ପୁନଶ୍ଚ ସେହି ମୟୂରେଶ୍ୱର ମନ୍ଦିର ପହଞ୍ଚି ଯାତ୍ରା ବା ପରିକ୍ରମା ପୂର୍ଣ୍ଣ କରିବାକୁ ହୁଏ । ସେହି ଅଷ୍ଟଦେବତାମାନେ ହେଲେ ମୟୂରେଶ୍ୱର, ସିଦ୍ଧି ବିନାୟକ, ବଲାଲେଶ୍ୱର, ବରଦ ବିନାୟକ, ଚିନ୍ତାମଣି, ଗିରିଜାତମାଜ, ବିଘ୍ନହର ଓ ମହାଗଣପତି । ମହାଗଣପତି ମନ୍ଦିର ପୁନାର ଅତି ନିକଟସ୍ଥ 'ରାନ୍‌ଜ'ଠାରେ ଅବସ୍ଥିତ । ଗଣପତି ତ୍ରିପୁରାସୁର ବଧ କରିଥିଲେ । ତାଙ୍କର ୧୦ଟି ଶୁଣ୍ଢ ଏବଂ ୨୦ଟି ହାତ । ପ୍ରତ୍ୟେକ ବିନାୟକଙ୍କ ଆବିର୍ଭାବ ଓ ଅଷ୍ଟବିନାୟକ ଯାତ୍ରାର ବିଶେଷତ୍ୱ ରହିଛି । ପଞ୍ଚଦେବ ପୂଜନ ମନ୍ତ୍ର ହେଲା- 'ଆଦିତ୍ୟଂ ଗଣନାଥଂ ଚ ଦେବୈଂ ଚ କେଶବମ୍' । ଅର୍ଥାତ୍ ଗଣେଶ, ସୂର୍ଯ୍ୟ, ଦୁର୍ଗା, ଶିବ ଓ ବିଷ୍ଣୁ ଇତ୍ୟାଦି ପଞ୍ଚଦେବତାଙ୍କୁ ସ୍ମରଣ କରି ଶୁଭାଶୁଭ କର୍ମ ଯଥା, ଗୃହ ନିର୍ମାଣ, ଭୂମିପୂଜା, ବିବାହ, ଯାତ୍ରା, ବିଦ୍ୟାରମ୍ଭ ତଥା ଯେକୌଣସି ବିଘ୍ନନାଶନ ପାଇଁ ଆରମ୍ଭ କରାଯାଇଥାଏ । ଶ୍ରୀପୁରୁଷୋତ୍ତମ କ୍ଷେତ୍ରର କ୍ଷେତ୍ରପତି ପ୍ରଭୁ ଶ୍ରୀଜଗନ୍ନାଥ । ଯାହାଙ୍କର ପ୍ରତ୍ୟେକ ଲୀଳା ମାଧୁରୀ ମାଧୁର୍ଯ୍ୟମୟ । ଶ୍ରୀକ୍ଷେତ୍ରରେ ମହାପ୍ରଭୁଙ୍କର ସ୍ନାନ ଉତ୍ସବକୁ ଶ୍ରୀଦାରୁବ୍ରହ୍ମଙ୍କର ଆଦ୍ୟଲୀଳା ବୋଲି କୁହାଯାଏ । ମହାପ୍ରଭୁ ଦାରୁବ୍ରହ୍ମରୂପେ ଆବିର୍ଭୂତ ହେବା ପରେ ପ୍ରଥମ ମଙ୍ଗଳ ମୁହୂର୍ତ୍ତରେ ଏହି ସ୍ନାନଲୀଳା କରାଇଥିଲେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ।

ସେତେବେଳେ ସ୍ନାନମଣ୍ଡପ ନଥିଲା । କଥିତ ଅଛି, କୂର୍ମବେଢା ଛଡା ମେଘନାଦ ପାଚେରୀ ମଧ୍ୟ ନିର୍ମାଣ ହୋଇ ନ ଥିଲା । ସ୍ନାନମଣ୍ଡପ ନ ଥିବାରୁ ଏକ କାଠ ତିଆରି ମଣ୍ଡପରେ ସ୍ନାନ ବିଧି ସମାପନ ହୋଇଥିଲା । ଅନେକ ଶାସ୍ତ୍ରରେ ଏହାକୁ 'ମଞ୍ଚସ୍ନାନ' ବୋଲି କୁହାଯାଇଛି । ଓଡ଼ିଆର ଠାକୁର । ଯେତେ ଦେବଦେବୀ ସମସ୍ତେ କାଳିଆ ଠାକୁରଙ୍କୁ ଘେରି ରହିଛନ୍ତି । ଓଡ଼ିଆ ଜନ ଜୀବନରେ ଏହି ଶୁଭଦିବସଟି ଅତି ପବିତ୍ର ଦେବସ୍ନାନ ପୂର୍ଣ୍ଣିମା ଭାବେ ପୁରପଲ୍ଲୀରେ ମଧ୍ୟ ନିଷ୍ଠାପର ଭାବରେ ଯେ ଯେଉଁଠି ଥାଆନ୍ତୁ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଭକ୍ତି ନିବେଦନ କରିଥାନ୍ତି । ୧୦୮ କଳସରେ ମହୌଷଧି ମିଶ୍ରିତ ଅଭିମନ୍ତ୍ରିତ ଜଳରେ ଶ୍ରୀଜୀଉମାନେ ସ୍ନାନ କରିଥାନ୍ତି ।

**ଗଣପତି ବେଶ**

ମହାପ୍ରଭୁ ବର୍ଷକୁ ଥରେ ସ୍ନାନବେଦୀ ଉପରେ ବଡଦାଣ୍ଡରେ ପ୍ରତୀକ୍ଷା କରିଥିବା ଅଗଣିତ ଭକ୍ତଜନମାନଙ୍କୁ ଗଣପତି ବେଶରେ ଦର୍ଶନ ଦେଇଥାନ୍ତି । ସନାତନ ଧର୍ମ ପରମ୍ପରାରେ ଗଣପତି ନାଥ ହେଉଛନ୍ତି ବିଘ୍ନ ବିନାଶନ । ପ୍ରତ୍ୟେକ ଶୁଭକାର୍ଯ୍ୟ ଆରମ୍ଭରେ ତାଙ୍କୁ ସ୍ମରଣ କରାଯାଇଥାଏ । ତାଙ୍କୁ ଏହି ବେଶରେ ଦର୍ଶନ କଲେ ଜୀବନର ସକଳ ବାଧାବିଘ୍ନ ଦୂର ହୋଇଯାଏ ବୋଲି ଶାସ୍ତ୍ରୀୟ ବିଶ୍ୱାସ ରହିଛି । ମହାପ୍ରଭୁ ଆଦ୍ୟସ୍ନାନ ପରେ ଗଣପତି ବେଶ ହେବାର ତିନିଟି କାରଣ ହେଲା ସଂପ୍ରତି ଦୃଶ୍ୟମାନ ସୁରମ୍ୟ ଶ୍ରୀମନ୍ଦିର ସମ୍ରାଟ୍ ଚୋଡଗଙ୍ଗଦେବଙ୍କ ଦ୍ୱାରା ନିର୍ମିତ ହେଉଥିଲା । ସେତିକିବେଳେ ମନ୍ଦିର ନିର୍ମାଣରେ ବହୁ ବିଘ୍ନ ଉପୁଜିବାରୁ ପଣ୍ଡିତମାନଙ୍କ ପରାମର୍ଶକ୍ରମେ ଗଣପତିଙ୍କୁ ପୂଜା କରି ମନ୍ଦିର ଉପରକୁ ପଥର ଉଠାଇବା ପାଇଁ ଚାର ବନ୍ଧାଯାଇଥିଲା । ସେହି ସମୟରେ ପୂଜା ପାଉଥିବା ଗଣେଶ ଏବେ ମଧ୍ୟ ପୂଜା ପାଉଛନ୍ତି, ଯାହାକୁ 'ଚାର ଗଣେଶ' କୁହାଯାଏ । ଗଣପତି ବେଶର ଦ୍ୱିତୀୟ କାରଣ ହେଲା ଶ୍ରୀପୁରୁଷୋତ୍ତମ ଦେବଙ୍କର କାଞ୍ଚି ବିଜୟ

ଅଭିଯାନ । ପ୍ରଥମ ଥର ଗଜପତି ରାଜା କାଞ୍ଚି ଯୁଦ୍ଧରେ ନରପତି ସାଲ୍ୱ ନରସିଂହଙ୍କଠାରୁ ପରାଜିତ ହୋଇଥିଲେ । ପରାଜିତ ହୋଇ ଫେରିବା ରାସ୍ତାରେ ତାଙ୍କୁ ସୈକତାଚାରୀ ନାମକ ଜଣେ ବୈଷ୍ଣବ ଦେଖା ହୋଇଥିଲେ । ସେ କହିଥିଲେ କଳ ବଳଠାରୁ କଳିଙ୍ଗ ରାଜ୍ୟ କାଞ୍ଚିରାଜ୍ୟଠାରୁ ବହୁ ଆଗରେ ଓ ଅସଲ କଥାଟି ହେଲା କାଞ୍ଚିଯୁଦ୍ଧରେ ନିଜେ ଶ୍ରୀଗଣପତି ଭାଗ ନେଇଥିବାରୁ ଆପଣଙ୍କର ପରାଜୟ ହେଲା । ଏଣୁ ଆପଣ ଆପଣଙ୍କର ଆରାଧ୍ୟଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସଙ୍ଗରେ ଆଣି ଯୁଦ୍ଧ ଅଭିଯାନ କରନ୍ତୁ ଆପଣଙ୍କର ନିଶ୍ଚୟ ବିଜୟ ହେବ ।

ଗଜପତି ଦ୍ୱିତୀୟଥର ଯୁଦ୍ଧ ଅଭିଯାନରେ ମହାପ୍ରଭୁଙ୍କୁ ନିବେଦନ ତଥା ଆମନ୍ତ୍ରଣ କରିଥିବାରୁ ସେ ବିଜୟୀ ହୋଇ । କାଞ୍ଚିବିଜୟ ପରେ ସେ ଯେଉଁ ଗଣେଶଙ୍କୁ ସାଙ୍ଗରେ ଆଣିଥିଲେ ସେ ବର୍ତ୍ତମାନ କାଞ୍ଚିଗଣେଶ ଭାବରେ ଶ୍ରୀମନ୍ଦିର ବେଢାରେ ପଶ୍ଚିମ ପାର୍ଶ୍ୱରେ ପୂଜା ପାଉଛନ୍ତି । ଗଜପତି ଉପାସନାରେ ମହାପ୍ରଭୁ ବେଶ ଏହି ବିଶାଳ ଧର୍ମଧାରାରେ ମିଶିଯାଇଛି ।

ତୃତୀୟ କାରଣଟି ହେଲା ଶ୍ରୀଗଣେଶଙ୍କର ଉପାସନା ଗଣପତି ଭଟ୍ଟ ଯେ କି ଭଟ୍ଟିପୁରମ୍‌ରୁ ପ୍ରଭୁଙ୍କ ଦର୍ଶନ କରିବାକୁ ଆସି ପ୍ରଭୁଙ୍କର ଲୀଳାରେ ଶ୍ରୀଗଣେଶଙ୍କର କୌଣସି ସଙ୍କେତ ନ ଦେଖି ସ୍ନାନପୂର୍ଣ୍ଣିମା ଦିନ ସେ ମନକଷ୍ଟ କରି ଫେରି ଯାଇଥିଲେ । ସେ ତଥା ଭାବଭକ୍ତିରେ ପରଂବ୍ରହ୍ମଙ୍କର ମାହାତ୍ମ୍ୟକୁ ହୃଦ୍‌ବୋଧ କରିଥିଲେ । ଭକ୍ତର ମନକଥା ଜାଣି ସେ ସ୍ୱପ୍ନାଦେଶ ଦେଲେ । ଭାବ ଚକ୍ଷୁରେ ସେ ଦେଖିଲେ ସ୍ନାନମଣ୍ଡପରେ ମାଆ ସୁଭଦ୍ରା ଗଣପତିଙ୍କ ଶକ୍ତି ଦେବୀ ମାତଙ୍ଗୀ, ବଳଭଦ୍ର ହରିଦ୍ରା ଗଣପତି ଏବଂ ନିଜେ ଶ୍ରୀଜଗନ୍ନାଥ ଗଣପତି ରୂପେ ଉଭା ହୋଇଛନ୍ତି । ସେ ପ୍ରଭୁଙ୍କର ଗଣପତି ରୂପ ଦର୍ଶନ କରି ତାଙ୍କର ଶରଣ ଭିକ୍ଷା କରିଥିଲେ ।

ଓଡ଼ିଶାରେ ଗଣେଶ ପୂଜାରୁ ପାର୍ବଣ ଆରମ୍ଭ ହୁଏ ଏବଂ ଶେଷ ହୁଏ କାର୍ତ୍ତିକଙ୍କର ପୂଜାରେ । ସତୁରୀ ଦଶକରେ କେବଳ ସ୍କୁଲ, କଲେଜ ଓ ଶିକ୍ଷା ପ୍ରତିଷ୍ଠାନମାନଙ୍କରେ ଛାତ୍ରମାନେ ଉପବାସ ରହି ଶ୍ରୀଗଣେଶଙ୍କୁ ନଡିଆ ରାଶିଲଡୁ ଉଖୁଡା ଭୋଗ ନିବେଦନ କରି ବିଦ୍ୟା ବୁଦ୍ଧି ପାଇଁ ପ୍ରାର୍ଥନା କରୁଥିଲେ । ଆଜି ସମୟ ବଦଳିଛି । ସହର ପଲ୍ଲୀ ସବୁଠି ଗଣେଶ ମେଢ ଓ ନାଚଗୀତର ଆସର ଚାଲିଛି । ଶ୍ରୀଗଣେଶ ପୂଜା କରି ବିଦ୍ୟାର୍ଥୀମାନେ ଜ୍ଞାନୀ ହୁଅନ୍ତୁ କିନ୍ତୁ ଅର୍ଥ ଅପେକ୍ଷା ପରମାର୍ଥ ପ୍ରତି ଧ୍ୟାନ ଦିଅନ୍ତୁ । ଅବିଦ୍ୟା ବର୍ଜନ କରି ଆଧ୍ୟାତ୍ମିକ ଶକ୍ତିର ଆତ୍ମଜ୍ଞାନୀ ହୁଅନ୍ତୁ ।

ଆଶ୍ରମ, ଶ୍ରୀବିହାର, କଟକ-୮



# ଅଦ୍ୱୈତବାଦୀଙ୍କ କଳ୍ପନାରେ ଶ୍ରୀକୃଷ୍ଣ

**ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ**

ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ଅଦ୍ୱୈତ ସମ୍ପ୍ରଦାୟର ଆଚାର୍ଯ୍ୟ ଲକ୍ଷ୍ମୀଧର କବି ତାଙ୍କ ରଚିତ ଅଦ୍ୱୈତ ମକରନ୍ଦ ପୁସ୍ତକରେ ଇଷ୍ଟଦେବତା ଭଗବାନ ଶ୍ରୀକୃଷ୍ଣଙ୍କୁ ଭକ୍ତିଅର୍ଘ୍ୟରେ ଲେଖିଛନ୍ତି-



କଟାକ୍ଷକିରଣାଚାନ୍ତନମନ୍ମୋହାବ୍ଧୟେ ନମଃ ।
ଅନନ୍ତାନନ୍ଦକୃଷ୍ଣାୟ ଜଗନ୍ମଙ୍ଗଳମୂର୍ତ୍ତୟେ ।

**ଶବ୍ଦାର୍ଥ:** ନମଃ ପ୍ରଣାମ ବା ନମସ୍କାର ଅନନ୍ତ ଆନନ୍ଦ କୃଷ୍ଣାୟ ଅନନ୍ତ ଆନନ୍ଦ ସ୍ୱରୂପ ଶ୍ରୀକୃଷ୍ଣଙ୍କୁ ଜଗତ୍-ମଙ୍ଗଳ-ମୂର୍ତ୍ତୟେ, ଯାହାର ମୂର୍ତ୍ତି ଜଗତକୁ ମଙ୍ଗଳ ବା ଶୁଭ ପ୍ରଦାନ କରେ କଟାକ୍ଷକିରଣ-ଆଚାନ୍ତ-ନମତ୍ ମୋହ ଅବ୍ଧୟେ ଏବଂ ଯାହାର ବକ୍ର ଦୃଷ୍ଟିର ଏକ କିରଣ ଦ୍ୱାରା ତାଙ୍କର ଶରଣରେ ଆସିଥିବା ଭକ୍ତମାନଙ୍କର ମୋହରୂପୀ ସମୁଦ୍ର ଶୁଷ୍କ ହୋଇଯାଏ ।

**ଭାବାର୍ଥ:** ''ସେହି ଭଗବାନ ଶ୍ରୀକୃଷ୍ଣଙ୍କୁ ପ୍ରଣାମ, ଯିଏ ଅନନ୍ତ ଆନନ୍ଦ ସ୍ୱରୂପ ଅଟନ୍ତି, ଯାହାର ମୂର୍ତ୍ତି ଜଗତକୁ ମଙ୍ଗଳ ପ୍ରଦାନ କରେ ଏବଂ ଯାହାର ବକ୍ର ଦୃଷ୍ଟିର ଏକ କିରଣ ଦ୍ୱାରା ଶରଣାପନ୍ନ ହୋଇଥିବା ଭକ୍ତମାନଙ୍କର ମୋହରୂପୀ ସମୁଦ୍ର ଶୁଷ୍କ ହୋଇଯାଏ ।''

**ବ୍ୟାଖ୍ୟା:** ଆମର ସାଂସ୍କୃତିକ ପରମ୍ପରାରେ ମାତା-ପିତା, ଗୁରୁ ଅଥବା ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ନାମ ନେଇ ଡାକିବା ଅନାଦର ସୂଚକ ଅଟେ । ତେଣୁ ଏହି ଗ୍ରନ୍ଥର ଲେଖକ ତାଙ୍କର ଗୁରୁଙ୍କ ନାମକୁ ପରୋକ୍ଷ ରୂପେ ଉଲ୍ଲେଖ କରି ତାଙ୍କ ପ୍ରତି ସମ୍ମାନ ବ୍ୟକ୍ତ କରିଛନ୍ତି । ଗୁରୁ ଏବଂ ଇଷ୍ଟଦେବଙ୍କ ନାମର ଏଭଳି ସମାସ କରାଯାଇଛି, ଯଦ୍ଦ୍ୱାରା କି ଗୁରୁ ଏବଂ ଈଶ୍ୱରଙ୍କର ଅଭେଦ ସିଦ୍ଧ ହୋଇଥାଏ । ଭଗବାନ ଶ୍ରୀକୃଷ୍ଣଙ୍କୁ ନମସ୍କାର କରିବାର ଅର୍ଥ, ତାଙ୍କ ସହିତ ଆତ୍ମାକୁ ମିଶାଇଦେବା । ଏହିପରି ଗୁରୁ, ଈଶ୍ୱର ତଥା ଆତ୍ମା, ଅନ୍ତତଃ ଏକ ତତ୍ତ୍ୱ ଅଟେ । ଭଗବାନ ଶ୍ରୀକୃଷ୍ଣ ତାଙ୍କର ସେହି ମନ ଆକର୍ଷଣକାରୀ ରୂପକୁ ଜଗତର ମଙ୍ଗଳ ଉଦ୍ଦେଶ୍ୟରେ ଧାରଣ କରିଥିଲେ । ତାଙ୍କର କୃପା-କଟାକ୍ଷର କିରଣ ଭକ୍ତଜନମାନଙ୍କ ମୋହରୂପୀ ସମୁଦ୍ରକୁ ଶୁଷ୍କ କରିଦିଏ ।





ଏଠାରେ 'ମୋହ'ର ତୁଳନା ସମୁଦ୍ର ସହିତ କରାଯାଇଛି । କାରଣ, ଅପାର ସମୁଦ୍ର ସଦୃଶ ଏହି ମୋହକୁ ପାର କରିବା ବଡ଼ କଠିନ ଅଟେ । ସମୁଦ୍ରର ଉତ୍ତାଳ ତରଙ୍ଗମାଳାକୁ ମୋହରୁ ଉତ୍ପନ୍ନ ହେଉଥିବା ଭ୍ରାନ୍ତି ଓ ବିକ୍ଷେପ ସହିତ ତୁଳନା କରାଯାଇପାରେ । ସମୁଦ୍ରର କୁମ୍ଭୀର, ମତ୍ସ୍ୟ, ସର୍ପ ଆଦି ଭୟଙ୍କର ଜଳଜନ୍ତୁଙ୍କ ସଦୃଶ ଆମର ମନରେ ଥିବା ରାଗ, ଦ୍ୱେଷ, କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦି ଆମକୁ ଗିଳିଦେବା ଲାଗି ସର୍ବଦା ମୁହଁ ଖୋଲି ରହିଛନ୍ତି ।

ଈଶ୍ୱରକୃପା, ଗୁରୁକୃପା ଏବଂ ଶାସ୍ତ୍ରକୃପାରୁ ବଞ୍ଚିତ ବ୍ୟକ୍ତି ମୋହରୂପୀ ଗଭୀର ସମୁଦ୍ରରେ ବୁଡ଼ି ମରିଥାନ୍ତି । ସେମାନଙ୍କ କୃପାର ଚିହ୍ନ କ'ଣ? ପରମ ସତ୍ୟକୁ ଜାଣିବା ପାଇଁ ତୀବ୍ର ଜିଜ୍ଞାସା ହିଁ 'ଈଶ୍ୱର କୃପା'ର ସୂଚକ । ଜିଜ୍ଞାସୁକୁ ଶିଷ୍ୟରୂପେ ସ୍ୱୀକାର କରିବା ଏବଂ ପ୍ରସନ୍ନତାପୂର୍ବକ ତାଙ୍କୁ ଉପଦେଶ ଦେବା ହେଉଛି, 'ଗୁରୁକୃପା' । ଶୃତି ସେହି ପରମ ସତ୍ୟକୁ ବିଭିନ୍ନ ବ୍ୟକ୍ତିବିଶେଷଙ୍କଠାରେ ଥିବା ସେମାନଙ୍କ ମାନସିକ ଯୋଗ୍ୟତା ଅନୁସାରେ ବିଭିନ୍ନ ପ୍ରକାରରେ ସ୍ୱୟଂକୁ ବ୍ୟକ୍ତ କରି ସେମାନଙ୍କ ଉପରେ କୃପା ବର୍ଷା କରିଥାଏ । ଏହି ଉପରୋକ୍ତ ତିନି ପ୍ରକାର କୃପା ସହିତ ଆତ୍ମ କୃପା ସବୁଠାରୁ ଅଧିକ । ଥରେ ମାତ୍ର ମନରେ ସତ୍ୟ ପ୍ରତି ଜିଜ୍ଞାସା ଉତ୍ପନ୍ନ ହୋଇଗଲେ, ଦୃଢ଼ ଭାବରେ ସେହି ଲକ୍ଷ୍ୟରେ ଅଗ୍ରସର ହୋଇ ପୁନର୍ବାର ପଛକୁ ନ ଫେରିବା ହିଁ ଆତ୍ମକୃପା ।

ଆଚାର୍ଯ୍ୟ ଲକ୍ଷ୍ମୀଧରଙ୍କର ଗୁରୁ ଥିଲେ ଅନନ୍ତାନନ୍ଦ ସ୍ୱାମୀ, କେତେକ ତାଙ୍କର ଜନ୍ମସ୍ଥାନ ଓଡ଼ିଶାର ଶ୍ରୀଜଗନ୍ନାଥଙ୍କ ଧାମ କହୁଥିବା ବେଳେ ଅଦ୍ୱୈତ ମକରନ୍ଦର ବ୍ୟାଖ୍ୟାକାର ମହାନ୍ ବେଦାନ୍ତୀ ସ୍ୱୟଂପ୍ରକାଶ ଯତିଙ୍କର ବିଶ୍ୱାସ ଯେ ସେ ତାମିଲନାଡୁର ତିରୁଚି ପ୍ରାନ୍ତରେ ଜନ୍ମଗ୍ରହଣ କରିଥିଲେ ।

ଜଣେ ବେଦାନ୍ତୀଙ୍କର ଏହି ମତ ଉପରେ ଆଲୋଚନା କଲେ ଦେଖାଯାଏ ଯେ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ସମସ୍ତ ଆକର୍ଷଣର ମହାଶକ୍ତି । ''ଆକର୍ଷୟତି ଇତି କୃଷ୍ଣ''ର ବ୍ୟାପକତାକୁ ବିଶ୍ଳେଷଣ କଲେ ମହାକର୍ଷଣ ଶକ୍ତିର ପରିଚୟ ମିଳିଥାଏ । ଏହି ମହାଜଗତର ପ୍ରତ୍ୟେକଟି ଅଣୁ ପରମାଣୁରେ ସେପରି ସତ୍ତା ବିଦ୍ୟମାନ । ବିଖ୍ୟାତ ପଦାର୍ଥ ବିଜ୍ଞାନୀ ଆଲ୍‌ବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କ ମତରେ ସେହି ମହାକର୍ଷଣର ତରଙ୍ଗ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ଆଚ୍ଛାଦିତ କରିଛି । ଜୀବ ଏବଂ ଜଡ଼ ଜଗତରେ ଆକର୍ଷଣର ଶକ୍ତି ଯେପରି ପରିଲକ୍ଷିତ ତାହା ବି ହୋଇଥାଏ ଅନ୍ତରୀକ୍ଷରେ ଅନୁଭୂତ । ପରସ୍ପର ଆକର୍ଷଣଜନିତ ଦୁଇଟି କୃଷ୍ଣଗର୍ତ୍ତର ମିଳନରେ ସୃଷ୍ଟି ହୋଇଥିବା ବିଶାଳ କୃଷ୍ଣବଳୟରୁ ଉଦ୍ଭବ ହୁଏ ମହାକର୍ଷଣ । ଯାହାର କବଳରୁ ମହାଜଗତର କୌଣସି ବସ୍ତୁ ଖସିଯାଇପାରେ ନାହିଁ । ଏପରିକି ଆକର୍ଷିତ ହୋଇ ଆସୁଥିବା ବହୁ ନକ୍ଷତ୍ରମାନଙ୍କର ସତ୍ତା ବି ସେଥିରେ ହୋଇଯାଏ ବିଲୀନ । ସେହି ମହାକର୍ଷଣ ତରଙ୍ଗ ସମଗ୍ର ଅନ୍ତରୀକ୍ଷରେ ପ୍ରସାରିତ ହୋଇ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ହୋଇଥିବା ପଦାର୍ଥ ବିଜ୍ଞାନୀମାନଙ୍କର ମତ । ସେହିଭଳି ଅଣୁ ସହିତ ପରମାଣୁ ଆଦି ଆକର୍ଷଣ ବଳରେ ହିଁ ପରସ୍ପର ସହ ଜଡ଼ିତ । ଗୋଟିକରୁ ଅନ୍ୟଟିର ଅଲଗା କରିବାକୁ ହେଲେ ପ୍ରଚଣ୍ଡ ମହାଶକ୍ତିର ଆବଶ୍ୟକତା ପଡ଼ିଥାଏ । ଏପରି ଶକ୍ତିର ଅଧିକ ରହସ୍ୟ ଜାଣିବା ନିମନ୍ତେ ବିଜ୍ଞାନ ସଦା ତତ୍ପର ।

ଜୀବଜଗତର ପ୍ରତ୍ୟେକର ପରସ୍ପର ସହିତ ଯେଉଁ ପ୍ରେମ ବା ବିଦ୍ୱେଷ ଭାବନାର ଉଦ୍ରେକ ହୋଇଥାଏ, ତାହା ମଧ୍ୟ ଏହି ବଳୟର ପରିସରଭୁକ୍ତ । ପୁଣି ବିଶୁଦ୍ଧ ପ୍ରେମ ଉଦ୍ରେକରେ ବିଦ୍ୱେଷ ଅର୍ଥାତ୍ ଘୃଣା, ସ୍ୱାର୍ଥପରତା, ଲୋଭ, ଅସୂୟା ସମ୍ପୂର୍ଣ୍ଣ ଭାବେ ମନରୁ ପ୍ରଶମିତ ହୋଇଯାଏ । ତେଣୁ ବିଶ୍ୱ ବ୍ରହ୍ମାଣ୍ଡରେ ଥିବା ସମସ୍ତ ଜୀବଜଗତରେ ଏପରି ପ୍ରଚଣ୍ଡ ଶକ୍ତିଶାଳୀ ମହାଶକ୍ତିର ଯେଉଁ ପ୍ରଭାବ ରହିଛି, ତାହା ଭାବିଲେ ବିସ୍ମୟରେ ମନ ପୁଲକିତ ହୋଇଉଠେ । ପ୍ରତ୍ୟେକ ସେହି ମହାଶକ୍ତିର ଅସ୍ତିତ୍ୱ ରହସ୍ୟକୁ ଅନୁଭବ କରୁଥିଲେ ମଧ୍ୟ ତାହା ଦୃଶ୍ୟମାନ ନୁହେଁ । ଆଇନ୍‌ଷ୍ଟାଇନ୍ ନିଜ କନ୍ୟା ଲାଇଜେରଲଙ୍କୁ ଲେଖିଥିବା ୧୪୦୦ ଚିଠିରୁ କେତେକ ମଧ୍ୟ ଏହାରି ଉପରେ ଆଧାରିତ, ଯାହାକି ହିବ୍ରୁ ବିଶ୍ୱବିଦ୍ୟାଳୟରେ ଗଚ୍ଛିତ ରହିଛି ।

ସୃଷ୍ଟି ରଚନା ସମ୍ପର୍କୀୟ ଶ୍ରୀମଦ୍ଭଗବଦ୍‌ଗୀତା ନବମ ଅଧ୍ୟାୟ (ରାଜବିଦ୍ୟାରାଜଗୁହ୍ୟ ଯୋଗ)ର ଦଶମ ଶ୍ଳୋକକୁ ଏଠାରେ ଉପସ୍ଥାପିତ କରାଯାଇପାରେ ।

ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।
ହେତୁନାନେନ କୌନ୍ତେୟ ଜଗଦ୍‌ବିପରିବର୍ତ୍ତତେ ॥

ଅର୍ଥ- ହେ ଅର୍ଜ୍ଜୁନ, ଅଧ୍ୟକ୍ଷରୂପୀ ମୋର ଶକ୍ତି ଓ ସହାୟତାରେ ପ୍ରକୃତି ଚରାଚର ସହିତ ସମସ୍ତ ଜଗତକୁ ସୃଷ୍ଟି କରେ ଏବଂ ସେହି ହେତୁ ହିଁ ସଂସାରଚକ୍ର ଘୂରି ଚାଲିଛି ।

ଏହି ଅଧ୍ୟାୟର ୮ମ ଓ ୯ମ ଶ୍ଳୋକକୁ ମଧ୍ୟ ଆଲୋଚନାର ପରିସରକୁ ଅଣାଯାଇପାରେ, ଯାହାର ତାତ୍ପର୍ଯ୍ୟ ହେଲା ଯେ- ଦିନେ ସମଗ୍ର ବ୍ରହ୍ମାଣ୍ଡ ଥିଲା କୃଷ୍ଣମୟ ମହାଶୂନ୍ୟ । ଯେଉଁଥିରେ ନଥିଲା ଜୀବ ବା ଜଡ଼ ଜଗତର ସତ୍ତା । ପୁଣି ନ ଥିଲା ଜଳ ଓ ବାୟୁ । ସେହି ନାହିଁ ଭିତରେ ଥିଲା ଏକମାତ୍ର ଶକ୍ତି ମହାକର୍ଷଣ । ଯାହାଥିଲା ଅନାସକ୍ତ, ଉଦାସୀନ ଓ କର୍ମ ବିଯୁକ୍ତ ପୁଣି ସମସ୍ତ କାରଣର କାରଣ ।

ସେହି ମହାଶକ୍ତି ନିଜଠାରୁ ଉଦ୍ଭବ ପ୍ରକୃତିକୁ ସତ୍ତା ଓ ଶକ୍ତି ଦେବାର ଅଧିଷ୍ଠାତା ଥିବାରୁ ଜଗତ ରଚନାର ସମସ୍ତ କ୍ରିୟା ପର୍ଯ୍ୟାୟ କ୍ରମେ ସମ୍ପନ୍ନ ହୋଇଯାଉଛି । ତେଣୁ ସମସ୍ତ ଭୂତମାନଙ୍କର ଭିନ୍ନ ଭିନ୍ନ ରୂପ ସହିତ ଜଗତର ସୃଷ୍ଟି ପ୍ରକୃତି ଦ୍ୱାରା ହିଁ ହୋଇଥାଏ । ପୁଣି ପ୍ରକୃତିକୁ ସଦା ଚଳଚଞ୍ଚଳ କରିଥାଏ ସେହି ମହାଶକ୍ତି । ତେଣୁ ତାହାରି ନିର୍ଦ୍ଦେଶରେ ହିଁ ପ୍ରକୃତି ସୃଷ୍ଟି କରିବା ସହ ଅବିରତ ଘୂରି ଚାଲିଥାଏ ଏହି ବିଶାଳ ସଂସାରଚକ୍ର ।

ଏହି ମହାକର୍ଷଣ ସ୍ୱରୂପୀ ମହାଶକ୍ତିକୁ ଭାରତୀୟମାନେ ଶ୍ରୀକୃଷ୍ଣ ନାମରେ ପୂଜା କରିଆସୁଛନ୍ତି । ଆର୍ଯ୍ୟାବର୍ତ୍ତର ମୁନିଋଷିମାନଙ୍କ ବ୍ୟତୀତ ଅନ୍ୟ କାହାକୁ ଏପରି ମହାସତ୍ତାର ଆଭାସ ବି ଜଣା ନଥିଲା । ସେମାନେ ଏପରି ସତ୍ତାକୁ ଜୀବନର ଲୀଳା ସହିତ ମିଶାଇ ଆପଣାର କରିପାରିଛନ୍ତି ଓ ଏହା ହିଁ କୃଷ୍ଣତତ୍ତ୍ୱର ଗୂଢ଼ ରହସ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦ୍ୱାରକା ଲୀଳାର ବର୍ଣ୍ଣନାରେ ସମାଜକୁ ଯେଉଁଭଳି ଚେତନା ଦିଆଯାଇଛି, ତାହା ଅନ୍ୟତ୍ର ବିରଳ । ଦ୍ୱାରକାରେ ତାଙ୍କର ଲୀଳା ଦେଖିବା ନିମନ୍ତେ ଥରେ ଆସିଥିଲେ ଦେବଋଷି ନାରଦ । ପ୍ରତିଟି ପରିବାରରେ ଶ୍ରୀକୃଷ୍ଣଙ୍କୁ ବିଦ୍ୟମାନ ଥିବାର ଦେଖି ସେ ବିସ୍ମିତ ହେବା ସହ ଶତ ପ୍ରଣାମ କରି କହିଥିଲେ, '' ହେ ପ୍ରଭୁ! ତୁମେ ହିଁ ମହାଶକ୍ତି ଓ ସର୍ବତ୍ର ବିଦ୍ୟମାନ ।'' ତାଙ୍କର ସେପରି ଲୀଳା ସବୁକୁ ନେଇ କବିର ଲେଖନୀ ହୋଇଥାଏ ସତତ ମୁଖରିତ । ଭାରତୀୟ ସଂସ୍କୃତି ଶ୍ରୀକୃଷ୍ଣଙ୍କ ଲୀଳା ବିନା ଅସମାପ୍ତ । ବିଜ୍ଞାନସମ୍ମତ ଏହି ମହାଶକ୍ତିକୁ ଭାରତୀୟ ମୁନିଋଷିମାନେ ନିଜର ସଂସ୍କୃତି ଓ ପରମ୍ପରା ସହିତ ଏଭଳି ମିଶାଇ ଦେଇଛନ୍ତି ଯେ ସେ ହେଉଛନ୍ତି ପ୍ରତ୍ୟେକଙ୍କର ଅତି ଆପଣାର । ଏପରି ମହାଶକ୍ତି କବି କଳ୍ପନାର ଯମୁନା କୂଳରେ ଗୋପିମାନଙ୍କ ସହିତ କେତେବେଳେ କ୍ରୀଡ଼ାରତ ତ ମହାଭାରତ ମହାସମରରେ ମହାକାଳ ରୂପେ କରିଚାଲିଛନ୍ତି ମହାବିନାଶ । ସେଥିପାଇଁ ପାଣ୍ଡବମାନଙ୍କ ଆଗରେ ଭୀମ ପୌତ୍ର ବର୍ବରୀ ଭୟରେ କହି ପକାଇଥିଲେ ଯେ, ''ଏକମାତ୍ର ସୁଦର୍ଶନ ଚକ୍ର ଦୁଇ ପକ୍ଷର ଯୋଦ୍ଧା ଓ ସୈନ୍ୟମାନଙ୍କୁ ମାରି ପକାଇଛନ୍ତି ।'' ପୁଣି କବିର କଳ୍ପନାରେ ଅପୂର୍ବ ଥିଲା ତାଙ୍କର ରୂପ । କଟିରେ ପୀତାମ୍ବର, ପାଦରେ ବନ୍ଧାଥିବା ନୂପୁରର ରୁଣୁଝୁଣୁ ନାଦ, ମୃଦୁ ମଳୟ ହିଲ୍ଲୋଳରେ ହଲି ଯାଉଥିବା ଗଭା ଖୋସିତ ବାଙ୍କ ମୟୂର ଚୂଳ, ଆଉ ହାତରେ ଧରି ବଜାଉଥିବା ମୋହନ ମୁରଲୀର ଅପୂର୍ବ ନାଦ ଯେତିକି ଆକର୍ଷଣୀୟ ମହାଭାରତ ମହାସମରର ପାର୍ଥସାରଥୀ ରୂପ ସେତିକି ଭୟଙ୍କର ।

ସେହି ମହାଶକ୍ତିଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି । ଯିଏ ବିଚାରରେ ଯେପରି ନାସ୍ତିକ ହେଲେ ମଧ୍ୟ ତାଙ୍କ ଆକର୍ଷଣ ଶକ୍ତି ସମ୍ମୁଖରେ ନତମସ୍ତକ ହେବାକୁ ପଡ଼ିବ । ତେଣୁ ହେ ମହାପ୍ରଭୁ! ତୁମେ ହିଁ ସ୍ରଷ୍ଟା ଓ ସୃଷ୍ଟି । ପୁଣି ଦୃଷ୍ଟି, ଦ୍ରଷ୍ଟା ଓ ଦୃଶ୍ୟ । ଆଉ ଭକ୍ତ କଳ୍ପନାର ସର୍ବଶକ୍ତିମାନ, ସର୍ବାଧାର, ସର୍ବଜ୍ଞ, ସର୍ବାନ୍ତର୍ଯ୍ୟାମୀ, ସର୍ବବ୍ୟାପୀ, ସର୍ବେଶ୍ୱର ତଥା ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଆଦିର ଅନନ୍ତ ମହାସାଗର ।

ଶହୀଦ ନଗର, ଭୁବନେଶ୍ୱର

# ମହାତ୍ମା ଗାନ୍ଧୀଙ୍କ ଜୀବନ ଦର୍ଶନ

**ରମାକାନ୍ତ ନାୟକ**

ବିଶ୍ୱର ଅନ୍ୟତମ ଶ୍ରେଷ୍ଠ ଜନନାୟକ ମୋହନ ଦାସ କରମଚାନ୍ଦ ଗାନ୍ଧୀ କେବଳ ଭାରତବର୍ଷର ଜାତିର ଜନକ ନଥିଲେ ସେ ଥିଲେ ଅନେକ ଚିରନ୍ତନ ଚିନ୍ତା ଚେତନାର ଜନକ ତଥା ନୂତନ ଆଦର୍ଶର ମହାନ୍ ସ୍ରଷ୍ଟା । ତାଙ୍କ ଲେଖନୀସୃତ ଅସୁମାରି ପ୍ରବନ୍ଧ, ବକ୍ତୃତା ଓ ପତ୍ରପତ୍ରିକା ମାଧ୍ୟମରେ ହୃଦୟର ଭାଷାକୁ ଅଭିବ୍ୟକ୍ତ କରି ସେ ଯେଉଁ ଜନସାହିତ୍ୟ ସୃଜନ କରିଥିଲେ ସେଥିରେ ତାଙ୍କର ଚିନ୍ତନ, କର୍ମଧାରା, ଆଦର୍ଶ ଓ ଦର୍ଶନ ବିମ୍ବିତ ହୋଇଛି, ଯାହାକୁ ନିଜ ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ବାସ୍ତବତାରେ ରୂପାୟନ କରିବାକୁ ସେ ଆପ୍ରାଣ ବ୍ରତୀ ଥିଲେ । ଜୀବନ ଓ ଜଗତ ପାଇଁ ଗାନ୍ଧିଜୀ ଅନେକ ଶାଶ୍ୱତ ସତ୍ୟର ଅବତାରଣା କରିଯାଇଛନ୍ତି । ବାପୁଜୀ ଏକଦା ପ୍ରକାଶ କରିଥିଲେ, ତାଙ୍କର ଜୀବନ ହିଁ ତାଙ୍କର ବାର୍ତ୍ତା । ମାନବ ସମାଜ ପ୍ରତି ମହାତ୍ମା ଗାନ୍ଧୀଙ୍କର ବାର୍ତ୍ତାକୁ ହୃଦୟଙ୍ଗମ କରିବାକୁ ହେଲେ ତାଙ୍କ ଜୀବନକୁ ଅଧ୍ୟୟନ କରିବା ଆବଶ୍ୟକ । ସତ୍ୟନିଷ୍ଠା ଓ ଅହିଂସାକୁ ଆଧାର କରି ପ୍ରତିଷ୍ଠିତ ସମାଜ ହିଁ ସର୍ବଶ୍ରେଷ୍ଠ ସମାଜ, ଯାହା ବିଶ୍ୱ ଇତିହାସରେ ଅଦ୍ୟାବଧି ସଂଭବପର ହୋଇପାରି ନାହିଁ । ଗାନ୍ଧୀଙ୍କର ଅବିଶ୍ରାନ୍ତ ସାଧନା ଥିଲା, ଏହି ପରିକଳ୍ପିତ ଉଚ୍ଚତର ସମାଜକୁ ପ୍ରତିଷ୍ଠା ସକାଶେ ସମଗ୍ର ମାନବଜାତିକୁ ଅନୁପ୍ରାଣିତ କରିବାକୁ । ବୁଦ୍ଧ ଓ ସକ୍ରେଟିସ୍‌ଙ୍କ ସଦୃଶ ମହାତ୍ମା ଗାନ୍ଧୀ ଜୀବନର ମୌଳିକ ମୂଲ୍ୟବୋଧ ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରୁଥିବା ତାଙ୍କ ଜୀବନଚର୍ଚ୍ଚା ଏବଂ ସ୍ୱୀୟ ସାରସ୍ୱତ ରଚନାର ସୌଷ୍ଠବରେ ପ୍ରତିଫଳିତ ସେହି ଆଦର୍ଶାଲୋକର ଉଦ୍ଭାସନକୁ ବେଶ୍



ଉପଲବ୍ଧ କରିହୁଏ । ତାଙ୍କ ରଚନାବଳୀ ସମସାମୟିକ ଭାରତର ସାମାଜିକ, ଶିକ୍ଷା, ସାଂସ୍କୃତିକ, ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ସମେତ ଜୀବନର ଅନନ୍ତ



ଯାତ୍ରାପଥରେ ପ୍ରତ୍ୟକ୍ଷ କରୁଥିବା ବହୁବିଧ ଦିଗ୍‌ବିଦିଗ୍‌କୁ ଅତ୍ୟନ୍ତ ନିବିଡ଼ ଭାବରେ ସ୍ପର୍ଶ କରିପାରେ ।

ଅତୀତରେ ପୃଥିବୀର ସମସ୍ତ ଅନିସନ୍ଧିତ୍ସୁ ପ୍ରାଜ୍ଞ, ବୈଜ୍ଞାନିକ, ଦାର୍ଶନିକ ଓ ଚିନ୍ତକମାନେ ମଣିଷ ଜାତିକୁ ମୁକ୍ତ କରିବାକୁ ଯାବତୀୟ ଉଦ୍ୟମ କରିଥିଲେ ମଧ୍ୟ ତାହା ସଫଳ ହେବା ସମ୍ଭବ ହୋଇପାରି ନାହିଁ । ମହାବୀର, ବୁଦ୍ଧ, ଗାନ୍ଧୀ, ଯୀଶୁ, ମାର୍କ୍ସ ପ୍ରମୁଖ ମହାମାନବମାନେ ମଣିଷକୁ ମୁକ୍ତି ପ୍ରଦାନ କରିବାକୁ ଯୁଗ ଯୁଗ ବ୍ୟାପୀ ସାଧନା କରିଆସିଛନ୍ତି । ସଂକୀର୍ଣ୍ଣ ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ ଓ ଭେଦଭାବର ଅନ୍ଧକାରାଚ୍ଛନ୍ନ ଆବରଣକୁ ବିଦୀର୍ଣ୍ଣ କରି ଏକ ସରଳ, ନିରୋଳା ମୁକ୍ତ ମଣିଷ ଗଢ଼ିବାକୁ ଯେଉଁ ନିରନ୍ତର ଉଦ୍ୟମ ସେମାନେ କରଥିଲେ, ତାହା ବ୍ୟର୍ଥ ହୋଇଛି । ମଣିଷ ନିଜ ଚତୁଃପାର୍ଶ୍ୱରେ ସୁ ଉଚ୍ଚ ପ୍ରାଚୀର ନିର୍ମାଣ କରି, ଅବଚେତନାର ଅବରୁଦ୍ଧ କୋଠରୀ ମଧ୍ୟରେ ମୁକ୍ତି ପାଇଁ ବ୍ୟାକୁଳ ହୁଏ । ଏହି ପ୍ରେକ୍ଷାପଟ୍ଟରେ ମହାତ୍ମା ଗାନ୍ଧୀ ତାଙ୍କ ଦର୍ଶନର ଅମୋଘ ଶକ୍ତିକୁ ପ୍ରୟୋଗ କରି କେତେ କେତେ ଅଚିନ୍ତନୀୟ ଓ ବିସ୍ମୟକର ପରିକଳ୍ପନାକୁ ସାକାର କରି ଦିଗଭ୍ରଷ୍ଟ ମାନବଜାତି ପାଇଁ ଏକ ଦୀପ୍ତିମୟ ଦିଗବାରେଣୀ ଥିଲେ । ଏହି ପ୍ରସଙ୍ଗରେ ଯଶସ୍ୱୀ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ବକ୍ତବ୍ୟ ପ୍ରଣିଧାନଯୋଗ୍ୟ ।। "Generation to come, it may be will scarcely believe that such a man as this ever in flesh and blood walked on this earth." ଗାନ୍ଧୀଜୀଙ୍କ ସମ୍ପର୍କରେ "Gandhi Who ?" ଶୀର୍ଷକ ପ୍ରଚାରପତ୍ରରେ ପୋଲାକ ଲେଖିଥିଲେ, 'ପିଢ଼ି ପରେ ପିଢ଼ି ଜାଣି ନିଶ୍ଚୟ ଆଶ୍ଚର୍ଯ୍ୟ ହେବେ ପୃଥିବୀରେ ଏପରି ଜଣେ ଲୋକର ଆବିର୍ଭାବ ସମ୍ଭବ କି?' ଗାନ୍ଧିଜୀଙ୍କର ସର୍ବକାଳୀନ ବ୍ୟକ୍ତିତ୍ୱ ଯେକୌଣସି ପରିସ୍ଥିତିକୁ ବଦଳାଇ ଦେବାରେ ସାମର୍ଥ୍ୟ ରଖିଥାଏ । ଏଥିପାଇଁ ବୋମିନ ହଫ୍ କହନ୍ତି, 'ଗାନ୍ଧୀ ଯେଉଁଆଡ଼େ ଯାଇଛନ୍ତି, ସେହିଆଡ଼େ ଜୀବନ ଓ ପରିସ୍ଥିତି ବଦଳି ଯାଇଛି ।' ବିଶ୍ୱର ବହୁ ବିଶିଷ୍ଟ ବ୍ୟକ୍ତି ଗାନ୍ଧିଜୀଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ଓ ନିର୍ମଳ ଆଚରଣ ଦ୍ୱାରା ଉଦ୍‌ବୁଦ୍ଧ ହୋଇଛନ୍ତି, କାରଣ ତାଙ୍କ ଭିତରେ ବିଶ୍ୱ ମାନବକୁ ବୁଝିବା ନିମିତ୍ତ ରହିଥିଲା ଅପରିସୀମ ଶକ୍ତି । ଦଲାଇଲାମାଙ୍କ ଭାଷାରେ, 'ମଣିଷମାନଙ୍କୁ ବୁଝିବା ପାଇଁ ଗାନ୍ଧିଜୀଙ୍କ ନିକଟରେ ଥିଲା ଅପରିମିତ ଦକ୍ଷତା ।'

ମୋହନ ଦାସରୁ ମହାତ୍ମା ଗାନ୍ଧୀରେ ପରିଣତ ହେବାର ମାର୍ଗ ଥିଲା ଯଥାର୍ଥରେ ଉତ୍ତରଣର ମାର୍ଗ । ସେଥିପାଇଁ ଗାନ୍ଧିଜୀ କହୁଥିଲେ, 'ତୁମେ ଏପରି ଭାବରେ ବଞ୍ଚ, ଯେପରି ଆସନ୍ତାକାଲି ତୁମ ଜୀବନର ଶେଷଦିନ ।' ତାଙ୍କର ପ୍ରଭାବଶାଳୀ ବାର୍ତ୍ତା ଥିଲା, 'ଯେଉଁ ପ୍ରକାର ପରିବର୍ତ୍ତନ ତୁମେ ଆଶା କରୁଛ, ପ୍ରଥମେ ସେ ପ୍ରକାର ପରିବର୍ତ୍ତନ ନିଜ ଭିତରେ ଆଣ ।' ଗୋଟିଏ ପୂର୍ଣ୍ଣାଙ୍ଗ ମଣିଷ କହିଲେ ଯାହା ବୁଝାଯାଏ ଗାନ୍ଧିଜୀ ଥିଲେ ତାହାର ଏକ ସାର୍ଥକ ପ୍ରତିଭୂ । ନଚେତ୍ ସେ କପରି ବା କହିପାରିଥାନ୍ତେ, 'ମୋ ଜୀବନ ହିଁ ମୋ ବାଣୀ' । ଥରେ ମୋହନ ଇଣ୍ଡିଆନ ଓପିନିଅନ କାର୍ଯ୍ୟ ପାଇଁ ଜୋହାନ୍ସବର୍ଗ ରେଳଷ୍ଟେସନରୁ ପ୍ରିଟୋରିଆ ଯାତ୍ରା କରିବା ଅବସରରେ ପୋଲାକ ତାଙ୍କୁ ରସ୍କିନଙ୍କର 'Unto This Last' ପୁସ୍ତକଟିକୁ ଅଧ୍ୟୟନ ପାଇଁ ଦେଇଥିଲେ । ଏହା ପଠନରେ ଯାତ୍ରାକ୍ଳାନ୍ତି ଦୂର ହେବା ସହିତ ଜ୍ଞାନର ପିପାସା ମେଣ୍ଟାଇବାରେ ସମର୍ଥ ହେବ ବୋଲି ତାଙ୍କର ଆଶା ଥିଲା । କିନ୍ତୁ ବହିଟି ଗାନ୍ଧୀଙ୍କ ପାଇଁ ଏତେ ହୃଦୟସ୍ପର୍ଶୀ ଥିଲା ଯେ, ପଢ଼ିବା ଆରମ୍ଭ କରି ଶେଷ ନ କରିବା ପର୍ଯ୍ୟନ୍ତ କ୍ଷୁଧା, ତୃଷା, ନିଦ୍ରା ସେ ଭୁଲିଗଲେ । ରସ୍କିନଙ୍କର ପ୍ରଚଣ୍ଡ ପ୍ରଭାବ ତାଙ୍କୁ ମୋହାଚ୍ଛନ୍ନ କରିଦେଲା । ଉକ୍ତ ପୁସ୍ତକଟିକୁ ଗାନ୍ଧିଜୀ ଗୁଜୁରାଟୀ ଭାଷାରେ ଅନୂଦିତ କରି ତା'ର ନାମ ରଖିଲେ 'ସର୍ବୋଦୟ' ଅର୍ଥାତ୍ 'ସମସ୍ତଙ୍କର ମଙ୍ଗଳ' । ଗାନ୍ଧୀ ଦର୍ଶନରେ ସର୍ବୋଦୟର ଗୁରୁତ୍ୱ ସର୍ବଜନବିଦିତ । ରସ୍କିନଙ୍କ ପୁସ୍ତକର ତିନୋଟି ତାତ୍ପର୍ଯ୍ୟପୂର୍ଣ୍ଣ ବାର୍ତ୍ତା ତାଙ୍କୁ ପ୍ରଗାଢ଼ ଭାବରେ ଆଲୋଡ଼ିତ କରିଥିଲା । ପ୍ରଥମତଃ, ଧନ ଯେଉଁ ଆନନ୍ଦ ପ୍ରଦାନ କରେ, ତାହା ଅହଙ୍କାରର ଆନନ୍ଦ, ପ୍ରକୃତ ଆନନ୍ଦ ନୁହେଁ । ଦ୍ୱିତୀୟତଃ, ସମସ୍ତ ପ୍ରକାର କାର୍ଯ୍ୟର ମର୍ଯ୍ୟାଦା ସମାନ ଏବଂ ତୃତୀୟତଃ, ଶ୍ରମିକ, କାରିଗର ଓ କୃଷକର ଜୀବନ ଆଦର୍ଶ ସ୍ଥାନୀୟ । ରସ୍କିନଙ୍କ ବକ୍ତବ୍ୟର ତାତ୍ପର୍ଯ୍ୟ ମୋହନଙ୍କ ମନରେ ଅତି ମର୍ମାନ୍ତିକ ରେଖାପାତ କଲା । ତାଙ୍କର ପୂର୍ବରୁ

ଥିବା ଅସ୍ୱଚ୍ଛ ଧାରଣା ଉଦୀପ୍ତ ସତ୍ୟାଲୋକରେ ଉଦ୍ଭାସିତ ହୋଇ ଉଠିଲା ।

ଯେତେବେଳେ ମୋହନଙ୍କର ଜୀବନତରୀ ବିକ୍ଷୁବ୍ଧ ସମୁଦ୍ରର ପ୍ରଖର ଘୂର୍ଣ୍ଣି ସ୍ରୋତରେ ଦିଗଭ୍ରଷ୍ଟ ଓ ଦିଶହରା, ସେତେବେଳେ ଘୋର ତମିସ୍ରା ଭେଦକରି ଦିଗନ୍ତ ଦିଗ୍‌ବଳୟରେ ନୂତନ ଆଶାର ସୂର୍ଯ୍ୟ ସଂଦର୍ଶନ କରି ଅଭିଭୂତ ହୋଇଥିଲେ । ସେ ଥିଲେ ପାଶ୍ଚାତ୍ୟ ଜଗତର ପ୍ରଥିତଯଶା ଚିନ୍ତାନାୟକ ଲିଓ ଟଲ୍‌ଷ୍ଟୟ । ତାଙ୍କ ସାହିତ୍ୟ କୃତିରୁ ବିପ୍ଳବ ଓ ନ୍ୟାୟ ପାଇଁ ଅହିଂସା ମାର୍ଗ ଯେ ପ୍ରକୃଷ୍ଟ ପନ୍ଥା ସେହି ତତ୍ତ୍ୱ ଗାନ୍ଧିଜୀଙ୍କ ମନରେ ଦୃଢ଼ ପ୍ରତ୍ୟୟ ସଞ୍ଚାର କରିଥିଲା । ଟଲ୍‌ଷ୍ଟୟଙ୍କ ରଚିତ 'The Kingdom of God is Within You' ଏବଂ "Resurrection" ପୁସ୍ତକଦ୍ୱୟ ଗାନ୍ଧିଜୀଙ୍କର ଚେତନାତନ୍ତ୍ରୀରେ ଅପୂର୍ବ ମୂର୍ଚ୍ଛନା ତୋଳିଥିଲା । ଟଲ୍‌ଷ୍ଟୟଙ୍କ ଆଦର୍ଶ ହିଁ ତାଙ୍କୁ ଅହିଂସା ମାର୍ଗର ପଥିକ ହେବା ପାଇଁ ଅସୀମ ପ୍ରେରଣା ଦେଇଥିଲା ବୋଲି ସେ ତାଙ୍କର ଆତ୍ମଜୀବନୀରେ ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି । ଗାନ୍ଧିଜୀଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ପ୍ୟାରେଲାଲ ଏକଦା 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼'ରେ ପ୍ରକାଶ କରିଥିଲେ ଯେ ଗାନ୍ଧିଜୀଙ୍କର ଜୀବନ ଜିଜ୍ଞାସାର ସମଗ୍ର ଦୃଷ୍ଟିଭଙ୍ଗୀ ମଧ୍ୟରେ ଟଲ୍‌ଷ୍ଟୟଙ୍କର ଅଖଣ୍ଡ ପ୍ରଭାବ ଦୀପ୍ୟମାନ । ଗାନ୍ଧୀଙ୍କର ବୈଜ୍ଞାନିକ, ଧାର୍ମିକ, ଅର୍ଥନୈତିକ ଓ ରାଜନୈତିକ ଚିନ୍ତନରେ ଟଲ୍‌ଷ୍ଟୟଙ୍କର ଜୀବନଦର୍ଶନର ପ୍ରତିଛବି ସ୍ପଷ୍ଟ ଭାବରେ ପ୍ରତିବିମ୍ବିତ । ଟଲ୍‌ଷ୍ଟୟଙ୍କର ସତ୍ୟନିଷ୍ଠା, ସରଳତା ଏବଂ ଅହିଂସା ପ୍ରବୃତ୍ତି ଗାନ୍ଧୀଙ୍କୁ ଅଭିଭୂତ କରିଦେଇଥିଲା । ତେଣୁ ଗାନ୍ଧିଜୀ କହୁଥିଲେ ଯେ, ଅନନ୍ତକାଳ ପର୍ଯ୍ୟନ୍ତ ଟଲ୍‌ଷ୍ଟୟଙ୍କର ନିର୍ମଳ ମାନବପ୍ରୀତି ଯୁଗଯୁଗ ବ୍ୟାପୀ ଧ୍ୱାନ୍ତ ପଥିକ ନିମିତ୍ତ ନିରବଚ୍ଛିନ୍ନ ଜ୍ୟୋତିରୂପେ ଚିର ଭାସ୍ୱର ହୋଇ ରହିଥିବ । ଊନବିଂଶ ଶତାବ୍ଦୀର ଅନ୍ୟ ଜଣେ ମହାନ୍ ଆମେରିକୀୟ ଚିନ୍ତକ ଥରୋ ଥିଲେ ମହାତ୍ମା ଗାନ୍ଧୀଙ୍କ ପାଇଁ ଅସୀମ ପ୍ରେରଣାର ଉତ୍ସ । ତାଙ୍କ ରଚିତ ପ୍ରବନ୍ଧ "Civil Disobedience" ସହିତ ତାଙ୍କର ସରଳ ଓ ଆତ୍ମନିର୍ଭରଶୀଳ ଜୀବନଶୈଳୀ ଗାନ୍ଧିଜୀଙ୍କୁ ସର୍ବାଧିକ ଆକୃଷ୍ଟ କରିଥିଲା । ଗାନ୍ଧୀଙ୍କର ବ୍ୟକ୍ତିତ୍ୱର ବିକାଶ ଦିଗରେ ଶ୍ରୀମଦ୍ ଭଗବତ୍ ଗୀତାର ଅବଦାନ ଅତୁଳନୀୟ । ମହାଭାରତୀୟ ସଂସ୍କୃତି ଓ ମାନବୀୟ ଧର୍ମର ମୂଲ୍ୟବୋଧ ଉପରେ ଗାନ୍ଧିଜୀଙ୍କର ଅଗାଧ ବିଶ୍ୱାସ ଥିଲା । ସେ ଜଣେ ସଚ୍ଚା ବୈଷ୍ଣବ ଥିଲେ ।

ବିଶ୍ୱ ଇତିହାସରେ ମାନବିକ ମହାନୁଭବତା ଓ ମୂଲ୍ୟବୋଧର ଜଣେ ଅସାଧାରଣ ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ଗାନ୍ଧିଜୀ ଚିରସ୍ମରଣୀୟ ହୋଇ ରହିବେ । ସତ୍ୟର ପ୍ରୟୋଗ ଏବଂ ଏକ ଉତ୍କୃଷ୍ଟତର ମାନବ ସମାଜ ପ୍ରତିଷ୍ଠାର ପରିକଳ୍ପନା ମଧ୍ୟରେ ସେ ଯେଉଁସବୁ ସିଦ୍ଧାନ୍ତମାନ ଅବତାରଣା କରିଥିଲେ, ସେଥିରୁ ତାଙ୍କ ଜୀବନଦର୍ଶନର ସୂଚନା ଉପଲବ୍ଧ ହୁଏ । ଏହି ପରିପ୍ରେକ୍ଷୀରେ ସ୍ୱରାଜ ସର୍ବୋଦୟ ଅହିଂସା ସତ୍ୟାଗ୍ରହ, ନ୍ୟାସୀବାଦ ଓ ମୌଳିକ ଶିକ୍ଷା ତାଙ୍କ ମୌଳିକ ଚିନ୍ତନର ସ୍ୱର୍ଣ୍ଣାକ୍ଷର ବହନ କରେ । ସର୍ବୋପରି ତାଙ୍କ ଜୀବନ ଦର୍ଶନର ପରିସ୍ଫୁଟନ ଯେଉଁ ଏକାଦଶ ମହାବ୍ରତ କୈନ୍ଦ୍ରିକ କ୍ରାନ୍ତିକାରୀ ବିଚାରକୁ ଭିତ୍ତିକରି ସଂଭୂତ ହୋଇଥିଲା, ସେଗୁଡ଼ିକ ହେଲା ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ, ଅସ୍ୱାଦ, ଅସ୍ତେୟ, ଅପରିଗ୍ରହ, ଅଭୟମ୍, ସ୍ୱଦେଶୀ, ଶରୀର ଶ୍ରମ, ସର୍ବଧର୍ମ ସମଭାବ ଏବଂ ଅସ୍ପୃଶ୍ୟତା ନିରାକରଣ ।

ଗାନ୍ଧିଜୀ ଥିଲେ ସତ୍ୟବାଦୀ ପୁରୁଷ । ତାଙ୍କର ହୃଦୟ ସତ୍ୟରେ ନିର୍ମିତ ଥିଲା । ତାଙ୍କର ଛଳନା ନ ଥିବା ବିଷୟ ତାଙ୍କର ଶତ୍ରୁ, ମିତ୍ର ଅନୁଗାମୀ, ସମାଲୋଚକ ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରୁଥିଲେ । ଏକଦା ଇଂଲଣ୍ଡ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ ଚର୍ଚ୍ଚିଲ କହିଥିଲେ ଗାନ୍ଧୀ ଛଳନା କରୁଛନ୍ତି । ଏହି ବକ୍ତବ୍ୟର ଦୃଢ଼ ପ୍ରତିବାଦ କରିଥିଲେ ଦକ୍ଷିଣ ଆଫ୍ରିକାରେ ଗାନ୍ଧୀଙ୍କର ସତ୍ୟାଗ୍ରହ ଆନ୍ଦୋଳନକୁ ନିର୍ମମ ଭାବରେ ଦମନ କରିବାକୁ କଠୋର ଶାସ୍ତି ଦେଇଥିବା ଜେନେରାଲ ସ୍ମଟସ୍ । ସ୍ମଟସ୍ କହିଥିଲେ ସେ ଗାନ୍ଧିଜୀଙ୍କୁ ଭଲ ଭାବରେ ଚିହ୍ନନ୍ତି । ମିଥ୍ୟା ବା ଛଳନା ତାଙ୍କୁ ସ୍ପର୍ଶ କରିନାହିଁ । ଜୀବନ ଓ ଜଗତ ପାଇଁ ଅନେକ ମହାନ୍ ସତ୍ୟର ଅବତାରଣା କରିଯାଇଛନ୍ତି ଗାନ୍ଧୀ । ତାଙ୍କର ବାଣୀ ଥିଲା



'ଅସତ୍ୟ ଦ୍ୱାରା କେବେହେଲେ ସତ୍ୟରେ ପହଞ୍ଚି ହୁଏ ନାହିଁ । ସତ୍ୟ ସ୍ୱଭାବ ହିଁ ସତ୍ୟ ନିକଟରେ ପହଞ୍ଚିବାରେ ସହାୟକ ହୁଏ । ଯୀଶୁଖ୍ରୀଷ୍ଟଙ୍କ ପରେ ଯଦି କେହି ବିଶ୍ୱରେ ଚିରନ୍ତନ ପ୍ରେମର ପ୍ଲାବନ ଖେଳାଇ ଦେଇଛନ୍ତି, ତେବେ ସେ ହେଉଛନ୍ତି ଗାନ୍ଧୀ । ଗାନ୍ଧିଜୀ କହୁଥିଲେ, 'ଯେଉଁଠି ପ୍ରେମ ଅଛି, ସେଇଠି ଜୀବନ ଅଛି । ପ୍ରେମ ବିହୀନ ଜୀବନ ହେଉଛି ମୃତ୍ୟୁ । ସତ୍ୟ ଓ ପ୍ରେମ ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱ ସଦୃଶ । ମୋର ଦୃଢ଼ ବିଶ୍ୱାସ ସତ୍ୟ ଓ ପ୍ରେମ ଦ୍ୱାରା ଆମେ ସମଗ୍ର ସଂସାରକୁ ଜୟ କରିପାରିବା । ତାଙ୍କ ମତରେ, ସତ୍ୟ କହିବାରେ ସତ୍ୟ ପାଳନ ସୀମାବଦ୍ଧ ନୁହେଁ । ଶଠତା, ଛଳନା ପରିହାର କରିବା ସତ୍ୟ ପାଳନ ଅନ୍ତର୍ଭୁକ୍ତ । ଏପରିକି ଦେଶର କଲ୍ୟାଣ ପାଇଁ ମିଥ୍ୟାର ଆଶ୍ରୟ ନେବା ନିଷେଧ । ସତ୍ୟ ପାଇଁ ଆବଶ୍ୟକ ହେଲେ ପିତା, ମାତା, ଗୁରୁଜନଙ୍କୁ ମଧ୍ୟ ବିରୋଧ କରାଯାଇପାରିବ । ସେହିପରି ଅନ୍ୟ ପ୍ରାଣୀମାନଙ୍କ ପ୍ରତି ହିଂସା ନ କରିବାକୁ କେବଳ ଅହିଂସା କୁହାଯାଇପାରିବ ନାହିଁ । ଗାନ୍ଧୀଙ୍କର ବାର୍ତ୍ତା ଥିଲା ଅତ୍ୟାଚାରର ବିରୋଧ କର କିନ୍ତୁ ଅତ୍ୟାଚାରୀଙ୍କୁ ଆଘାତ ଦିଅ ନାହିଁ । ଅତ୍ୟାଚାରୀଙ୍କୁ ପ୍ରେମ ଦ୍ୱାରା ଜୟ କରିବାକୁ ଚେଷ୍ଟା କର । ଭାରତୀୟ ସଂସ୍କୃତିରେ ପତଞ୍ଜଳିଙ୍କର ଉଦ୍‌ଘୋଷଣା ଥିଲା ଅହିଂସା ପରମ ଧର୍ମ । ଗାନ୍ଧୀ ପ୍ରଥମଥର କହିଲେ, 'ଅହିଂସା ଏକ ଅମୋଘ ଶକ୍ତି, ଯାହା ବଳରେ ଯେକୌଣସି ସାମାଜିକ ଓ ରାଜନୈତିକ ସମସ୍ୟାର ସମାଧାନ ହୋଇପାରିବ । ସତ୍ୟାଗ୍ରହ ଥିଲା ଗାନ୍ଧୀଙ୍କର ଏକ ରାଜନୈତିକ ଅସ୍ତ୍ର' ।

ସତ୍ୟ ଓ ଅହିଂସା ପାଳନ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ବ୍ରହ୍ମଚର୍ଯ୍ୟ । ଖାଦ୍ୟ ଗ୍ରହଣରେ ସଂଯମ ବା ଆସ୍ୱାଦ ଥିଲା ଅନ୍ୟ ଏକ ନୀତି । ଜିହ୍ୱା ଲାଳସାକୁ ଅତିକ୍ରମ କରିବା ସହିତ ଉତ୍ତେଜନା ସୃଷ୍ଟି କରୁଥିବା ଖାଦ୍ୟ ଗ୍ରହଣରୁ ନିବୃତ୍ତ ରହିବା ଆବଶ୍ୟକ । ଅସ୍ତେୟ ବା ଅଚୌର୍ଯ୍ୟର ଅର୍ଥ ଚୋରି ନ କରିବା କେବଳ ନୁହେଁ, ଅନାବଶ୍ୟକ ଦ୍ରବ୍ୟର ଅଧିକାରୀ ନ ହେବାକୁ ପ୍ରୟାସ କରିବା ଉଚିତ । ବଞ୍ଚିବା ପାଇଁ ଯେତିକି ଆବଶ୍ୟକ ପ୍ରକୃତି ତାହା ଯୋଗାଇ ଦିଏ । ବଞ୍ଚିବାର ଆବଶ୍ୟକତାକୁ ସୀମିତ ରଖି ଅଧିକାରପ୍ରବଣ ନ ହେବା ଥିଲା ତାଙ୍କର ଅନ୍ୟତମ ଆଦର୍ଶ । ଚିନାବାଦାମ, ଅଙ୍ଗୁର ଥିଲା ତାଙ୍କର ଦୈନିକ ଖାଦ୍ୟ । ଦିନକୁ ପାଞ୍ଚ ପ୍ରକାର ଖାଦ୍ୟରୁ ଅଧିକ ଗ୍ରହଣ କରିବେ ନାହିଁ ବୋଲି ଗାନ୍ଧିଜୀ ପ୍ରତିଜ୍ଞା କରିଥିଲେ । ଶ୍ରୀମଦ୍ ଭଗବଦ୍ ଗୀତାରେ ସମ୍ପତ୍ତିର ଅଧିକାରୀ ନ ହେବା ଉପରେ ଗୁରୁତ୍ୱ ଦିଆଯାଇଛି । ଗାନ୍ଧୀଜୀ ଏହାଦ୍ୱାରା ପ୍ରଭାବିତ ହୋଇଥିଲେ । ଶ୍ରୀମଦ୍ ଭଗବଦ୍ ଗୀତାରେ ବ୍ୟବହୃତ ଅପରିଗ୍ରହ ବା ଅଧିକାର ଶୂନ୍ୟତା ଓ ସମଭାବ ଶବ୍ଦ ଦୁଇଟି ତାଙ୍କ ହୃଦୟକୁ ଆଚ୍ଛନ୍ନ କରିଥିଲା ।

ଗାନ୍ଧୀ ଥିଲେ ଭୟଶୂନ୍ୟ । ଅହିଂସା ହିଁ ଅଭ୍ରାନ୍ତ ନିର୍ଭୀକତାର ପରିଚାୟକ ବୋଲି ସେ ଦୃଢ଼ ମତପୋଷଣ କରିଛନ୍ତି । ଯେପରି ସଶସ୍ତ୍ର ଯୁଦ୍ଧ ସାହସୀମାନଙ୍କ ପାଇଁ, ସେହିପରି ଅହିଂସା କେବଳ ନିର୍ଭୀକ ସାହସୀମାନେ ପାଳନ କରିପାରିବେ । 'ସ୍ୱରାଜ' ସମ୍ବନ୍ଧରେ ଗାନ୍ଧୀ ୧୯୪୨ ଜୁଲାଇ ୧୮ ତାରିଖରେ ଲେଖିଥିଲେ, 'ଗ୍ରାମ୍ୟ ସ୍ୱରାଜ ବିଷୟରେ ମୋର ଧାରଣା ପ୍ରତ୍ୟେକ ଗ୍ରାମ ଏକ ସ୍ୱୟଂ ସମ୍ପୂର୍ଣ୍ଣ ପ୍ରଜାତନ୍ତ୍ର । ଗୋଟିଏ ଗ୍ରାମ ତା'ର ସବୁ ଆବଶ୍ୟକତା ପୂରଣ କରିନପାରେ, ତଥାପି ସେହି ଦିଗକୁ ଲକ୍ଷ୍ୟ ରଖିବା ଉଚିତ । ପଡ଼ୋଶୀ ଗ୍ରାମ ସହିତ ଆଦାନପ୍ରଦାନରେ ଚଳିବା ଆବଶ୍ୟକ । ପ୍ରତ୍ୟେକ ଗ୍ରାମର ପ୍ରଥମ ଆବଶ୍ୟକତା ହେଉଛି ନିଜ ପାଇଁ ଖାଦ୍ୟ ଓ ବସ୍ତ୍ର ପାଇଁ ଆବଶ୍ୟକତା ହେଉଥିବା ତୂଳା ଚାଷ କରିବା । ଗାଈଗୋରୁଙ୍କ ଯତ୍ନ ନେବା, ପିଲା ଓ ବଡ଼ମାନଙ୍କ ପାଇଁ ଖେଳ ପଡ଼ିଆ, ପିଇବା ପାଣି, ସ୍କୁଲ ଓ ଗୋଟିଏ ଥିଏଟର ରଖିବା ବିଷୟରେ ଗ୍ରାମବାସୀମାନେ ଯତ୍ନଶୀଳ ହେବେ ।' ଶ୍ରମିକ, କାରିଗର ଓ କୃଷକ ହେଉଛନ୍ତି ଆଦର୍ଶ ସ୍ଥାନୀୟ । ରସ୍କିନଙ୍କର ଏହି ଉକ୍ତି ଗାନ୍ଧୀଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ତେଣୁ ଗାନ୍ଧିଜୀ ଡରବାନ୍‌ଠାରୁ ଚଉଦ ମାଇଲ ଦୂରରେ ଫିନିକ୍ସ ସହର ନିକଟରେ ଚାଷକାର୍ଯ୍ୟ ପାଇଁ ଶହେ ଏକର ଜମି କ୍ରୟ କରିଥିଲେ । ଜୋହାନ୍ସବର୍ଗରେ ଗାନ୍ଧୀଙ୍କ ପରିବାରରେ ସାମିଲ ହୋଇଥିଲେ ବିଭିନ୍ନ ଦେଶ ଓ ଧର୍ମର ଜନତା । ସେଠାରେ ଖାଦ୍ୟ ପାଇଁ ପ୍ରତ୍ୟେକଙ୍କୁ ଶ୍ରମଦାନ କରିବା ବାଧ୍ୟତାମୂଳକ ଥିଲା । ନିଜେ ଗାନ୍ଧୀ ତାଙ୍କ ପତ୍ନୀ ଓ ସନ୍ତାନଗଣ ମିଳିମିଶି

ଏକ ବିରାଟ ଲୁହାଚକିରେ ଗହମ ପେଷୁଥିଲେ । ଗାନ୍ଧିଜୀଙ୍କର ଉକ୍ତି ଥିଲା 'ଆମ୍ଭେମାନେ ହିନ୍ଦୁ ମୁସଲମାନ ଏକତା ପ୍ରତିଷ୍ଠିତ କରି ନ ପାରିଲେ ଓ ଅସ୍ପୃଶ୍ୟତା ରୂପକ ସର୍ପକୁ ନ ମାରିବା ପର୍ଯ୍ୟନ୍ତ କିଛି କରିପାରିବା ନାହିଁ ।' ଗାନ୍ଧୀ ନଅ ମାସ କାଳ ଭାରତ ଭ୍ରମଣ କାଳରେ ହରିଜନମାନଙ୍କୁ ନିଆଁ ପାଣି ବାଛନ୍ଦ ହୋଇଥିବା ଦେଖି ମର୍ମାହତ ହୋଇଥିଲେ । କେତେକ ସ୍ଥାନରେ ତାଙ୍କ ପରାମର୍ଶ ଗ୍ରହଣ କରି ଲୋକେ ହରିଜନମାନଙ୍କ ପାଇଁ ମନ୍ଦିର ଦ୍ୱାର ଖୋଲି ଦେଇଥିଲେ । ଲୋକେ ହରିଜନ ପାଣ୍ଠିକୁ ଅର୍ଥଦାନ କରୁଥିବା ବେଳେ ଗାନ୍ଧିଜୀ କହୁଥିଲେ, 'କେବଳ ଟଙ୍କା ଦେଲେ ଚଳିବ ନାହିଁ । ହରିଜନଙ୍କ ପାଇଁ ହୃଦୟ ଦିଅ । ଆମରଣ ଅନଶନ କରି ଉଚ୍ଚ ଜାତିର ଲୋକମାନଙ୍କର ହୃଦୟକୁ ପରିବର୍ତ୍ତନ କରିବା ପାଇଁ ସେ ପ୍ରୟାସ କରୁଥିଲେ । ସେ କହୁଥିଲେ, 'ହିନ୍ଦୁଧର୍ମ ଉପରେ ଯେଉଁ ଓଜନ ଲଦା ହୋଇଛି, ଏ ଅନଶନ ତାହା ଦୂର କରିବ ।'

ଗାନ୍ଧୀଙ୍କର ବିନମ୍ରତାରେ ସାମାନ୍ୟତମ ଛଳନା କିମ୍ବା କୃତ୍ରିମତା ନଥିଲା । ତାଙ୍କର ସମଗ୍ର ଜୀବନ ଥିଲା ଏକ ପରୀକ୍ଷା ଓ ଏହି ପରୀକ୍ଷାର ଫଳାଫଳକୁ ଅକିଞ୍ଚିତକର ଭାବରେ ମଧ୍ୟ ଗୋପନ ରଖୁନଥିଲେ । ତାଙ୍କ ଆଶ୍ରମ ଥିଲା ସଦା ଉନ୍ମୁକ୍ତ । ଜୀବନ ଥିଲା ଏକ ଖୋଲା ବହି । ଥରେ ରେଳ ଯୋଗେ ବାପୁ ବିହାରରୁ କଲିକତା ଆସୁଥାଆନ୍ତି । ବାଟରେ ପ୍ରବଳ ବର୍ଷା ହେଲା । ବାପୁ ବସିଥିବା ଡବାରେ ଛାତରୁ ପାଣି ଗଳୁଥାଏ । ଗାର୍ଡ଼ ଆସି ବାପୁଜୀଙ୍କୁ ଅନ୍ୟ ଏକ ଡବାକୁ ଯିବାପାଇଁ ଅନୁରୋଧ କଲେ । ବାପୁ ପଚାରିଲେ ଏ ଡବାରେ ଅନ୍ୟ ଲୋକ ବସିବେ । ଯଦି ବସିବେ ତେବେ ସେ କାହିଁକି ବସି ନପାରିବେ । ଗାର୍ଡ଼ ବିଚରା ମୁଣ୍ଡ ଆଉଁସିଲେ । ବାପୁ ତାଙ୍କୁ ବୁଝାଇ ଦେଲେ ଅନ୍ୟମାନଙ୍କୁ ଅସୁବିଧାରେ ପକାଇ ସେ କିପରି ସୁବିଧାରେ ରହିବେ ? ଗାର୍ଡ଼ ପଚାରିଲେ, 'ଆପଣଙ୍କର ମୁଁ କି ସେବା କରିପାରେ କି ? 'ବାପୁ ମାଗିଲେ' ଗରିବ ଯାତ୍ରୀଙ୍କୁ ହରକତ କରିବ ନାହିଁ, ଆଉ ଲାଞ୍ଚ ନେବନାହିଁ । ସେ ଏତିକି କଲେ ବାପୁ ତାଙ୍କର ପୂର୍ଣ୍ଣ ସେବା ପାଇଯିବେ ।' ଅଧିକାଂଶଙ୍କ ମତରେ ଗାନ୍ଧିଜୀ ଥିଲେ ନିଃସନ୍ଦେହରେ ଜଣେ କର୍ମଯୋଗୀ । କର୍ମ ଓ ଚିନ୍ତା ଦୁଇ ସ୍ୱତନ୍ତ୍ର ପ୍ରକୋଷ୍ଠରେ ନଥାନ୍ତି ବୋଲି ତାଙ୍କର ମତ ଥିଲା ।

ଗୋପାଳକୃଷ୍ଣ ଗୋଖେଲଙ୍କ ପରାମର୍ଶକ୍ରମେ ଭାରତକୁ ବୁଝିବା ପାଇଁ ୧୯୧୫ ମସିହାରେ ଗାନ୍ଧିଜୀ ଭାରତ ଭ୍ରମଣ କରିଥିଲେ । ୧୯୨୫ରେ ଦ୍ୱିତୀୟ ଥର ପାଇଁ ସେ ଅଧିକାଂଶ ପ୍ରଦେଶ ଓ ଦେଶୀୟ ରାଜ୍ୟ ଗସ୍ତ କରିଥିଲେ । ସେତେବେଳକୁ ଗାନ୍ଧୀ ପ୍ରସିଦ୍ଧ ହୋଇସାରିଥିଲେ । ତାଙ୍କୁ ଦର୍ଶନ କରିବାକୁ ପୁରପଲ୍ଲୀରୁ ସହସ୍ର ସହସ୍ର ସଂଖ୍ୟାରେ ଜନତାଙ୍କର ସ୍ରୋତ ଛୁଟୁଥିଲା । ବାପୁଙ୍କ ସ୍ୱର ଧୀର । ଲୋକାରଣ୍ୟ ମଧ୍ୟରେ ଗୋଟିଏ ସ୍ଥାନରେ ଦଣ୍ଡାୟମାନ ନ ହୋଇ ବିଭିନ୍ନ କୋଣରେ ଛିଡ଼ା ହୋଇ କହନ୍ତି । ଯେତେବେଳେ ଯେ ଥକି ପଡ଼ନ୍ତି, ସେତେବେଳ ଆଙ୍ଗୁଠି ଠାରରେ ତାଙ୍କର ବକ୍ତବ୍ୟ ପ୍ରଦାନ କରନ୍ତି । ବାପୁ ଯେତେବେଳେ ତାଙ୍କ ଆଙ୍ଗୁଠି ଦେଖାନ୍ତି ଲୋକେ ସବୁ ବୁଝିଯାଆନ୍ତି । ସମବେତ ଜନତା ପରସ୍ପର ଭିତରେ କୁହାକୁହି ହୁଅନ୍ତି, ଏଇ ଦେଖ ବାପୁ ବୁଢ଼ା ଆଙ୍ଗୁଳି ଧରିଲେଣି, ତା' ମାନେ କାହାକୁ ଅଛୁଆଁ ମନେ କରନା । ସମସ୍ତେ ମିଳିମିଶି ଚଳ । ତା'ପରେ ବାପୁଜୀ ବିଶି ଆଙ୍ଗୁଠି ଧରନ୍ତି । ଲୋକେ ବୁଝନ୍ତି ସୂତାକାଟ । ସେହିପରି ମଝି ଆଙ୍ଗୁଠି ମଦ, ଅଫିମ ନିବାରଣ, ଅନାମିକା ଆଙ୍ଗୁଠି ହିନ୍ଦୁ ମୁସଲମାନ ସହାବସ୍ଥାନ ଓ କାଣି ଆଙ୍ଗୁଠି କହେ ପୁରୁଷ ସହିତ ନାରୀର ସମାନ ଅଧିକାର ଅଛି । ନାରୀ ସ୍ୱାଧୀନତା ସମ୍ପର୍କରେ ଗାନ୍ଧୀଙ୍କର ମତ ସୁସ୍ପଷ୍ଟ । ସେ କହୁଥିଲେ, "If I would reborn, I would like to take birth either as a girl or a Harijan" ଶ୍ରୀମତୀ ରମାଦେବୀଙ୍କ ସମେତ ଆଠଜଣ ମହିଳା ଯେତେବେଳେ ହରିଜନମାନଙ୍କ ପାଇଁ କଟକରେ କାର୍ଯ୍ୟକ୍ରମ ଆରମ୍ଭ କଲେ, ସେମାନଙ୍କୁ ସାଧୁବାଦ ଜଣାଇ ଗାନ୍ଧିଜୀ କହିଥିଲେ, 'ନାରୀମାନେ ଆଧ୍ୟାତ୍ମିକ ଚିନ୍ତାଧାରାରେ ଅନୁପ୍ରାଣିତ ଏବଂ ସେମାନଙ୍କର ହୃଦୟ ନିର୍ମଳ । ସେମାନେ ହିଁ ସମାଜରୁ ଅନ୍ଧବିଶ୍ୱାସ ଓ ଭେଦଭାବ ଦୂର କରିପାରିବେ ।

ମଣିଷର ହିଂସା ପ୍ରବୃତ୍ତି ସମ୍ପର୍କରେ ମତ ଦେଇ ଗାନ୍ଧିଜୀ କହୁଥିଲେ, ତ୍ରୁଟିପୂର୍ଣ୍ଣ ଆର୍ଥିକ ବ୍ୟବସ୍ଥା ମଣିଷକୁ ହିଂସା ବା ଅହିଂସା ଆଚରଣ କରିବାକୁ ପ୍ରରୋଚିତ





କରିଥାଏ । ମଣିଷର ନୈତିକ ସଂସ୍କାର ସହିତ ଆର୍ଥନୀତିକ ସଂସ୍କାର ଅପରିହାର୍ଯ୍ୟ । ତେଣୁ ଗାନ୍ଧୀ ଗ୍ରାମ୍ୟ ହସ୍ତଶିଳ୍ପର ବିକାଶ ଉପରେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ । ହସ୍ତଶିଳ୍ପର ଉନ୍ନତି ହେଲେ ସାଧାରଣ ଜନତାଙ୍କୁ ନିଯୁକ୍ତି ମିଳିବ ଓ ସ୍ୱାବଲମ୍ବୀ ହୋଇପାରିବେ । 'ଗାଁକୁ ଫେରିଚାଲ' ଥିଲା ଗାନ୍ଧିଜୀଙ୍କର ଆହ୍ୱାନ । ଖଦି ଓ ଅରଟର ଅର୍ଥ ତାଙ୍କ ମତରେ ସ୍ୱାବଲମ୍ବନଶୀଳତା ଓ ନୂତନ ସମାଜ ଗଠନର ମୂଳଭିତ୍ତି । ଗାନ୍ଧିଜୀଙ୍କ ସାମାଜିକ ଦର୍ଶନ ପରିପ୍ରେକ୍ଷୀରେ ଅନ୍ୟ ଏକ ମୌଳିକ ଭାବନା ଥିଲା 'ନ୍ୟାସ ବ୍ୟବସ୍ଥା' । ଏହା ତାଙ୍କର ଏକ ଅର୍ଥନୈତିକ ଅବଧାରଣା । ତାଙ୍କ ପରିକଳ୍ପିତ ସମାଜର ପ୍ରଧାନ ଆଧାର ଥିଲା ସମତା । ଏହି ସମତା ଭିତ୍ତିରେ ପ୍ରତିଷ୍ଠିତ ସର୍ବୋଦୟ ସମାଜର ସବୁ ସ୍ତରରେ ସହଭାଗିତା ରହିବ ଓ ସମସ୍ତେ ସମାନ ସୁବିଧା ସୁଯୋଗ ଏବଂ ଅଧିକାର ଉପଭୋଗ କରିବେ । ଗାନ୍ଧିଜୀଙ୍କ ଜୀବନଦର୍ଶନର ବାସ୍ତବ ପ୍ରତିଫଳନ ଓ ମୂଲ୍ୟବୋଧ ଆଧାରିତ ସମାଜ ନିର୍ମାଣ ପାଇଁ ପ୍ରଚଳିତ ଶିକ୍ଷା ପରିବର୍ତ୍ତେ ମୌଳିକ ଶିକ୍ଷା ବା 'ନୟି ତାଲିମ' ନାମରେ ସେ ଏକ ବିକଳ୍ପ ଶିକ୍ଷାନୀତିର ଖସଡ଼ା ପ୍ରସ୍ତୁତ କରିଥିଲେ । ଶିକ୍ଷା ସୂଚନାଭିତ୍ତିକ, ଚାକିରି ସର୍ବସ୍ୱ ଓ ବିଦେଶୀ ସଂସ୍କୃତି ଅନୁସୃତ ହେବା ପରିବର୍ତ୍ତେ, ଶରୀର, ହୃଦୟ ଓ ମସ୍ତିଷ୍କର ବିକାଶ ସହିତ ବ୍ୟକ୍ତିର ସାମର୍ଥ୍ୟ, ସୃଜନଶୀଳତାର ଉନ୍ମେଷ, ସ୍ୱାବଲମ୍ବନଶୀଳତା, ଶୃଙ୍ଖଳାବୋଧ, ମାନବିକ ଜୀବନଶୈଳୀ, ଶ୍ରମର ମର୍ଯ୍ୟାଦା, ଅହିଂସା, ସାମ୍ୟତା ଓ ମୈତ୍ରୀର ପରିସ୍ଫୁଟନ ପାଇଁ ଉଦ୍ଦିଷ୍ଟ ହେବା ଉଚିତ ।

ଗାନ୍ଧୀଙ୍କୁ ଆକଳନ କରି ଜର୍ଜ ବର୍ଣ୍ଣାର୍ଡ କହନ୍ତି, "Impression of Gandhi ? You might well ask for someone's impression of the Himalays".

ବିଶ୍ୱର ବିଶିଷ୍ଟ ଗାନ୍ଧିବାଦୀ ହୋରେସ ଆଲେକ୍‌ଜାଣ୍ଡାର ବାସ୍ତବରେ ଗାନ୍ଧୀଙ୍କ ସମ୍ପର୍କରେ ଚମତ୍କାର କଥା କହିଛନ୍ତି, 'ଦିନ ଯେତିକ ଗତ ହୋଇଚାଲିଛି, ତାଙ୍କର ଜୀବନ ଓ ଆଦର୍ଶବାଦ ସେତେ ଅଧିକ ବାସ୍ତବ ଜଣାଯାଉଛି । ଯଦି ତାଙ୍କୁ ଆମେ ଏହି ବାସ୍ତବ ରୂପରେ ଦେଖିବାକୁ ଚାହୁଁ, ତେବେ ଆମକୁ କେତେକ ଆଘାତ ସହିବା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।' ବାସ୍ତବରେ ପିଢ଼ି ପରେ ପିଢ଼ି ପାଇଁ ଗାନ୍ଧିଜୀଙ୍କ ଜୀବନଦର୍ଶନ ଅଧିକ ତେଜୋଦୀପ୍ତ ଓ ଉପାଦେୟ ହୋଇ ପ୍ରତିଭାତ ହୋଇ ଉଠିଛି, ସେଥିପାଇଁ ସେ ସର୍ବକାଳୀକ ମହାଜନନାୟକ ।

ପ୍ରାକ୍ତନ ଅଧକ୍ଷ
ଆନନ୍ଦପୁର ମହାବିଦ୍ୟାଳୟ
ସ୍ଥାନ-ସିନେମା ହଲ୍ ଛକ, ପୋ-ଫକୀରପୁର
ଜିଲ୍ଲା-କେନ୍ଦୁଝର, ପିନ୍-୭୫୮୦୨୨





# ବାଥୁଡ଼ି ମୌଖିକ ସାହିତ୍ୟରେ ସାମାଜିକ ଓ ସାଂସ୍କୃତିକ ଚେତନା

ଡକ୍ଟର ରଞ୍ଜନ ପ୍ରଧାନ

ଓଡ଼ିଶାରେ ବସବାସ କରୁଥିବା ୬୨ ପ୍ରକାର ଜନଜାତି ଗୋଷ୍ଠୀମାନଙ୍କ ମଧ୍ୟରୁ 'ବାଥୁଡ଼ି' ହେଉଛନ୍ତି ଅନ୍ୟତମ । ପ୍ରାଚୀନ କାଳରୁ ବାଥୁଡ଼ି ଜନଜାତି ଗୋଷ୍ଠୀ ଶିମିଳିପାଳ ଜଙ୍ଗଲ ମଧ୍ୟରେ ବସବାସ କରୁଥିଲେ । ମାତ୍ର ପ୍ରତିକୂଳ ପରିବେଶ ଓ ପରିସ୍ଥିତିର ଚାପରେ ଏମାନେ ଶିମିଳିପାଳ ପାର୍ବତ୍ୟାଞ୍ଚଳ ଛାଡ଼ି ସମତଳ ଅଞ୍ଚଳକୁ ଆସି ବସତି ସ୍ଥାପନ କରିଛନ୍ତି ।

ଶିମିଳିପାଳ ପାହାଡ଼ ହେଉଛି ବାଥୁଡ଼ିମାନଙ୍କର ଆଦିଭୂମି । ଏଠାରେ ଥିବା ଅଠର ଦେଉଳ ସେମାନଙ୍କର ଧାର୍ମିକ ଓ ସାଂସ୍କୃତିକ ପ୍ରାଣକେନ୍ଦ୍ର । ଶିମିଳିପାଳରୁ ବାହାରିଥିବା ବୁଢ଼ାବଳଙ୍ଗ, ଖଇରୀ, ଭଣ୍ଡନୀ, ଶାଳନ୍ଦୀ, ଦେଓ, କାଳ, କଣ୍ଡାଳ, ସୋନ, ପଳପଳା, ଗଙ୍ଗାହାର ନଦୀ ସମେତ ବୈତରଣୀ ନଦୀ କୂଳରେ ଏମାନେ ବସବାସ କରିଥାନ୍ତି । ଏମାନେ ଆମ ରାଜ୍ୟର ମୟୂରଭଞ୍ଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାରେ ଦେଖିବାକୁ ମିଳନ୍ତି । ମୟୂରଭଞ୍ଜ ଜିଲ୍ଲାର କରଞ୍ଜିଆ (ପଞ୍ଚପିଢ଼) ସବ୍ ଡିଭିଜନର କରଞ୍ଜିଆ, ଠାକୁରମୁଣ୍ଡା, ରରୁଆଁ, ଶୁକ୍ରୁଳି, ଯଶୀପୁର ବ୍ଲକ୍, କପ୍ତିପଦା ସବ୍ ଡିଭିଜନର କପ୍ତିପଦା, ଉଦଳା, ଖୁଣ୍ଟା, ଗୋପବନ୍ଧୁନଗର ଓ ବାରିପଦା ସବ୍ ଡିଭିଜନର ବାରିପଦା, ଶ୍ୟାମାଖୁଣ୍ଟା, ବଡ଼ସାହି, କୁଳିଅଣା, ଶୁଳିଆପଦା ବ୍ଲକ୍ ଏବଂ କେନ୍ଦୁଝର ଜିଲ୍ଲାର ଚମ୍ପୁଆ ସବ୍ ଡିଭିଜନର ଚମ୍ପୁଆ, ଝୁମ୍ପୁରା ବ୍ଲକ୍ ଏବଂ କେନ୍ଦୁଝର ସଦର ସବ୍ ଡିଭିଜନର କେନ୍ଦୁଝର, ଘଟଗାଁ, ସାହାରପଡ଼ା ଓ ସ୍ୱାମ୍ପାଟଣା ବ୍ଲକ୍ ଏବଂ ବାଲେଶ୍ୱର ଜିଲ୍ଲାର ନୀଳଗିରି ସବ୍ ଡିଭିଜନର ନୀଳଗିରି ବ୍ଲକ୍‌ରେ ଏମାନେ ବାସ କରନ୍ତି । ଏହାବ୍ୟତୀତ ପଡ଼ୋଶୀ ରାଜ୍ୟ ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗରେ ମଧ୍ୟ ବାଥୁଡ଼ିମାନେ ଦେଖିବାକୁ ମିଳନ୍ତି ।

୧୯୮୧ ମସିହା ଜନଗଣନା ରିପୋର୍ଟ ଅନୁସାରେ, ରାଜ୍ୟରେ ବାଥୁଡ଼ିମାନଙ୍କ ସଂଖ୍ୟା ୧,୪୭,୯୬୭ ଥିଲାବେଳେ ୧୯୯୧ ମସିହାରେ ଏମାନଙ୍କ ସଂଖ୍ୟା ୧,୭୧,୦୭୪, ୨୦୦୧ ମସିହାରେ ୧,୯୬,୮୪୬ ଏବଂ ୨୦୧୧ ମସିହା ଜନଗଣନା ରିପୋର୍ଟ ଅନୁସାରେ ଓଡ଼ିଶାରେ ଏମାନଙ୍କ ସଂଖ୍ୟା ୨,୧୭,୩୯୫ ବୋଲି ଜଣାପଡ଼ିଛି ।

ଓଡ଼ିଶାର ମୟୂରଭଞ୍ଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାରେ ପାଖାପାଖି ୭୦୦ ବାଥୁଡ଼ି ଗାଁ ରହିଛି । ରାଜ୍ୟରେ ମୟୂରଭଞ୍ଜ ଜିଲ୍ଲାରେ ବାଥୁଡ଼ିମାନଙ୍କ ସଂଖ୍ୟା ସର୍ବାଧିକ । ବାଥୁଡ଼ିମାନେ ଭାରତୀୟ ଆର୍ଯ୍ୟ (ଇଣ୍ଡୋ-ଆର୍ଯ୍ୟ) ଭାଷାଗୋଷ୍ଠୀ (ଓଡ଼ିଆ) ଅନ୍ତର୍ଭୁକ୍ତ । ଏମାନେ ଯେଉଁ ଭାଷା ବ୍ୟବହାର କରନ୍ତି, ତାହାର ପାଖାପାଖି ଓଡ଼ିଆ ଏବଂ ମୟୂରଭଞ୍ଜ ଓ କେନ୍ଦୁଝରର ଦେଶୀୟ ଭାଷା ସହ ସାଦୃଶ୍ୟ ଥାଏ ।

ବାଥୁଡ଼ି ଜନଜାତି ସଙ୍ଗୀତ, କାହାଣୀ ଓ ଗୀତ ମୁଖ୍ୟତଃ ମୌଖିକ ପ୍ରକ୍ରିୟା ଦ୍ୱାରା ସଞ୍ଚରଣଶୀଳ । ଏହା ପିଢ଼ି ପରେ ପିଢ଼ି, ଯୁଗଯୁଗର କ୍ରମ ବିବର୍ତ୍ତିତ ଅଭିବ୍ୟକ୍ତି । ଏହା କୌଣସି ନିର୍ଦ୍ଦିଷ୍ଟ କାଳଖଣ୍ଡର କୃତି ନୁହେଁ । ଏସବୁ ଲୋକସାହିତ୍ୟର ଉପାଦାନ ବାଥୁଡ଼ିମାନଙ୍କର ସାମାଜିକ ଓ ସାଂସ୍କୃତିକ ଚେତନାକୁ ଋଦ୍ଧିମନ୍ତ କରିଥାନ୍ତି ।



ବାଥୁଡ଼ିମାନଙ୍କ ସାମାଜିକତା ଓ ସାଂସ୍କୃତିକତା ବୋଧ, ବିଧିବିଧାନ, ଧର୍ମବିଶ୍ୱାସ ସ୍ୱତନ୍ତ୍ର । ଏମାନଙ୍କ ସାମାଜିକ କର୍ମକର୍ମାଣି, ପାରିବାରିକ ଜୀବନଯାତ୍ରା, ବିବାହ ଉତ୍ସବ, ଧାର୍ମିକ କର୍ମକ୍ରିୟା, ପର୍ବପର୍ବାଣି, ରୀତିନୀତି ବେଶ୍ ଶୃଙ୍ଖଳିତ ।

ବାଥୁଡ଼ି ମୌଖିକ ସାହିତ୍ୟ କହିଲେ ସେମାନଙ୍କର ଲୋକଗୀତ, ଲୋକକାହାଣୀ, ଲୋକଗାଥା/ଲୋକକାବ୍ୟ, ଲୋକୋକ୍ତି, ପ୍ରବାଦ, ପ୍ରବଚନ, ପହଳି (ପ୍ରହେଳିକା), ଲୋକ ଆଖ୍ୟାନ, କିମ୍ବଦନ୍ତୀ, ଲୋକନାଟ୍ୟ, ଲୋକାଚାର, ରୂଢ଼ି, ଢଗଢମାଳି, ପୌରାଣିକ ଆଖ୍ୟାନ, ଧର୍ମାଚାର ଗାଥା, ବିଧି ନିଷେଧ ଓ ଧାରଣା ଆଦିର ସମାହାରକୁ ବୁଝାଯାଏ । ଲୋକସାହିତ୍ୟର ଏସବୁ ଉପାଦାନ ମୁଖ୍ୟତଃ ମୌଖିକ ପରମ୍ପରା ମାଧ୍ୟମରେ ପିଢିରୁ ପିଢ଼ିକୁ ସଞ୍ଚରିତ ହୋଇଥାଏ ।

ବାଥୁଡ଼ି ମୌଖିକ ସାହିତ୍ୟର ପ୍ରମୁଖ ବିଭବ ହେଉଛି ଲୋକଗୀତ । ବାଥୁଡ଼ି ଲୋକଗୀତର ପୁଣି ନାନାବିଧ ବିଭାଗ ରହିଛି । ଚାଙ୍ଗୁଗୀତ, ଦୋଳିଗୀତ, ଡାଳଭଙ୍ଗା ଗୀତ, ବାଦିଗୀତ, ବାରମାସୀ ଗୀତ, ଧାନବୁଣା ଗୀତ (କୃଷି ଗୀତ), ବିଲବଛା ଗୀତ, ଶିଶୁ ଗୀତ, ହେଣ୍ଡାଗୀତ, ନାବକେଳି ଗୀତ, ବିବାହ ଗୀତ, ଜନ୍ମ ଓ ମୃତ୍ୟୁକାଳୀନ ଗୀତ ଆଦି ବାଥୁଡ଼ି ଲୋକଗୀତର ଗୋଟିଏ ଗୋଟିଏ କ୍ଷେତ୍ର ।

ଜନଜାତି ଭାଷାଗୁଡ଼ିକ ସାଧାରଣତଃ କଥିତ ଭାଷା । ଏକଦା ଭାଷା ଓ ଭାବକୁ ପ୍ରକାଶ କରିବାକୁ ଆଦିବାସୀଙ୍କର କୌଣସି ଲିପି ନଥିଲା । ଆଦିବାସୀଙ୍କର ଲିଖିତ ସାହିତ୍ୟ ନଥିଲା । ସେମାନଙ୍କ ସାହିତ୍ୟ କେବଳ ମୌଖିକ ଆଧାରରେ ପ୍ରଚଳିତ ଥିଲା । ଏଣୁ ଆଦିବାସୀ ସମାଜରେ ମୌଖିକ ସାହିତ୍ୟ ପରମ୍ପରା ଖୁବ୍ ପ୍ରାଚୀନ ।

ପରମ୍ପରାକ୍ରମେ ଯୁଗ ଯୁଗ ଧରି ଗୋଟିଏ ପିଢ଼ିରୁ ପରବର୍ତ୍ତୀ ପିଢ଼ିକୁ ମୁଖରୁ ମୁଖକୁ ଗଢ଼ି ଆସିଥିବା ସାହିତ୍ୟକୁ ମୌଖିକ ସାହିତ୍ୟ କୁହାଯାଏ । ଏହାର ଆଦି ଉତ୍ସ ହେଉଛି ଆଦିବାସୀଙ୍କ ଜୀବନ ଓ ତା'ର ପରିବେଶ । ଏହାର ସ୍ରଷ୍ଟା କିଏ, ତାହା କହିବା କଷ୍ଟକର । କେଉଁ ଅଜଣା ଇତିହାସର ପ୍ରାକ୍ କାଳରେ କିଏ ଗୀତ ପଦିଏ ବୋଲିଦିଏ- ପିଲାଟିଏ ଜନ୍ମ ହେଲାବେଳେ କି ତା'ର ନାଁଟିଏ ଗାଁର ବୁଢ଼ୀମାନେ ଦେଲାବେଳେ, ପ୍ରେମ କି ବିବାହ, କି ମୃତ୍ୟୁ ବେଳକୁ, କି କୃଷି କର୍ମର ବିଭିନ୍ନ ପର୍ଯ୍ୟାୟରେ ଆଉ ତାହା ସେମିତି ଯୁଗ ପରେ ଯୁଗ ଗଢ଼ି ଆସିଲା । କିଛି ପରିବର୍ତ୍ତନ ଏଠିସେଠି ହେଲା ସିନା, ମୂଳତଃ ତାହା ଅପରିବର୍ତ୍ତିତ ରହିଲା । ତେଣୁ ଏହାର ସ୍ରଷ୍ଟା ସମାଜ, ସମୂହ ସମ୍ପ୍ରଦାୟ । ନିଜେ କୌଣସି ବିଶିଷ୍ଟ ଗୋଷ୍ଠୀର ସ୍ରଷ୍ଟା ବୋଲି କୌଣସି ଆଦିବାସୀ ସମ୍ପ୍ରଦାୟରେ କେହି କେବେ ନାଁ କମାଇ ନାହିଁ କି ଯଶ ଖୋଜିନାହିଁ ।

ଆଜିର ଦିନରେ କେତେକ ଆଦିବାସୀ ଭାଷାର ସ୍ୱତନ୍ତ୍ର ଲିପି ବିକଶିତ ହୋଇଛି । ସାନ୍ତାଳୀ ଭାଷା ପାଇଁ 'ଅଲିଚିକି' ଲିପି, ସଉରା ଭାଷା ପାଇଁ 'ସଉରା ଲିପି', କୁଇ ଭାଷା ପାଇଁ 'କୁଇ ଲିପି', ହୋ ଭାଷା ପାଇଁ 'ଓରାଂଚିତି' ଲିପି, ମୁଣ୍ଡାରୀ ଭାଷା ପାଇଁ 'ମୁଣ୍ଡାରୀ ବାନି'ର ପ୍ରକାଶ ପାଇବା ଦ୍ୱାରା ସେସବୁ ଭାଷା ଓ ସାହିତ୍ୟର ଲିଖିତ ପରମ୍ପରାର ବିକାଶ ଘଟିଛି । ମାତ୍ର, ବାଥୁଡ଼ି ଜନଜାତିର ସେଭଳି ଲିପି ନ ଥିବାରୁ, ଏହାର ମୌଖିକ ପରମ୍ପରା ପୂର୍ବଭଳି ପ୍ରଚଳିତ ହୋଇ ଆସୁଛି । ବିଶେଷକରି ବାଥୁଡ଼ିମାନଙ୍କର ଭାଷା ଓଡ଼ିଆ ଭାଷା (ଆର୍ଯ୍ୟ ଗୋଷ୍ଠୀ)ର ନିକଟତର ହୋଇଥିବାରୁ ଏମାନଙ୍କର ଭାଷାରେ ଓଡ଼ିଆ ଭାଷାର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ମୌଖିକ ପରମ୍ପରା କହିଲେ ମୌଖିକ ସାହିତ୍ୟକୁ ବୁଝାଏ ନାହିଁ । ପରମ୍ପରା ଏକ ବ୍ୟାପକ ଶବ୍ଦ । ଜୀବନଚର୍ଯ୍ୟାର ସାମଗ୍ରିକତାକୁ ଏହା ବୁଝାଏ । ପରମ୍ପରାର ପୃଷ୍ଠଭୂମି ତେଣୁ ଜୀବନ । ପ୍ରତି ସମାଜର ନିଜସ୍ୱ ପରମ୍ପରା ରହିଛି, ଯାହାକୁ ନେଇ ଉକ୍ତ ସମାଜ ନିଜର ପରିଚିତି, ଅସ୍ମିତା ନିର୍ଦ୍ଧାରଣ କରେ ଓ ଗର୍ବ କରେ । ଜୀବନାନୁଭୂତି ହିଁ ପରମ୍ପରାର ପୋଷାକ । ସ୍ଥାନ, କାଳ ଓ ପାତ୍ର ପରମ୍ପରାକୁ ଋଦ୍ଧିମନ୍ତ କରେ । ମୌଖିକ କାହାଣୀରେ ଲୋକଜୀବନର ସାମାଜିକ, ସାଂସ୍କୃତିକ, ଧାର୍ମିକ ସମେତ ଅନ୍ୟାନ୍ୟ ସମସ୍ତ ବ୍ୟାବହାରିକ ଦିଗଗୁଡ଼ିକ କଳାତ୍ମକ ଓ ରୁଚିପୂର୍ଣ୍ଣ ଶୈଳୀରେ ଉପସ୍ଥାପିତ



ହୋଇଥାଏ । ମଣିଷ ଜୀବନଚକ୍ରର ଜନ୍ମ, ମୃତ୍ୟୁ, ବିବାହ ଆଦି ବର୍ଣ୍ଣନାର ସମାବେଶରେ ଲୋକକାହାଣୀ ଏକ ବର୍ଣ୍ଣିଳ ଚିତ୍ରଶାଳା ।

ପ୍ରାଗ୍ ଐତିହାସିକ କାଳରୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆଦିବାସୀମାନେ ବସବାସ କରିଆସୁଛନ୍ତି । ଏମାନଙ୍କର ଜୀବନଚର୍ଯ୍ୟା ମନୋମୁଗ୍ଧକର । ପ୍ରତ୍ୟେକ ଆଦିବାସୀ ଗୋଷ୍ଠୀର ସ୍ୱତନ୍ତ୍ର ଜୀବନଧାରା ରହିଛି । ସେହିଭଳି ଆଦିବାସୀ ଜୀବନଧାରାରେ ମୌଖିକ ସାହିତ୍ୟ ପରମ୍ପରାର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ବାଥୁଡ଼ି ମୌଖିକ ସାହିତ୍ୟ ପରମ୍ପରା ଏଥିରୁ ବାଦ୍ ଯାଆନ୍ତା କିଭଳି ? ବାଥୁଡ଼ି ମୌଖିକ ସାହିତ୍ୟ ସେ ଗୋଷ୍ଠୀର ସାମାଜିକ ଓ ସାଂସ୍କୃତିକ ଜୀବନକୁ ସର୍ବାଧିକ ପ୍ରଭାବିତ କରିଆସିଛି ।

ବାଥୁଡ଼ି ଲୋକଗୀତରେ ସାମାଜିକ ଓ ସାଂସ୍କୃତିକ ଚିତ୍ର କିଭଳି ପ୍ରତିଫଳିତ ହୋଇଥାଏ, ତାହା ନିମ୍ନ ବର୍ଣ୍ଣିତ ଗୀତରୁ ସ୍ପଷ୍ଟ ହୋଇଥାଏ । ବର୍ଷାକାଳୀନ ପଲ୍ଲୀ ଓ କୃଷି କାର୍ଯ୍ୟର ମାର୍ମିକ ଚିତ୍ର ଏହି ଗୀତରେ ପ୍ରତିଫଳିତ ।

''ଆସିଲା ବରଷା ମାଡ଼ି<br>
ଚାରିଆଡ଼େ ବେଙ୍ଗ ଛାଡ଼ିଲେ ରଡ଼ି<br>
ଛାଡ଼ିଲେ ରଡ଼ି ଲୋ,<br>
ଶୂନ୍ୟେ ଶୁଭେ ଘଡ଼ଘଡ଼ି<br>
ନଈ ବନ୍ଧ ଗେଲା ପୂରି<br>
ବଢ଼ି ଦେଖି ପିଲା ଛାଡ଼ିଲେ ହୁରି<br>
ଛାଡ଼ିଲେ ହୁରି ଲୋ<br>
ଚାଷୀ ମଲେ ଝୁରି ଝୁରି<br>
କାଠି କୁଟା ସାଙ୍ଗେ ମିଶି<br>
କେତେ ଜୀବଜନ୍ତୁ ଗନେଇ ଭାସି<br>
ଗନେଇ ଭାସି ହୋ<br>
ମାଛ ହେନେ ବଡ଼ ଖୁସି ।''

ବାଥୁଡ଼ିମାନେ ଖୁବ୍ ପରିଶ୍ରମୀ ଓ ଜିଦ୍‌ଖୋର ସ୍ୱଭାବର । ବାଥୁଡ଼ି ଜନଜାତି ଗୋଷ୍ଠୀର ସାମାଜିକ ଚରିତ୍ରକୁ ବୁଝାଇବା ଉଦ୍ଦେଶ୍ୟରେ ନିମ୍ନ 'ଢଗ'ଟି ଉଦ୍ଧିଷ୍ଟ ।

''ରେଂଘା ବାଥୁଡ଼ି ଚେଙ୍ଗା ଭୂୟାଁ''

ବାଥୁଡ଼ିମାନେ ଶସ୍ୟ ଅମଳ ବେଳେ ଖୁବ୍ ଉଲ୍ଲସିତ ହୋଇ ପଡ଼ନ୍ତି । ଖାଦ୍ୟଶସ୍ୟ ମହଜୁଦ ଥିବାରୁ ସେମାନେ ଆନନ୍ଦ ମନରେ ଗୀତ ବୋଲି ଜୀବନକୁ ଉପଭୋଗ କରନ୍ତି ।

''ଭୁଜା କର୍‌ରେ ମା' ଖାଇବା<br>
ପିଠା କର୍‌ରେ ମା' ଖାଇବା<br>
ଏଇ ଦୁଇଦିନ ଫୁଟୁଲ୍ ଫାଟେଲ୍<br>
ପଛେ ସିନା ଦୁଃଖ ପାଇବା ।''

ବାଥୁଡ଼ି ସାମାଜିକ ଓ କୃଷି ଜୀବନରେ ବର୍ଷାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । ଦୀର୍ଘଦିନ ଧରି ବର୍ଷା ନ ହେଲେ ବାଥୁଡ଼ିମାନଙ୍କ ମନରେ ଆଲୋଡ଼ନ ସୃଷ୍ଟି ହୁଏ । ଏଣୁ ସେ ଗାଇ ଉଠେ–

''କେଙ୍ଗଟୋ (ଏଣ୍ଡୁଅ) ଖାଇଲା ନାଲିଆ ମାଟି<br>
ଦେ ବରଷା ଝାଟିପିଟି ।''

ଭାଦ୍ରବ ମାସ ବେଳକୁ ଖେଳି (ଏକ ପ୍ରକାର ଘାସ ମଞ୍ଜି) ଓ କାଙ୍ଗୁ (ବାଜରା) ପାଚି ଯାଇଥାଏ । କ୍ଷେତରେ ଦୋଳି ଖେଳୁଥିବା ଖେଳି ଓ କାଙ୍ଗୁକୁ ଦେଖି ବାଥୁଡ଼ିମାନଙ୍କ ମନରେ ଏକ ନୂତନ ଆଶାର ସଞ୍ଚାର ହୋଇଥାଏ । ବର୍ଷାଦିନିଆ ଖାଦ୍ୟ ଅଭାବଜନିତ କଷଣକୁ ଭୁଲି ବାଥୁଡ଼ି ଆନନ୍ଦରେ ଚାଙ୍ଗୁ ବଜେଇ ନାଚିଥାଏ । ଚାଙ୍ଗୁ ବାଥୁଡ଼ିମାନଙ୍କ ସାଂସ୍କୃତିକ ଓ ସାମାଜିକ ଜୀବନର ପ୍ରମୁଖ ଅଂଶ । ଚାଙ୍ଗୁ ବିନା ବାଥୁଡ଼ିମାନଙ୍କ ନାଚଗୀତ, ଭୋଜିଭାତ, ଉତ୍ସବ, ପର୍ବପର୍ବାଣି କଥା ଭାବି ହେବନି ।

''ଖେଳି, କାଙ୍ଗୁ ପାଚିଲା<br>
ବାଥୁଡ଼ି ଚାଙ୍ଗୁ ବାଜିଲା<br>
ଡାଙ୍ଗୁଳୀ ନାନୀ ନାଚିଲା ।''

ବାଥୁଡ଼ିମାନେ ସିନା ଜଙ୍ଗଲରେ ପ୍ରକୃତି କୋଳରେ ବଢ଼ିଥାନ୍ତି । କିନ୍ତୁ ଦାରିଦ୍ର୍ୟ ସେମାନଙ୍କର ପିଛା ଛାଡ଼ି ନଥାଏ । ଦାରିଦ୍ର୍ୟର ତାଡ଼ନାରେ ବି ବାଥୁଡ଼ି ଯୁବକ, ଯୁବତୀମାନେ ନାଚ, ଗୀତ କରିବାକୁ କେବେ ଭୁଲନ୍ତି ନାହିଁ ।





ବାଥୁଡ଼ି ସମାଜରେ ଦାରିଦ୍ର୍ୟର ଚିତ୍ରକୁ ପ୍ରତିଫଳିତ କରିବାରେ ଏହି ଲୋକୋକ୍ତିଟି ଯଥେଷ୍ଟ ।

''ଛାଇନି ପତର ଛତା
ରହ କହିଦେମି ହୋ ଦୁଃଖର କଥା
ଶୁଣିନେ ଖାଇବ ମଥା
ବାଳିରି ବାଳିଆ ଗେବ
ଦିନୁ ଦିନୁ ଭାଇ ହେନୁ ଗରିବ ।''

ଅସ୍ପୃଶ୍ୟତା ଏକ ସାମାଜିକ କଳଙ୍କ । ମାତ୍ର ବାଥୁଡ଼ି ସମାଜରେ ଛୁଆଁ ଅଛୁଆଁ ଭେଦଭାବ ଦେଖିବାକୁ ମିଳି ନଥାଏ ।

''କାଳିଆ ପୁଟୁରି ବାସ
ଆସ ସାଙ୍ଗ ଘରି ଦୁଳିରେ ବସ
ନାଇଁ ନାଗିଯିବ ଦୁଷ
ହେଙ୍କୁଚୁ କୁଚୁ ହୋ, ହସିଦିଅ ମୁଚୁମୁଚୁ ।''

ବାଥୁଡ଼ିମାନଙ୍କ ସାମାଜିକ ଜୀବନରେ ପୋଷାକ ପରିଚ୍ଛଦର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । ବାଥୁଡ଼ିମାନଙ୍କ ପୋଷାକକୁ ନେଇ ଏହି ଲୋକଗୀତଟି ବେଶ୍ ଭାବୋଦ୍ଦୀପକ ।

''କାନ୍ଧକୁ ସାଜେ ପଇତା
ପୂରା ଜଂଘିଆକୁ ପାଣ୍ଡେଇ ଜୁତା
ହାତରେ ଧରିଥା ଛତା ।''

ବାଥୁଡ଼ି ସାମାଜିକ ଜୀବନରେ 'ପ୍ରେମ'ର ଏକ ନିଆରା ସ୍ଥାନ ରହିଛି । ପ୍ରେମିକ, ପ୍ରେମିକା ପରସ୍ପରକୁ ପ୍ରେମ କରୁଛନ୍ତି । ରାସ୍ତାରେ ଯାଉଥିବାବେଳେ ପ୍ରେମିକକୁ ଦେଖି ଯଦି ପ୍ରେମିକାଟି କିଛି କହେ ନାହିଁ ବା ସେମାନଙ୍କ ମଧ୍ୟରେ ଭାବର ଆଦାନପ୍ରଦାନ ହୁଏ ନାହିଁ, କଥାଟା ଠିକ୍ ଲାଗେ ନାହିଁ । ପ୍ରେମିକ-ପ୍ରେମିକାଙ୍କ ଏ ଭାବକୁ ନେଇ ଗୀତାଂଶଟିକୁ ଲକ୍ଷ୍ୟ କରାଯାଇପାରେ ।

''ରଙ୍ଗ ପିଆଜ, ରଙ୍ଗଣୀ ସାଙ୍ଗରେ ବଡ଼ ମଉଜ
ରଙ୍ଗ ସୂତା ଦେନି ସାଇକି
ହସିକରି କଥା ଯେବେ ନ କହିବୁ
କିଏ ଯିବ ତୁମ ସାଇକି?''

**ବାଥୁଡ଼ି କୃଷି ଗୀତରେ ସାମାଜିକ ସଂହତିର ଚିତ୍ର**

କୃଷି ଓଡ଼ିଆ ଜାତିର ସାଂସ୍କୃତିକ ଓ ସାମାଜିକ ଜୀବନକୁ ଅନେକ ମାତ୍ରାରେ ପ୍ରଭାବିତ କରିଥାଏ । କୃଷିକୁ କେନ୍ଦ୍ର କରି ଓଡ଼ିଆ ପର୍ବପର୍ବାଣି, ଓଷାବ୍ରତର ଅଭ୍ୟୁଦୟ ଘଟିଛି । କେବଳ ଓଡ଼ିଆ ପର୍ବପର୍ବାଣି କାହିଁକି ଆଦିବାସୀଙ୍କ ପର୍ବପର୍ବାଣି ମଧ୍ୟ କୃଷି ସଂସ୍କୃତିକୁ ଭିତ୍ତି କରି ସମୃଦ୍ଧ ହୋଇଛି ।

''ଯେଉଁଠି ନୂଆ ନୂଆ ଫସଲ ଖାଇବା ଘେନି ପର୍ବ, ଯେଉଁଠି ନୂଆ ଫୁଲ ଫଳ ଘେନି ପର୍ବ, ବିଭିନ୍ନ ପୁଷ୍ଟିକର ଖାଦ୍ୟ ପ୍ରୟୋଜନ ଘେନି ଋତୁ ଅନୁକ୍ରମେ ଓଷା ଉପାସ, ସେଠି କେତେ ଆନନ୍ଦ, କୋଳାହଳ ।

ଗହମ ଲୋଡ଼ା ହୁଏ-ଭାଦ୍ର ଆଶ୍ୱିନରେ ବେଶି । ବାଲ୍ ତୃତୀୟା, ବିନାୟକ ବ୍ରତ, କୃଷ୍ଣ ଜନ୍ମ, ଅନନ୍ତ ବ୍ରତ, ଦୁର୍ଗାଦେବୀଙ୍କ ପର୍ବ, ଦୁର୍ଗାଷ୍ଟମୀ, ଦଶହରା ଇତ୍ୟାଦିରେ ।

ନୂଆ ବିରି ଲୋଡ଼ା ହୁଏ ମାର୍ଗଶିର ପ୍ରଥମାଷ୍ଟମୀ, ମାଣବସା ଗୁରୁବାର, କାଞ୍ଜି ଅଁଳା ନବମୀ ଆଦିରେ ।

ଓଡ଼ିଆ ଚଣା ଅନୁକୂଳ କରି ଖାଏ ଫଗୁ ଦଶମୀଠାରୁ ଦୋଳ ପୂର୍ଣ୍ଣିମୀ ମଧ୍ୟରେ । ସେଠାରୁ ଚାଲେ ଚୈତ୍ର ଶେଷ ଯାଏ ।

ସୁବାସ ସରୁ ଅରୁଆ ଚାଉଳ ମକର ସଂକ୍ରାନ୍ତିରେ । ରାଶି, ଲିଆ ଓ ନୂଆଗୁଡ଼ ପୌଷରେ । ଗଜା ମୁଗ ବୈଶାଖରେ । ଧୁଆ ମୁଗ ଜ୍ୟେଷ୍ଠରେ । ନୂଆ ଚୁଡ଼ା, ନୂଆ ଚାଉଳ ଭାଦ୍ର ନବାନ୍ନରେ । ମୁଢ଼ି ଅକ୍ଷୟ ତୃତୀୟା ଓ ରଜ ମଧ୍ୟରେ, ପନିପରିବା ଘାଣ୍ଟ ଦ୍ୱିତୀୟା ଓଷା ବାସୀ ପୁଣି କାର୍ତ୍ତିକ ପୁନିଅଁ ବାସୀ ଛାଡ଼ଖାଇରେ ଏବଂ କାଞ୍ଜି ଅଁଳା ନବମୀ ଓ ସମ୍ବର ଦଶମୀରେ ।

ସୋରିଷ, ଶିମ୍ବଫୁଲ ଖିଆଯାଏ ସମ୍ବର ଦଶମୀରେ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଉତ୍ସର୍ଗ କରି । ଆମ୍ବ ବଉଳ ବଉଳ ଅମାବାସ୍ୟାରେ ।

କଷି ଆମ୍ବ, ମହୁଲ ଆରମ୍ଭ ହୁଏ ଫଗୁଣ ପୁନିଅଁ ଠୋଉ କେରୁ ଯାତ୍ରା ଯାଏ ।

ମାଳତୀ ଫୁଲ କୃଷ୍ଣ ଜନ୍ମାଷ୍ଟମୀରେ ଅନୁକୂଳ ହୁଏ । ଶାରଦୀୟ ପୁଷ୍ପମାନ ଦୁର୍ଗାଦେବୀଙ୍କ ପର୍ବରେ ଅନୁକୂଳ ହୋଇ ସାଧାରଣ ନାରୀ ବ୍ୟବହାର କରିଥାନ୍ତି ।

କାର୍ତ୍ତିକ ମାସେ କନିଅର
କେବେ ନ ଦେବ ଗଦାଧର ।

ଲକ୍ଷ୍ମୀଙ୍କଠାରେ ଗେଣ୍ଡୁଫୁଲ ତାଙ୍କ ଜନ୍ମଦିନ ପ୍ରଥମାଷ୍ଟମୀରେ ଆରମ୍ଭ କରାଯାଏ । ତା' ପରେ ଯୁବତୀ ଗଭାକୁ ଯାଏ । ଅଶୋକ ଅଶୋକାଷ୍ଟମୀରୁ ଆରମ୍ଭ । ଶିମ୍ବଫୁଲ ସମ୍ବର ଦଶମୀ ଦିନରୁ । ଆମ୍ବ ବଉଳ ବଉଳ ଅମାବାସ୍ୟାଠାରୁ ।

ଫଳ ପୁଷ୍ପ ଦେବତାଙ୍କୁ ସମର୍ପଣ କରି ସାରିଲେ ତା' ପରେ ଉପଭୋଗ କରେ ଜନତା ।''

ପ୍ରଖ୍ୟାତ ଲୋକସାହିତ୍ୟ ଗବେଷକ ଚକ୍ରଧର ମହାପାତ୍ର ଓଡ଼ିଶାର କୃଷିଜାତ ଦ୍ରବ୍ୟ, କୃଷି ସଂସ୍କୃତିକୁ ନେଇ ସୃଷ୍ଟି ହୋଇଥିବା ପର୍ବପର୍ବାଣି ସମ୍ପର୍କରେ ଉଲ୍ଲେଖ କରିଛନ୍ତି । କୃଷି ଓ କୃଷିଜାତ ଦ୍ରବ୍ୟକୁ କେନ୍ଦ୍ର କରି ଓଡ଼ିଆ ପର୍ବପର୍ବାଣି ନିର୍ଘଣ୍ଟ ହୋଇଛି । ପ୍ରତି ଫଳ, ଫୁଲ ନୂଆ କରି ଅମଳ ହେବା ପରେ ପ୍ରଥମେ ଦେବଦେବୀ ଓ ପିତୃପୁରୁଷଙ୍କୁ ଅର୍ପଣ କରାଯାଏ ଏବଂ ପରେ ଏହାକୁ ମଣିଷ ଭକ୍ଷଣ କରେ । ଅନୁରୂପ କୃଷି ସଂସ୍କୃତି ବାଥୁଡ଼ି ସମାଜରେ ପରିଲକ୍ଷିତ ହୋଇଥାଏ ।

'ବଡ଼ାମ୍' (ବଳରାମ) ଯେ କି କୃଷିର ଦେବତା ସେ ହେଉଛନ୍ତି ବାଥୁଡ଼ିମାନଙ୍କର ମୁଖ୍ୟ ଦେବତା । ଏଣୁ କୃଷି ହେଉଛି ବାଥୁଡ଼ିମାନଙ୍କର ମୁଖ୍ୟ ଜୀବନଜୀବିକା । ଏଣୁ ବାଥୁଡ଼ି ସମାଜରେ କୃଷିକୁ କେନ୍ଦ୍ର କରି ନାନା ପ୍ରକାର ପର୍ବପର୍ବାଣି ସୃଷ୍ଟି ହୋଇଛି । କୃଷି ସଂସ୍କୃତି ମଧ୍ୟ ବାଥୁଡ଼ି ମୌଖିକ ସାହିତ୍ୟ ପରମ୍ପରାକୁ ବଳିଷ୍ଠ କରିଛି ।

ବାଥୁଡ଼ି ସମାଜରେ କୃଷିକୁ କେନ୍ଦ୍ର କରି ଲୋକଗୀତମାନ ଶୁଣିବାକୁ ମିଳିଥାଏ । ଧାନବୁଣା, ଧାନରୁଆ, ବିଲବଛା ଗୀତଠାରୁ ଆରମ୍ଭ କରି ଧାନ ଅମଳ, ଶାଗତୋଳା ଗୀତ ପର୍ଯ୍ୟନ୍ତ ପ୍ରତ୍ୟେକ ଗୀତରେ ଏକ ସାହିତ୍ୟିକ ମୂଲ୍ୟବୋଧ ନିହିତ ଥାଏ ।

ଗ୍ରୀଷ୍ମ ଋତୁର ପ୍ରତ୍ୟାବର୍ତ୍ତନ ଓ ବର୍ଷା ଋତୁର ଆଗମନରେ ବାଥୁଡ଼ି ଜାତି କୃଷି କାର୍ଯ୍ୟରେ ମନୋନିବେଶ କରିଥାଏ । ଖରାଦିନେ କ୍ଷେତକୁ ହଳ କରି ଧାନ ବୁଣିଲା ବେଳେ ବାଥୁଡ଼ି ଯୁବକ, ଯୁବତୀମାନେ ଧାନବୁଣା ଗୀତ ଗାଇ ଶ୍ରମ ଲାଘବ କରିବା ସହ ଜୀବନକୁ ଉପଭୋଗ କରିଥାନ୍ତି । 'ଲଙ୍ଗଳ' ହେଉଛି ବଡ଼ାମ୍‌ଙ୍କ ମୁଖ୍ୟ ଆୟୁଧ । ଏଣୁ କୃଷି ବିନା ବାଥୁଡ଼ି ଜୀବନଜୀବିକା କଥା ଚିନ୍ତା କରିହୁଏନି । ବାଥୁଡ଼ିମାନେ କାନ୍ଧରେ ଲଙ୍ଗଳ, ଯୁଆଳି ପକେଇ ବିଲକୁ ଯିବା ବେଳେ ତା' ମନରେ ଯେଉଁ ଆନନ୍ଦ ଜନ୍ମ ନିଏ, ତାହା ବାଥୁଡ଼ି କୃଷି ସଙ୍ଗୀତରେ ପ୍ରତିଫଳିତ ହୋଇଥାଏ ।

''ନଙ୍ଗଳ ଯୁଆଳି କାନ୍ଧେ
ଗେଲି ମୁହିଁ ବାଲିବନ୍ଧେ
ପହଞ୍ଚିଲି ଯାଇ ହୁଳିତଳ ଜମିରେ
ଦୁଇ ଡାହାଣ ମାଇନି
ଧାନ କିଛି ବୁଣିଦେନି
ହଳ କରୁ କରୁ ବେଳ ମୁଣ୍ଡ ଉପରେ ।''

ବାଥୁଡ଼ି କୃଷି ଗୀତରେ କେବଳ କୃଷକର ଆନନ୍ଦର କାହାଣୀ ପ୍ରତିଫଳିତ ହୋଇ ନଥାଏ, ଚାଷୀର ଦୁଃଖ ଦୁର୍ଦ୍ଦଶାର ଚିତ୍ର ମଧ୍ୟ ବାଥୁଡ଼ି କୃଷି ଗୀତରେ ପରିଲକ୍ଷିତ ହୋଇଥାଏ ।

''ଗମ ଗମ ଝାଳ ବହୁଚି
ଶୁଷେ ଟି ଅଠା ଅଠା ପରା ନାଗୁଚି ।
ହିଳରେ ଯାଇ ବସିନି
ବିଶିରାମ ଡଣ୍ଡେ କନି ।''

ଜ୍ୟେଷ୍ଠ ମାସରେ ପ୍ରଥମ କେଇ ଅସରା ବର୍ଷାରେ ବାଥୁଡ଼ି ତା' ବିଲକୁ ହଳ କରି ଚଷିବା ଆରମ୍ଭ କରେ । ମାତ୍ର ଗ୍ରୀଷ୍ମଦିନିଆ ଖରା ବାଥୁଡ଼ି ଚାଷୀକୁ କମ୍ କଷଣ ଦେଇ ନଥାଏ!



''ଜ୍ୟେଷ୍ଠ ମାସିଆ ଖରା
ବଡ଼ ହିନିମାନ ପରା
ବାସି ଆମ ଆଶୁ ନାହିଁ ମନେ ଭାବିନି
ବେଳ ଆସି ଏତେ ହୁଇଲା
ସେ ଆମର ଘରେ କିସ କରୁଚି ଭଲା ।''

ଶ୍ରାବଣ ମାସ ଶେଷ ଏବଂ ଭାଦ୍ରବ ମାସ ଆରମ୍ଭ ବେଳକୁ ଧାନ ରୁଆ, ଉପଡ଼ା କାମ ପ୍ରାୟ ଶେଷ ହୋଇଯାଇଥାଏ । ଏହି ସମୟରେ ବାଥୁଡ଼ିମାନେ ବିଲ ବଛା କାମରେ ଲାଗି ପଡ଼ନ୍ତି । ବିଲ ବଛା କାମ ପାଇଁ ଜମି ମାଲିକ ତାକୁ କେତେ ମଜୁରି ଦେବ, ତାହା ଜାଣିବାକୁ କୃଷି ଶ୍ରମିକଟିଏ ଉତ୍କଣ୍ଠା ପ୍ରକାଶ କରିଥାଏ ।

''ବିଲ ବାଛି ଗନି ହାତେ
ବିଲ ବାଛା ଭାଇ ମଜୁରି କେତେ?
ପଚାରି ନଭୁଛୁଁ ତତେ ।''

ସେହିଭଳି ଜମି ମାଲିକ ମଧ୍ୟ ମୂଲିଆଠାରୁ ମୂଲ ବାବଦରେ ଜାଣିବାକୁ ଇଚ୍ଛା କରେ ଗୀତ ମାଧ୍ୟମରେ । ଜମି ମାଲିକ ଓ ମୂଲିଆ ମଧ୍ୟରେ ମୂଲର ପରିମାଣକୁ ନେଇ ଯେଉଁ ସାଙ୍ଗୀତିକ କଥୋପକଥନ ହୋଇଥାଏ, ତାହାର ସାହିତ୍ୟିକ ମୂଲ୍ୟବୋଧ ଉଚ୍ଚ ମାନର ।

''ହଳ କନି ଆଡ଼େ ବାଙ୍କେ
ହଳିଆ ଭାଇ ତ ମୂଲ ଯେ କେତେ?
ହିସାବ ଦେଇ ଯା ମୋତେ ।

ମୂଲିଆ ବିଲ କାମ ସାରି ଆର ବର୍ଷ ଜମି ଚାଷ କରିବାକୁ ଜମି ମାଲିକଙ୍କୁ ଜବାବ ଦେଇଥାଏ । ଯଦି ତା'ର ମୃତ୍ୟୁ ହୋଇ ନଥିବ, ସେ ଆସନ୍ତାବର୍ଷ ନିର୍ଦ୍ଦିଷ୍ଟ ଜମି ମାଲିକର ଜମିରେ ବିଲ ବଛା କାମ କରିବ ବୋଲି ପ୍ରତିଶ୍ରୁତି ଦେଇଥାଏ ।

''ସରିଗଲା ବିଲ କାମ
ନେଖି ରଖିଥିବ ମହରି ନାମ
କାଳେ ନେଇଯିବ ଯମ ।''

ମକର ସଂକ୍ରାନ୍ତି ବାସି ଜମିରେ ଅଢ଼େଇ ବେହ୍ଲା ହଳ କରିବାକୁ ଘରର ମୁରବି ପୁଅ, ପୁତୁରା, ନାତିମାନଙ୍କୁ ଚେତାଇ ଦେଇଥାନ୍ତି । ଜମିକୁ ଚଷାବସା କରିବା ପରେ ତିର୍ତୀୟା ପୂଜା ପରେ ଅକ୍ଷିମୁଠି ଅନୁକୂଳ କରି ଧାନ ବୁଣାଯାଇ ପାରିବ ବୋଲି ପରିବାରର ମୁଖ୍ୟମାନେ ବୁଝାଇ ଦିଅନ୍ତି । ମାଘ ମାସ ଆସିଲେ ଉଭୟ ଚାଷ ଓ ବାସର ପ୍ରସ୍ତୁତି ପାଇଁ ବାଥୁଡ଼ି ଚାଷୀ ତତ୍ପର ହୋଇଉଠେ ।

''ହେଲାରେ, ମକର ମାସ,
ଦେଖ ଭାଇ ଚାଷବାସ,
ହେଳା କଲେ ଭେଳା ବୁଡ଼ିଯିବ ସିନା,
ଟୁଟିଯିବ ତର ଦମ୍ଭ ସାହସ ।
ମକର ପୁନେଇଁ ବାସି,
ବାର, ନକ୍ଷତ୍ର ନ ଦେଖି,
ଅଢ଼େଇଟା ବେହ୍ଲା କରି ଦେ'ରେ ହଳ,
କଲୁ ଅନୁକୂଳ ଭାବେ ନୂଆ ବରଷ ।
ଜମି ଚଷାବସା କରି,
ରଖିନେ ଜମି ସଜାଡ଼ି,
ପାଗ ଯୁଗ ଦେଖି ଧାନ ବୁଣିଦେନେ,
ଫସଲ ଦେଖିବୁ କେଡ଼େ ସରସ ।''

ବାଥୁଡ଼ି ମୌଖିକ ସାହିତ୍ୟରେ ସାମାଜିକ ଓ ସାଂସ୍କୃତିକ ଚେତନା ଅତି ଉଚ୍ଚକୋଟୀର । ଯୁଗ ଯୁଗ ଧରି ମୁଖରୁ ମୁଖକୁ ଚଳି ଆସିଥିବା ଏହି ମୌଖିକ ସାହିତ୍ୟ ବାଥୁଡ଼ିମାନଙ୍କୁ ଏକ ସ୍ୱତନ୍ତ୍ର ପରିଚୟ ଦେଇପାରିଛି ।

ଜିଲ୍ଲା ପ୍ରତିନିଧି, 'ସମ୍ବାଦ'
କନ୍ଧମାଳ (ଫୁଲବାଣୀ)

# ଐତିହ୍ୟ, ସଂସ୍କୃତି ଓ ଶିଳ୍ପଭିତ୍ତିକ ନଗର – ଯାଜପୁର

**କମଳ କୁମାର ରାଉତ**

ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାପଡ଼େ ଯେ, ସୋମବଂଶୀ ସମ୍ରାଟ୍ ଯଯାତି କେଶରୀଙ୍କ ରାଜତ୍ୱ କାଳରେ, ପୁଣ୍ୟ ବୈତରଣୀ ନଦୀ କୂଳରେ ଅବସ୍ଥିତ ଯାଜପୁର ଉତ୍କଳର ରାଜଧାନୀ ଥିଲା । ଯାଜପୁର ଶବ୍ଦର ଆକ୍ଷରିକ ଅର୍ଥ ହେଉଛି ଯାଜି– ଅର୍ଥାତ୍ ଯଜ୍ଞକାରୀ ବ୍ରାହ୍ମଣମାନଙ୍କ ନଗର ବା ପୁର । ତେଣୁ ଏହା ଏକ ପ୍ରସିଦ୍ଧ ଯଜ୍ଞକ୍ଷେତ୍ର ହୋଇଥିବାରୁ ଏହାର ନାମ ଯଜ୍ଞପୁର ହୋଇଥିଲା ଓ କାଳକ୍ରମେ ଏହା ଯାଜିପୁର ବା ଯାଜପୁରରେ ପରିଣତ ହେଲା । ଯାଜପୁରକୁ ପଞ୍ଚ 'ବ' କାର ତୀର୍ଥସ୍ଥଳ ବୋଲି କୁହାଯାଏ । ଏ ପଞ୍ଚ 'ବ' କାର ହେଲା ବରାହ, ବିରଜା, ଦେବ, ବିପ୍ର ଓ ବୈତରଣୀ । ଏମାନେ ଅନ୍ୟତ୍ର ଏକାଠି ମିଳିବା ଦୁର୍ଲଭ ଅଟେ । ଯାଜପୁରର ଭୈରବୀ ହେଉଛନ୍ତି ମା' ବିରଜା ଏବଂ ଭୈରବ ହେଉଛନ୍ତି ବରାହ । ଯାଜପୁର ନଗର ସ୍ଥିତିକୁ ଲକ୍ଷ୍ୟକଲେ ଜଣାପଡ଼େ ଯେ, ଗୋଟିଏ ପଟ ଉତ୍ତର ଦିଗରେ ଯଜ୍ଞ ବରାହ ମନ୍ଦିର, ଠିକ୍ ତା'ର ଆରପଟ ଶେଷ ମୁଣ୍ଡରେ ମା' ବିରଜାଙ୍କ ମନ୍ଦିର । ଏ ଦୁଇ ମୁଖ୍ୟ ମନ୍ଦିର ବ୍ୟତୀତ ଗଳିରେ, ଗଳିରେ ପୂରି ରହିଛି ଅସଂଖ୍ୟ ମନ୍ଦିର ଓ ଶିବଲିଙ୍ଗ, ଯାହାକି ଯାଜପୁରକୁ ମନ୍ଦିରମାଳିନୀ କରିଥିଲା । କଥା ଅଛି, କୋଟିଏ ଦେବାଦେବୀ ପୀଠରୁ ମାତ୍ର ଗୋଟିଏ କମ୍ ହେଲା ବୋଲି ଯାଜପୁର କ୍ଷେତ୍ରରାଜ ହେବାର ଗୌରବ ଅର୍ଜନ କରିପାରିଲା ନାହିଁ । ଏଠାରେ ଜ୍ଞାନୀ ପଣ୍ଡିତମାନଙ୍କ ଦ୍ୱାରା ପ୍ରସ୍ତୁତ ବିରଜା ପଞ୍ଜିକା ପ୍ରଚଳିତ ଅଟେ । ଯାଜପୁରର ବନ୍ଧୁ (ଭକ୍ତ ବନ୍ଧୁ ମହାନ୍ତି) ପ୍ରଭୁ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ ।

ପୁରାଣ ବର୍ଣ୍ଣିତ ଦକ୍ଷ ଯଜ୍ଞର କାହାଣୀ ଅନୁସାରେ ଭଗବାନ ବିଷ୍ଣୁ, ସୁଦର୍ଶନ ଚକ୍ର ଦ୍ୱାରା ଶିବଙ୍କ ପତ୍ନୀ ସତୀଙ୍କ ଦେହକୁ ଖଣ୍ଡଖଣ୍ଡ କରିଦେଇଥିଲେ । ଦେବୀ ସତୀଙ୍କର ଏକାବନ ଖଣ୍ଡ ଦେହାଂଶରୁ ନାଭି ଅଂଶଟି ଏହି ସ୍ଥାନରେ ପଡ଼ିଥିଲା । ତେଣୁ ଓଡ଼ିଶାରେ ଥିବା ଚାରିଗୋଟି କ୍ଷେତ୍ର ମଧ୍ୟରୁ ଯାଜପୁର ନାଭିକ୍ଷେତ୍ର ହିସାବରେ ପରିଗଣିତ ହୋଇଛି । ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ମା' ବିରଜାଙ୍କ ଆବିର୍ଭାବ ବିଷୟରେ ବ୍ରହ୍ମାପୁରାଣରେ ଉଲ୍ଲେଖ ଅଛି ଯେ, ଭଗବାନଙ୍କ ଆଦେଶରେ ସୃଷ୍ଟିକର୍ତ୍ତା ବ୍ରହ୍ମା, ବୈତରଣୀ ନଦୀ କୂଳରେ ଏକ ବିରାଟ ଯଜ୍ଞ କରିଥିଲେ । ବ୍ରହ୍ମାଙ୍କର ଯଜ୍ଞ କୁଣ୍ଡରୁ ଶକ୍ତିରୂପିଣୀ ମା' ବିରଜା ଆବିର୍ଭୂତ ହୋଇଥିଲେ । ସେ ଦିନଟି ଥିଲା ମାଘ ମାସ ତ୍ରିବେଣୀ ଅମାବାସ୍ୟା । ସେହିଦିନଟିକୁ ମା'ଙ୍କର ଜନ୍ମଦିନ ହିସାବରେ ପାଳନ କରାଯାଏ । ବିରଜାଙ୍କ ମୂର୍ତ୍ତି ଭାରତବର୍ଷର ଏକ ବିରଳ କୃତି ଅଟେ । ଏଠାରେ ଦେବୀ ମହିଷମର୍ଦ୍ଦିନୀ ଦ୍ୱିଭୁଜା ଅଟନ୍ତି । ଦେବୀଙ୍କର ଦ୍ୱିଭୁଜରୁ ଦକ୍ଷିଣ ହସ୍ତରେ ଶୂଳଧାରଣ ପୂର୍ବକ ମହିଷର ପୃଷ୍ଠ ଦେଶକୁ ଭେଦ କରୁଥିଲା ବେଳେ ବାମ ହସ୍ତରେ ମହିଷର ପୁଚ୍ଛକୁ ଧାରଣ କରିଛନ୍ତି । କୃତିର ବିଶେଷତ୍ୱ ହେଉଛି ଯେ, ତାଙ୍କ ମୁକୁଟରେ ଥିବା ପଞ୍ଚମୂର୍ତ୍ତି । ଏମାନେ ହେଲେ ଗଣେଶ, ଶକ୍ତିଚକ୍ର, ଶିବଲିଙ୍ଗ, ଚନ୍ଦ୍ର ଓ ନାଗ । ଏହି ପଞ୍ଚ ପ୍ରତୀକ ମସ୍ତକରେ ଧାରଣ କରିଥିବା ମହିଷମର୍ଦ୍ଦିନୀ ମୂର୍ତ୍ତି ଭାରତର କୌଣସି ସ୍ଥାନରେ ଦେଖିବାକୁ ମିଳେନାହିଁ । ବିରଜା ମନ୍ଦିର ପ୍ରାଙ୍ଗଣରେ ନାଭିକୁଣ୍ଡ ଅଛି । କୁହାଯାଏ ପିତୃପୁରୁଷଙ୍କୁ ଏହି ସ୍ଥାନରେ ପିଣ୍ଡ ଦିଆଯାଏ ।



ସମଗ୍ର ଦିବସର ପିଣ୍ଡରେ ନାଭିଗୟା କୁଣ୍ଡଟି ଭରିଯାଏ । ମାତ୍ର ତା' ପରଦିନ ସକାଳେ ଦେଖିଲେ ସେ ପିଣ୍ଡର କୌଣସି ପଦାର୍ଥ ଦେଖାଯାଏ ନାହିଁ । କୁହାଯାଏ ଗୁପ୍ତଗଙ୍ଗା ସେହି କୁଣ୍ଡର ତଳେ ପ୍ରବାହିତ ହେଉଛନ୍ତି ଏବଂ ସେ ସମସ୍ତ ପିଣ୍ଡକୁ ଗ୍ରହଣ କରିନିଅନ୍ତି । ପ୍ରତିବର୍ଷ ଭାଦ୍ରବ ମାସ ଶୁଭ ସୁନିଆ ଦିନ ଦେବୀଙ୍କର ସିଂହଧ୍ୱଜ ରଥର ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ଏହି ଦିବ୍ୟସିଂହଧ୍ୱଜ ରଥରେ ଆସୀନା ହୋଇ ମା' ବିରଜା ଆଶ୍ୱିନ ଶୁକ୍ଳ ପ୍ରତିପଦାଠାରୁ ନବମୀ ପର୍ଯ୍ୟନ୍ତ ନଅ ଥର ପରିକ୍ରମଣ କରନ୍ତି । ରଥଯାତ୍ରା ଶେଷ କରି ଦେବୀ ମହା ଆଡ଼ମ୍ବରରେ ଲାଖବିନ୍ଧା ପଡ଼ିଆକୁ ଯାଆନ୍ତି । ଲାଖବିନ୍ଧା ପର୍ବ ଶେଷରେ ଦେବୀଙ୍କର ମୂର୍ତ୍ତି ମନ୍ଦିରକୁ ଫେରିଆସେ । ଶାରଦୀୟ ଦୁର୍ଗାପୂଜାର ଅବ୍ୟବହିତ ପୂର୍ବରୁ ମା' ବିରଜା ଦେବୀଙ୍କର ଏହି ଅନନ୍ୟ ରଥଯାତ୍ରା ଦେଖିବାକୁ ବହୁ ଜନସମାଗମ ହୋଇ ଦେବୀ ପୀଠ ଉତ୍ସବ ମୁଖରିତ ହୋଇଉଠେ ।

ସୋମବଂଶୀ ରାଜା ଯଯାତି କେଶରୀ ବୈତରଣୀ କୂଳରେ ମହା ଦଶାଶ୍ୱମେଧ ଯଜ୍ଞ କରିଥିଲେ । ସେହି ସ୍ଥାନର ନାମ ଦଶାଶ୍ୱମେଧ ଘାଟ ନାମରେ ପରିଚିତ ଅଟେ । ଏହି ଘାଟରେ ବିରଜାଙ୍କର ସାତଟି ରୂପକୁ ପୂଜା କରାଯାଏ । ସେମାନେ ହେଲେ, ବୈଷ୍ଣବୀ, ଇନ୍ଦ୍ରାଣୀ, ନାରାୟଣୀ, କୌମାରୀ, ବ୍ରାହ୍ମଣୀ, ନରସିମା ଓ ମାହେଶ୍ୱରୀ ଅଟନ୍ତି । ହିନ୍ଦୁ ଧର୍ମ ଅନୁସାରେ ଏଠାରେ ବୁଡ଼ ପକାଇଲେ ସମସ୍ତ ପାପ ନାଶ ଯାଏ ବୋଲି କଥିତ ଅଛି । ବାରୁଣୀ ସ୍ନାନ ଦିନ ଏଠାରେ ବୁଡ଼ ପକାଇବା ପାଇଁ ପ୍ରବଳ ଜନସମାଗମ ହୁଏ । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି ଯେ, ଏଗାର ଅଙ୍କରେ ଯଯାତି କେଶରୀ ଜଗତଗୁରୁ ଶଙ୍କରାଚାର୍ଯ୍ୟଙ୍କ ଉପଦେଶାନୁକ୍ରମେ ସୋନପୁର ଗୋପାଳିରେ ପାତାଳି ଥିବା ବିଗ୍ରହମାନଙ୍କୁ ସଯତ୍ନରେ ବାହାର କରି ଲୁଗା ଗୁଡ଼ାଇ ପ୍ରଥମେ ସ୍ୱ ରାଜଧାନୀ ଯାଜପୁରକୁ ଆଣିଥିଲେ । ତେର ଅଙ୍କରେ ଠାକୁରଙ୍କୁ ଶ୍ରୀକ୍ଷେତ୍ର (ପୁରୀ) ମନ୍ଦିରରେ ସ୍ଥାପନ କରାଯାଇଥିଲା । ଏଥିରୁ ଅନୁମାନ କରାଯାଏ ଯେ ଦୀର୍ଘ ଦେଢ ବର୍ଷରୁ ଊର୍ଦ୍ଧ୍ୱ ସମୟ ଶ୍ରୀ ବିଗ୍ରହମାନେ ଯାଜପୁରର ଅସ୍ଥାୟୀ ମଣ୍ଡପରେ ବିରାଜମାନ ହୋଇଥିଲେ । ପରବର୍ତ୍ତୀ ସମୟରେ ଏହି ଦଶାଶ୍ୱମେଧ ଘାଟରେ ଜଗନ୍ନାଥ ମନ୍ଦିର ନିର୍ମାଣ ହୋଇଥିଲା ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଯାଜପୁରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ବରୀର ଆଶ୍ରମ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଏନ୍ତୁଡ଼ିଶାଳ ଥିଲା । ଗୋପବନ୍ଧୁ, ରମାଦେବୀଙ୍କ ସହିତ ଏହି ଅଞ୍ଚଳର ଅନେକ ବିଶିଷ୍ଟ ବ୍ୟକ୍ତିମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଯାଜପୁରର ଅବସ୍ଥିତି, ଜିଲ୍ଲାର ଆୟତନର ମଧ୍ୟସ୍ଥଳରେ ଅଟେ । ଯାଜପୁରର କଳିଙ୍ଗନଗର ଓଡ଼ିଶାର ଶିଳ୍ପାୟନର ପ୍ରମୁଖ କେନ୍ଦ୍ରସ୍ଥଳ ଅଟେ । ଏଠାରେ ୧୫ଟି ଇସ୍ପାତଶିଳ୍ପ ଗଢ଼ିଉଠିଛି, ଯାହାକି ଓଡ଼ିଶା ପାଇଁ ଗୌରବର ବିଷୟ ଅଟେ । ସୁକିନ୍ଦାରେ କ୍ରୋମାଇଟ୍ ଖଣିରୁ ବହୁଳ ପରିମାଣରେ କ୍ରୋମାଇଟ୍ ଉତ୍ପନ୍ନ କରାଯାଇ ନିଜର ଚାହିଦା ମେଣ୍ଟାଇବା ସହିତ ବିଦେଶକୁ ମଧ୍ୟ ରପ୍ତାନି ହେଉଛି । କୃଷିକ୍ଷେତ୍ରରେ ମଧ୍ୟ ଯାଜପୁର ରାଜ୍ୟର ଅଗ୍ରଣୀତମ ଜିଲ୍ଲା ହିସାବରେ ପରିଣତ ହେଉଛି । ବୈତରଣୀ ନଦୀ ପ୍ରବାହ ସହିତ ବିଭିନ୍ନ ସ୍ଥାନରେ କେନାଲ୍‌ର ସୁବିଧା ଯୋଗୁଁ ଏହା ଶସ୍ୟଶାମଳା ହୋଇଉଠିଛି । ଯାଜପୁର ଜିଲ୍ଲା ପର୍ଯ୍ୟଟନ କ୍ଷେତ୍ରରେ ବିରଜା କ୍ଷେତ୍ର, ରତ୍ନଗିରି ଓ ଉଦୟଗିରି (ବୌଦ୍ଧ କୀର୍ତ୍ତିରାଜ), ପ୍ରାକୃତିକ ପରିବେଶ ପରିପୂର୍ଣ୍ଣ ମହାବିନାୟକ ପୀଠ, ଶ୍ରୀଜଗନ୍ନାଥ ସଂସ୍କୃତି ସହିତ ଜଡ଼ିତ ଥିବା ଛତିଆବଟ ଆଶ୍ରମ, ସୁକିନ୍ଦାର ଅଶୋକ ଝର ଓ ପ୍ରାକୃତିକ ପରିବେଶରେ ମା' ଅଶୋକେଶ୍ୱରୀ ମନ୍ଦିର ବହୁ ପରିମାଣରେ ଦେଶୀ ଓ ବିଦେଶୀ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିଥା'ନ୍ତି । ଯାଜପୁର ଏକ ସର୍ବଧର୍ମ ସମନ୍ୱୟ ଭାଇଚାରାର ସହର ଅଟେ । ଯାଜପୁରରେ ଚାଲୁଥିବା ସାପ୍ତାହିକ ହାଟ ଓଡ଼ିଶାର ଏକ ପୁରାତନ ଓ ବଡ଼ ହାଟର ମାନ୍ୟତା ପାଇଛି । ଶିକ୍ଷା କ୍ଷେତ୍ରରେ ଏହି ଜିଲ୍ଲାରେ ବିଭିନ୍ନ ସ୍ଥାନରେ ସ୍କୁଲ୍, କଲେଜ ଓ



ମହାବିଦ୍ୟାଳୟ ଗଢ଼ିଉଠିଛି । ସ୍ୱାସ୍ଥ୍ୟ ସେବାରେ ଯାଜପୁରର ସଦର ମହକୁମାରେ ଏକ ବିରାଟ ଚିକିତ୍ସାଳୟର ବିଭିନ୍ନ ବିଭାଗରେ ଅଭିଜ୍ଞ ଡାକ୍ତରମାନେ ଅବସ୍ଥାପିତ ହୋଇଛନ୍ତି । ଯାଜପୁରରେ ପ୍ରତିଷ୍ଠା ହୋଇଥିବା ମିନି ଷ୍ଟାଡ଼ିୟମ କ୍ରୀଡ଼ା କ୍ଷେତ୍ରରେ ବହୁତ ଉନ୍ନତି ଆଣିଛି । ଯୁବ ଛାତ୍ରଛାତ୍ରୀମାନେ ଏଠାରେ ବିଭିନ୍ନ ପ୍ରକାର କ୍ରୀଡାର ସୁବିଧା ସୁଯୋଗ ପାଉଛନ୍ତି । ଯାଜପୁରର କୁସୁମା ହ୍ରଦର ଚାରିପଟେ ଏକ ଫାଇନାନ୍ସିଆଲ୍ ହବ୍ ହେବାର ଯୋଜନା ଅଛି, ଯାହାକି ଅର୍ଥନୀତିର ଉନ୍ନତି ପାଇଁ ବିଶେଷ ଭାବରେ ସହାୟକ ହୋଇପାରିବ । ସର୍ବଶେଷରେ ଯାଜପୁର ଏକ ଐତିହାସିକ, ସାଂସ୍କୃତିକ ଓ ଶିଳ୍ପଭିତ୍ତିକ ନଗର ହିସାବରେ ଓଡ଼ିଶାରେ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଘର ନଂ-୧୨୯୧ (ଦ୍ୱିତୀୟ ପର୍ଯ୍ୟାୟ)
ଡୁମୁଡୁମା ହାଉସିଂ ବୋର୍ଡ କଲୋନୀ
ଡୁମୁଡୁମା, ଭୁବନେଶ୍ୱର



# ବନ୍ଦନା

**ହଂସନାଥ ମୁହୁଲି**

ମା' ତୁମେ ଆସନ୍ତ କି
ବର୍ଷା ବାହନରେ!
ଛମ ଛମ ପାଦ ପକାଇ
ଓହ୍ଲାଇ ଆସନ୍ତା ବର୍ଷା
ଭିଜାଇ ଦିଅନ୍ତା
ଶୁଷ୍କ ଭୂମି
ଜଗାଇ ଦିଅନ୍ତା ଜୀବନ ।
ବର୍ଷା ପରେ
ନାଚି ଉଠନ୍ତା ଶରତ
ନିର୍ମଳ ଆକାଶ ତଳେ
ଚହଲି ଉଠନ୍ତା
କାଶତଣ୍ଡୀ ଫୁଲର ଢେଉ
ହେମନ୍ତର
ଦୁର୍ବାଦଳରେ
ଝଲସି ଉଠନ୍ତା
କାକରର ମୋତି ।
ଶୀତରେ ଫୁଟି ଉଠନ୍ତା
ସଂଖ୍ୟାହୀନ ଫୁଲ
ବିସ୍ତୃତ ବିସ୍ତୃତ ପ୍ରାନ୍ତରକୁ
ରଙ୍ଗେଇ ଦିଅନ୍ତା
ସତେ ଯେମିତି ବର୍ଷା ପରେ
ଆକାଶ ବୁକୁରେ
ଇନ୍ଦ୍ରଙ୍କର ଧନୁ ।
ଶୀତ ପରେ ଧରଣୀକୁ
ଓହ୍ଲାଇ ଆସନ୍ତା
ଧିର ପାଦରେ
ସୌନ୍ଦର୍ଯ୍ୟର ଅଧିପତି
ଋତୁରାଜ ବସନ୍ତ
ମଧୁପର ଗୁଣୁଗୁଣୁ ଗାନରେ
ହସି ହସି ନାଚି ଯା'ନ୍ତେ
ପାଖୁଡାରେ ଫୁଲସବୁ ।
ଆଉ ତା'ପରେ
ନିଦାଘ ଆସିଲେ ବି
ନିଆଁଝୁଲ ହୋଇ
ସହ୍ୟ ହୁଅନ୍ତା ଧରଣୀକୁ
ଜୀବଜଗତ ପାଇଁ
ରୁହନ୍ତାନି
ଅଂଶୁଘାତର ଭୟ ।
ଛଟପଟ ହୋଇ
ପାଣି ଟୋପାଏ ପାଇଁ
ପଡନ୍ତାନି ହାହାକାର ।
ସଭିଏଁ ଆଶ୍ୱସ୍ତ ହୁଅନ୍ତେ
ସଜଳ ପ୍ରକୃତିର
ସୁନ୍ଦର ରୂପରେ
ଝଲସି ଉଠନ୍ତା ଆଖି
ପୂରି ଉଠନ୍ତା ଆତ୍ମା ।
ତା'ରି ଭିତରେ
ଦୁର୍ଗତିନାଶିନୀ
ମା' ତୁମେ ଆସନ୍ତ କି
ବର୍ଷା ବାହନରେ!

ଖଣ୍ଡଗିରି (ଡୁମଡୁମା-କ), ଭୁବନେଶ୍ୱର – ୭୫୧୦୩୦





# ଜୟପୁରର ଶକ୍ତିପୀଠ ଭଗବତୀ

ଡକ୍ଟର ପ୍ରମୋଦିନୀ ହୋତା

ସତ୍, ଚିତ୍, ଆନନ୍ଦ, ଇଚ୍ଛା ଶକ୍ତି, କ୍ରିୟାଶକ୍ତି, ଜ୍ଞାନଶକ୍ତିର ସ୍ୱରୂପା ଆଦ୍ୟାଶକ୍ତି ମହାମାୟୀ, ମହାମାୟା ତତ୍ତ୍ୱ ହିଁ ତନ୍ତ୍ରଶାସ୍ତ୍ର । ମହାମାୟା ତତ୍ତ୍ୱ ମହାଲକ୍ଷ୍ମୀ, ମହା ସରସ୍ୱତୀ, ମହାକାଳୀ, ମହାଲକ୍ଷ୍ମୀ ରାଜସୀ ଓ ଯଦୁର୍ବେଦରୂପା , ମହାକାଳୀ ତାମସା ଓ ରକ୍ ବେଦରୂପା, ମହାସରସ୍ୱତୀ ସାତ୍ତ୍ୱିକା ଓ ସାମ ବେଦ ରୂପା, ମା'ଭଗବତୀ ହେଉଛନ୍ତି ମହାକାଳୀ ମହାଲକ୍ଷ୍ମୀ, ମହାସରସ୍ୱତୀ ରୂପରେ ପ୍ରକାଶିତ ହୋଇ ଷୋଡଶ ଭୁଜାରେ ଆବିର୍ଭୂତା ହୋଇଛନ୍ତି ।

### ଆଗମନର କିମ୍ବଦନ୍ତୀ

ପୂର୍ବେ ଜୟପୁର ସହରରେ ଜୈନ ଧର୍ମାବଲମ୍ବୀମାନେ ବାସ କରୁଥିଲେ । ଜୟପୁର ଜମିଦାରୀରେ ଜୟନ ନାମକ ଏକ ପଲ୍ଲୀ ରହିଥିଲା । ଜୟନ ନାମ ପରବର୍ତ୍ତୀ ସମୟରେ ଜୈନ ନଟର ଶେଷରେ ଆଜିର ଜୟନଗର ନାମରେ ନାମିତ ହୋଇଥିଲା । ଜୟପୁର ରାଜ ପରିବାରର ଅଧିଷ୍ଠାତ୍ରୀ ଦେବୀ କନକ ଦୁର୍ଗା, ନାରାୟଣ ମନ୍ଦିର ସାହିର ଭଗବତୀ ପୀଠ, ପୁରୁଣା ଗଡର ଦେବୀ ଦକ୍ଷିଣ କାଳୀ ପୀଠ, ପ୍ରାଚୀନ ତମ ଦେବୀପୀଠ ନାମରେ ପରିଗଣିତ ହୋଇଥାଏ । ଦେବୀଙ୍କ ପୀଠରେ ଧାର୍ମିକ ଚିନ୍ତାଧାରା ପ୍ରତିଫଳିତ ହୋଇଥାଏ ।



ଇତିହାସ ପୃଷ୍ଠାକୁ ଅବଲୋକନ କଲେ ଜଣାଯାଏ ଭଗବତୀ ମୂର୍ତ୍ତି ଅଷ୍ଟମ ଖ୍ରୀଷ୍ଟାବ୍ଦ ପୂର୍ବର । ପୂର୍ବେ ଜୈନ ଧର୍ମାବଲମ୍ବୀ ଦ୍ୱାରା ଜାମୁଣ୍ଡା ଗ୍ରାମରେ ଦେବୀ ଭଗବତୀ ଏବଂ ଭୈରବ ଦେବତାଙ୍କ ସହିତ ପୂଜା ପାଉଥିଲେ । ପରବର୍ତ୍ତୀ ସମୟରେ ଆଦିବାସୀମାନେ ଜୈନ ମୂର୍ତ୍ତି ଏକତ୍ରିତ କରି ବିଭିନ୍ନ ଦେବଦେବୀ ନାମରେ ପୂଜା କରି ଆସୁଥିଲେ । ନନ୍ଦପୁରର ମହାରାଜା ବୀର ବିକ୍ରମଦେବ, ନନ୍ଦପୁରଠାରୁ ନିଜର ରାଜଧାନୀ ଜୟପୁରକୁ ଆଣିଥିଲେ । ସେହି ସମୟରେ ଜୟପୁରରେ ଜୈନ ବସତି ରହିଥିଲା । ମହାରାଜା ବୀର

ବିକ୍ରମ ମା' ଭଗବତୀଙ୍କ ଭକ୍ତ ଥିଲେ । ମା' ଭଗବତୀ ଜାମୁଣ୍ଡାରେ ଭୈରବ ଦେବତା ସହିତ ପୂଜା ପାଇ ଆସୁଥିଲେ । ଗବେଷକମାନଙ୍କ ମତରେ ମା' ଭଗବତୀ ଜୈନମାନଙ୍କ ଦ୍ୱାରା ପୂଜିତ ମହାଶକ୍ତି ଓ ମହାପଦ୍ମିନୀ ଅଟନ୍ତି ।

**ମନ୍ଦିର ପ୍ରତିଷ୍ଠା ଓ ପ୍ରତିମାର ସ୍ୱରୂପ**

ମହାରାଜା ଜାମୁଣ୍ଡା ଗ୍ରାମରେ ପୂଜା ପାଉଥିବା ଭଗବତୀ ମୂର୍ତ୍ତିକୁ ବିଧି ପ୍ରକାରେ ପୂଜାର୍ଚ୍ଚନା କରି, ଶଙ୍ଖଧ୍ୱନୀ, ବ୍ରାହ୍ମଣଙ୍କ ବେଦ ଧ୍ୱନୀରେ ଜୟପୁର ଆଣି ରାଜବଂଶର ଇଷ୍ଟଦେବ ବଲ୍ଲଭ ନାରାୟଣ ଏବଂ ଜଗନ୍ନାଥ ମନ୍ଦିର ପରିସରରେ ସ୍ଥାପନ କରିଥିଲେ । ମହାରାଜା ଶତ ଚେଷ୍ଟା କରି ମଧ୍ୟ ଭୈରବ ଦେବୀଙ୍କ ମୂର୍ତ୍ତି ଆଣି ପାରିଲେ ନାହିଁ । ଶେଷରେ ଭୈରବ ଦେବତାଙ୍କୁ ଜାମୁଣ୍ଡାରେ ପୂଜା କରାଗଲା । ମା' ଭଗବତୀ ସେହିଦିନଠାରୁ ଦେବୀ ପୀଠ ଭାବରେ ପୂଜା ପାଇ ଆସୁଛନ୍ତି । ମା' ଭଗବତୀଙ୍କ ମୂର୍ତ୍ତି ପ୍ରସ୍ତର ନିର୍ମିତ ଷୋଡଶ ଭୁଜା । ଏହି ମୂର୍ତ୍ତି ସମ୍ମୁଖରେ ରହୁଛନ୍ତି ବାହାନସ୍ୱରୂପ କେଶରୀ ଦେବୀ, ଧ୍ୟାନରେ ନିମଗ୍ନ ମୂର୍ତ୍ତି । ଦେବୀଙ୍କ ଷୋଡଶ ଭୁଜାରୁ ଦଶଭୁଜା ମଧ୍ୟରେ ରହିଛି ଶଙ୍ଖ, ଚକ୍ର, କମଣ୍ଡଳୁ, ତ୍ରିଶୂଳ, ପତାକା, ଗଦା, ମୂଷଳ, ଢାଲ ଓ କଳସ । ଦେବୀଙ୍କ ଆସନ ମଣିଷକୃତି ସିଂହମୁଖୀ ଖୁରା, ମଝିରେ ସର୍ପାକୃତି ଏହି ଆସନ ଉପରେ ପଦ୍ମାସନ ମୁଦ୍ରାରେ ଦେବୀ ବିଦ୍ୟମାନ ହୋଇଛନ୍ତି, ଦେବୀ ଚାରୋଟି ହାତ ଚାରିମୁଦ୍ରା, ଦୁଇଟି ହାତ ପଦ୍ମାସନ ମୁଦ୍ରାରେ ଆସନ ଉପରେ ଉପବିଷ୍ଟ ହୋଇଛନ୍ତି । ଦେବୀଙ୍କ ଆଗରେ ପୂର୍ବ ଦିଗରେ ରହିଛନ୍ତି ଦୁଇ ଜଣ ଦ୍ୱାରପାଳ, ଠିଆ ହେବା ମୁଦ୍ରାରେ ଏବଂ ମନ୍ଦିର ଭିତରେ ଦୁଇଜଣ ଦ୍ୱାରପାଳ ରହିଛନ୍ତି ବସିଥିବା ମୁଦ୍ରାରେ । ଦେବୀଙ୍କ ସମ୍ମୁଖରେ ଗଣେଶ ମୂର୍ତ୍ତି ବିଦ୍ୟମାନ । ପ୍ରତ୍ୟେକ ଦିନ ଦେବୀଙ୍କ ନିକଟରେ ଦ୍ୱାରପାଳ ପୂଜା, କୁମ୍ଭ ସ୍ଥାପନ, ବରୁଣ ପୂଜା, ପଞ୍ଚ ଉପଚାର ପୂଜା, ଆଳତି, ନିସଙ୍କୁଡି ଭୋଗ, ଅନ୍ନ ଭୋଗ ପହଡ ହୋଇଥାଏ ଏବଂ ସନ୍ଧ୍ୟାରେ ଆଳତି, ପୂର୍ଣ୍ଣ ଅନ୍ନ ଭୋଗ ଓ ରାତ୍ରରେ ପହଡ ହୋଇଥାଏ ।

**ବାର୍ଷିକ ପୂଜା ଉତ୍ସବ**

ମନ୍ଦିରରେ ଦୁଇଟି ଉତ୍ସବ ହୋଇଥାଏ । ଗୋଟିଏ ହେଉଛି ବାସନ୍ତିଙ୍କ ଦଶହରା, ଅନ୍ୟଟି ହେଉଛି ଶାରଦୀୟ ଦଶହରା ଉତ୍ସବ ପାଳନ କରାଯାଏ । ବାସନ୍ତିକ ଦଶହରା ଚୈତ୍ର ମଙ୍ଗଳବାର ଚୈତ୍ର ଶୁକ୍ଳପକ୍ଷଠାରୁ ନବମୀ ପର୍ଯ୍ୟନ୍ତ ମହାଆଡମ୍ବର ସହକାରେ ପାଳନ କରାଯାଏ । ଏହି ପର୍ବରେ ସଂପୂର୍ଣ୍ଣ ଚଣ୍ଡୀପାଠ ନଅଦିନ ବ୍ୟାପୀ କରାଯାଏ । ବାସନ୍ତୀଙ୍କ ଦଶହରାରେ ରାଜାଙ୍କ ଅମଳରୁ ଛପନ ଭୋଗ ପ୍ରସ୍ତୁତ କରାଯାଇଥାଏ । ଶାରଦୀୟ ଦଶହରା ପାର୍ବଣ ସମୟରେ ଆଶ୍ୱିନ ମାସ କୃଷ୍ଣ ପକ୍ଷ ଅଷ୍ଟମୀ ତିଥି ପର୍ଯ୍ୟନ୍ତ ଷୋଡଶ ଦିନାତ୍ମକ ପୂଜାକ୍ରମ ଅନୁଷ୍ଠିତ ହୋଇଥାଏ । ମାତା ଭଗବତୀଙ୍କୁ ମହାନବମୀ ତିଥିରେ ସୁନାବେଶ କରାଯାଇଥାଏ । ପୂଜାରୀଙ୍କ ମତାନୁସାରେ ସ୍ନାନ ଦର୍ଶନ ସମୟରେ ହିଁ ଦେବୀଙ୍କ ଷୋଡଶ ଭୁଜ ଦୃଷ୍ଟିଗୋଚର ହୋଇଥାଏ । ସର୍ବସାଧାରଣ ଏହି ସୁଯୋଗ ପାଇ ପାରନ୍ତି ନାହିଁ । ଭଗବତୀ ମନ୍ଦିରରେ ତନ୍ତ୍ରଓ୍ୱ ମନ୍ତ୍ରରେ ପୂଜା କରାଯାଥାଏ । ଶାରଦୀୟ ଦଶହରାରେ ଷୋଡଶ ଉପଚାର ପୂଜା କରାଯାଏ । ପ୍ରାଚୀନ ଯୁଗରୁ ମା' ଭଗବତୀଙ୍କ ଷୋଡଶ ଦିନାତ୍ମକ, ନବରାତ୍ରୀ, ତ୍ରିଦିନାତ୍ମକ ମହାପୂଜା ଅନୁଷ୍ଠିତ ହୋଇଆସୁଛି । ପୀଠରେ ଷୋଡଶ ଦିବସ ମୂଳାଷ୍ଟମୀର ୧୬ଦିନ ଶାରଦୀୟ ପୂଜା ହୋଇଥାଏ । ପ୍ରଥମ ଦିନ ସହସ୍ର କୁମ୍ଭାଭିଷେକ ଏବଂ ଦୀପ ଉତ୍‌ଥାପନ ହୋଇଥାଏ । ପ୍ରତ୍ୟହ ଚଣ୍ଡିପୂଜା, ଦ୍ୱାରପାଳ ପୂଜା, ହୋମ, ତର୍ପଣ, ଜପ, ମାର୍ଜନ କରାଯାଏ, ତା'ପରେ ବଟୁକ ବଳି ଷୋହଳଦିନ ଦିଆଯାଏ । ବଟୁକ ବଳିରେ ବଳି ସ୍ୱରୂପ ଚାଉଳ, ବିରି, କାକୁଡିକୁ ବଳି ଦିଆଯାଏ । ପ୍ରଥମେ ଭଗବତୀ ପୀଠରୁ ଆଜ୍ଞାମାଳ ନେଇ ଦଶହରା ପୂଜା ନିମନ୍ତେ ସମସ୍ତ ଦେବଦେବୀଙ୍କୁ ନିମନ୍ତ୍ରଣ କରାଯାଏ । ବଟୁକ ବଳି ପରେ ଗଣେଶ, କ୍ଷେତ୍ରପାଳ, ନବଗ୍ରହଙ୍କୁ ପୂଜା କରାଯାଏ । ରାସ୍ତାରେ ଯିବା ଆସିବା ଜନସାଧାରଣ ଯେପରି ଲୋଭ, ମୋହ, ମାୟାରୁ ମୁକ୍ତ ହେବେ ସେଥିପାଇଁ ପୂଜା କରାଯାଏ । ଯୋଗିନୀମାନଙ୍କୁ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଇଥାଏ । ଶାରଦୀୟ ନବରାତ୍ରିରେ ଦେବୀ ନଗର ପରିକ୍ରମା କରିଥାନ୍ତି ।

ବିଧି ବିଧାନ ଅନୁସାରେ ସାହିରେ ଆଳତି ଏବଂ ଭୋଗ କରାଯାଏ । ମହାଷ୍ଟମୀ ଦିନ ଜାମୁଣ୍ଡାରୁ ଭୈରବ ଦେବତାଙ୍କ ଆଗମନ ହୋଇଥାଏ । ଜୟପୁର ଭଗବତୀ ପୀଠକୁ ବିଭିନ୍ନ ଗ୍ରାମରୁ ଲାଠି, ଛତ୍ର ଧରି ପୂଜାରୀ, ଦିସାରୀ, ନାୟକ, ଶିରା ଆସିଥାନ୍ତି । ଅଷ୍ଟମୀ, ନବମୀ, ଦଶହରା ପର୍ଯ୍ୟନ୍ତ



ଭୈରବ ଦେବତା, ଭଗବତୀ ପୀଠରେ ମା' ଭଗବତୀଙ୍କ ସହିତ ଏକାଠି ଭୋଗ ନୈବେଦ୍ୟ ସହକାରେ ପୂଜା ପାଇଥାନ୍ତି । ଦଶହରା ଦିନ ରାତ୍ରରେ ଭୈରବ ଦେବତା ନିଜ ବାସ ପୀଠ ଜାମୁଣ୍ଡାକୁ ଫେରିଥାନ୍ତି । ଯିବା ସମୟରେ ଭୈରବ ଦେବତାଙ୍କୁ ଭେଟି ବିଭିନ୍ନ ଉପଢୌକନ ଦିଆଯାଏ । ଏହାକୁ ମେଳଣ କୁହାଯାଏ । ପ୍ରଚଳିତ ପରମ୍ପରା ତିନିଶହ ବର୍ଷରୁ ଊର୍ଦ୍ଧ୍ୱ ଅଟେ । ମାତୃଶକ୍ତିର ପ୍ରତୀକ ମା' ଭଗବତୀ । ଏହି ଶକ୍ତି ହେଉଛନ୍ତି ବୁଦ୍ଧି, ନିଦ୍ରା, ଛାୟା, ଶକ୍ତି, କ୍ଷାନ୍ତି, ଲଜ୍ଜା, ଶାନ୍ତି, ଶ୍ରଦ୍ଧା, କ୍ରାନ୍ତି ଆଦି ଜଗତଜନନୀ ରୂପେ ପ୍ରତିଭାତ । ଦଶହରା ପର୍ବରେ ପୂର୍ବ ପ୍ରଚଳିତ ପ୍ରଥାନୁସାରେ ଗ୍ରାମ ଦେବଦେବୀଙ୍କର ପ୍ରତୀକ ରଙ୍ଗୀନ ବାନା ଯୁକ୍ତ ବାଉଁଶ ଲାଠିକୁ ହାତରେ ଧରି ପ୍ରତ୍ୟେକ ଗାଁର ମୁଖିଆ, ନାୟକ, ଶିରା ପୂଜାରୀ ଜୟପୁର ସହରକୁ ଆସିଥାନ୍ତି । ବିଜୟା ଦଶମୀ ଦିନ ସମସ୍ତ ଲାଠି ବାଙ୍କ ମଠରେ ପୂଜା ପାଇବା ପରେ ଶୋଭାଯାତ୍ରାରେ ପୁରୁଣାଗଡ ସ୍ଥିତ କାଳିକା ମନ୍ଦିରକୁ ଯାଇଥାନ୍ତି । ସେଠାରେ ପାରମ୍ପରିକ ରୀତିରେ ପୂଜାର୍ଚ୍ଚନା କରିବା ପରେ ସମସ୍ତେ ଭଗବତୀ ପୀଠକୁ ଆସିଥାନ୍ତି । ଭଗବତୀ ମନ୍ଦିରରେ ପୂଜାର୍ଚ୍ଚନା ହୋଇଥାଏ । ଭୈରବ ଲାଠି ସହିତ ବିରାଟ ପଟୁଆରରେ ସମସ୍ତ ଲାଠି କନକ ଦୁର୍ଗା ପୀଠକୁ ଯାଇଥାନ୍ତି । ରାଜ ନଅରରେ ପୂଜାର୍ଚ୍ଚନା ହୁଏ । ସେଠାରୁ ନୃତ୍ୟ, ଗୀତ ବାଦ୍ୟ ସହିତ ବଡ ଆଡମ୍ବର ସହକାରେ ସମସ୍ତ ଲାଠିଗୁଡିକ ତିନି ପୀଠର ଦେବୀ ପ୍ରତିମୂର୍ତ୍ତି ସହିତ ଦଶହରା ପଡିଆକୁ ଯାଇଥାନ୍ତି । ଦଶହରା ପଡିଆକୁ ବୈପାରୀଗୁଡାରୁ ବୀରଖମ୍ଭ ଠାକୁରାଣୀ ପୀଠରୁ ପାରମ୍ପରିକ ଫୁଲ ଚାଙ୍ଗୁଡି ଆସିଥାଏ । ସେହି ଫୁଲରେ ଦଶହରା ପଡିଆରେ ଅପରାଜିତା ପୂଜା ହୋଇଥାଏ । ପୂଜାର୍ଚ୍ଚନା ପରେ ବିଧାୟକ ଏବଂ ରାଣୀ ଓ ଜିଲ୍ଲାପାଳ, ଲାଠି ବାହକମାନଙ୍କୁ ଶିରପା ଦେଇ ସମ୍ମାନିତ କରିଥାନ୍ତି । ଆଦିବାସୀମାନଙ୍କ ପାରମ୍ପରିକ ନୃତ୍ୟଗୀତ ବାଦ୍ୟରେ ଦଶହରା ପଡିଆ ପ୍ରକମ୍ପିତ ହୋଇଥାଏ । ସଭା ଶେଷ ହେବା ପରେ ସମସ୍ତ ଗ୍ରାମର ଲାଠି ବାହକ କନକ ଦୁର୍ଗା, ଭଗବତୀ, କାଳିକା ମନ୍ଦିରରୁ ଆସିଥିବା ପଟୁଆର ସହିତ ସମସ୍ତେ ନିଜ ନିଜ ଗ୍ରାମର ପୀଠକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

ପାଇଲ ସାହି, ଜୟପୁର, କୋରାପୁଟ





# ଶ୍ରୀଦୁର୍ଗା ସପ୍ତଶତୀରେ ଯଶୋଦାନନ୍ଦିନୀ ଦୁର୍ଗା : ଏକ ସଂକ୍ଷିପ୍ତ ସୂଚନା

ଡକ୍ଟର ସୂର୍ଯ୍ୟମଣି ଖୁଣ୍ଟିଆ

ଶ୍ରୀଦୁର୍ଗା ସପ୍ତଶତୀ ପାଠ କଲାବେଳେ ଆମ୍ଭେମାନେ ଏହାର ଦଶମ ଅଧ୍ୟାୟ ଶେଷସୁଦ୍ଧା ଶୁମ୍ଭ ନିଶୁମ୍ଭଙ୍କର ବଧ ପ୍ରସଙ୍ଗ ପାଠ କରିବାକୁ ପାଉ । ତା'ପୂର୍ବରୁ ବିନାଶ ହୋଇଛନ୍ତି ଦୁଷ୍ଟ ମହିଷାସୁର, ଧୂମ୍ରଲୋଚନ, ଚଣ୍ଡମୁଣ୍ଡ, ରକ୍ତବୀଜ ଓ



ଶେଷରେ ବିନାଶ ଘଟିଛି ଶୁମ୍ଭ ନିଶୁମ୍ଭଙ୍କର । ଦେବୀ ମହାମାୟା ପ୍ରଥମେ ଦେବତାମାନଙ୍କ ତେଜରୁ ଆବିର୍ଭୂତା ହୋଇ ଦେବତାମାନଙ୍କଦ୍ୱାରା ପ୍ରଦତ୍ତ ଅସ୍ତ୍ରଶସ୍ତ୍ରଦ୍ୱାରା ସଜ୍ଜିତା ହୋଇ ମହିଷାସୁରକୁ ବଧ କରିଛନ୍ତି । ତା'ପରେ ଦେବତାମାନଙ୍କ ଅନୁରୋଧରେ ଆସିଛନ୍ତି ଅମ୍ବିକା ରୂପରେ । ସେ ଆସିଛନ୍ତି ଦୁର୍ଗାଂଶସମ୍ଭୂତା ରୂପନେଇ, ଧୂମ୍ରଲୋଚନ ଓ ଚଣ୍ଡମୁଣ୍ଡକୁ ବିନାଶ କରି ଚଣ୍ଡିକା ନାମରେ ବିଖ୍ୟାତ ହୋଇଛନ୍ତି । ପୁଣି ତାଙ୍କ ଅଂଶରୁ ସୃଷ୍ଟି ହୋଇଛନ୍ତି 'କାଳୀ', ସେ ରକ୍ତବୀଜର ରକ୍ତକୁ ପାନ କରିଛନ୍ତି । ନିଶୁମ୍ଭର ବଧବେଳେ ମଧ୍ୟ ଅମ୍ବିକା ଚଣ୍ଡିକାଙ୍କ ପାଖରେ ଛିଡାହୋଇ ରାକ୍ଷସମାନଙ୍କର ବିନାଶ କରିଛନ୍ତି । ତାଙ୍କର ନାମ ହୋଇଛି 'ଚାମୁଣ୍ଡା' । ପୁଣି ଅମ୍ବିକାଙ୍କୁ ସାହାଯ୍ୟ କରିବା ପାଇଁ ଆସିଛନ୍ତି ବିଭିନ୍ନ ଦେବତାଙ୍କର ଶକ୍ତିମାନେ, ସେମାନେ ହୋଇଛନ୍ତି ସପ୍ତମାତୃକା,-ଯଥା ବ୍ରହ୍ମାଣୀ, ମାହେଶ୍ୱରୀ, ବୈଷ୍ଣବୀ, ବାରାହୀ, ନାରସିଂହୀ, ଐନ୍ଦ୍ରୀ (ଇନ୍ଦ୍ରାଣୀ), କୌମାରୀ ନିଜେ ଚଣ୍ଡିକା ଶିବଙ୍କୁ ଶୁମ୍ଭ ନିଶୁମ୍ଭଙ୍କ ନିକଟକୁ ଦୂତ କରି ପଠାଇ ଶିବଦୂତୀର ନାମ ଧାରଣ କରିଛନ୍ତି ।

ସେ ଯା'ହେଉ ଏମାନେ ସମସ୍ତେ ମିଶି ଅସୁରମାନଙ୍କୁ ବିନାଶ କରି ପୃଥିବୀକୁ ଅତ୍ୟାଚାରମୁକ୍ତ କରିଛନ୍ତି । ପୃଥିବୀ ଆଶ୍ୱସ୍ତ ହୋଇଛି । ତେବେ ଶୁମ୍ଭ ସହିତ ଯୁଦ୍ଧ କଲାବେଳେ ଦେବୀ ଚଣ୍ଡିକା ମାତୃଗଣଙ୍କୁ ଓ ଚାମୁଣ୍ଡା କାଳୀଙ୍କୁ ନିଜ ଭିତରେ ଏକାକାର କରିନେଇଛନ୍ତି । ସେ କେବଳ ଏକା ଓ ଅଭିନ୍ନା ବୋଲି ପ୍ରମାଣିତ କରିଦେଇଛନ୍ତି ।

ବାରମ୍ବାର ଦେବତାମାନଙ୍କର ଅନୁରୋଧ ରକ୍ଷାକରି ଦେବୀ ମହାମାୟା ବାରମ୍ବାର ବିଭିନ୍ନ ରୂପରେ ଆସି





ଦେବତାମାନଙ୍କର କାର୍ଯ୍ୟସାଧନ କରିଛନ୍ତି ଓ ଦେବତାମାନଙ୍କୁ ଅନୁଗୃହୀତ କରିଛନ୍ତି । ତେଣୁ ଅସୁର ବିନାଶନ ପର୍ବ ଶେଷରେ ଦେବତାମାନେ ଦେବୀଙ୍କୁ କୃତଜ୍ଞତା ଜଣାଇବା ସ୍ୱାଭାବିକ । ଦେବତାମାନେ ତାହା ହିଁ କରିଛନ୍ତି । ଏକଦା ଦେବତାମାନେ ନିଜ ନିଜ ତେଜରୁ ଯେଉଁ ଦେବୀଙ୍କୁ ଜାତ କରାଇଲେ ସେଇ ଦେବୀ ହେଲେ ଦୁର୍ଗତିନାଶିନୀ ଦୁର୍ଗା । ମହିଷାସୁର ବଧ ପରେ ଦେବତାମାନେ ମିଳିତ ଭାବରେ ଦେବୀଙ୍କୁ ସ୍ତୁତି କରିଛନ୍ତି । ଶ୍ରୀଦୁର୍ଗା ସପ୍ତଶତୀର ପଞ୍ଚମ ଅଧ୍ୟାୟରେ ଏହି ସ୍ତୁତିର ଉପସ୍ଥାପନ କରାଯାଇଛି । ଏହି ସ୍ତୁତି ବା ସ୍ତବର ଫଳସ୍ୱରୂପ ଆବିର୍ଭାବ ଘଟିଛି ଅମ୍ବିକାଙ୍କର, ଯୁଦ୍ଧର ଧାରା ଆରମ୍ଭ ହୋଇଛି । ଦଶମ ଅସୁର ମାରଣ ଶେଷ ହେବା ପରେ ଦେବତାମାନେ ପୁଣି ଦେବୀଙ୍କୁ ସ୍ତୁତି କରିଛନ୍ତି ।

ଶ୍ରୀଦୁର୍ଗା ସପ୍ତଶତୀ ମହାଗ୍ରନ୍ଥରେ ଏହା ଦ୍ୱିତୀୟ ସ୍ତୁତି , ମନେରଖିବାକୁ ହେବ ଆମର କଳ୍ପିତ ଦେବତାମାନେ ସ୍ୱର୍ଗରେ ରହିବା ସଂଗେ ସଂଗେ ନିଜ ନିଜର ସୁରକ୍ଷା କଥା ସବୁବେଳେ ଚିନ୍ତା କରିଥାଆନ୍ତି । ଅନ୍ୟ ପକ୍ଷରେ ଅସୁର ବା ରାକ୍ଷସମାନେ ବାରମ୍ବାର ସ୍ୱର୍ଗ ଆକ୍ରମଣ କରନ୍ତି । ଦେବତାମାନେ ଅମର ହେଲେ ହେଁ ସୁରକ୍ଷିତ ନୁହଁନ୍ତି । ତେବେ ସେମାନଙ୍କର ସୁରକ୍ଷା କିଏ କରିବ ? ସେମାନଙ୍କର ସୁରକ୍ଷାର ଦାୟିତ୍ୱ ନେଇଛନ୍ତି ଦେବୀ ମହାମାୟା–ଦୁର୍ଗା–ଅମ୍ବିକା–ଚଣ୍ଡିକା । ତେଣୁ ଦେବୀଙ୍କୁ କୃତଜ୍ଞତା ଜଣାଇବା ପାଇଁ ଦେବୀଙ୍କ ନିକଟକୁ ଆସିଛନ୍ତି । ଏଥର ଦେବତାମାନଙ୍କର ନେତୃତ୍ୱ ନେଇଛନ୍ତି ଅଗ୍ନିଦେବତା ।

ଦେବତାମାନେ ଦେବୀଙ୍କର ବିକଶିତ ମୁଖ କମଳକୁ ଚାହିଁ ଆହ୍ଲାଦିତ ହୋଇଛନ୍ତି । ଦେବୀ ନିଜର ଇଚ୍ଛାକୁ ପୂର୍ଣ୍ଣ କରିଥିବାରୁ ପ୍ରସନ୍ନ ମୁଦ୍ରାରେ ରହିଛନ୍ତି ।

ଏବେ ଦେବତାମାନେ ଦେବୀଙ୍କୁ ସ୍ତୁତି କରିବାରେ ଲାଗିଛନ୍ତି । ଦେବତାମାନେ ଦେବୀଙ୍କର ଗୁଣଗାନ କରି କହିଛନ୍ତି, 'ଶରଣାଗତମାନଙ୍କର ଦୁଃଖକୁ ଦୂର କରିବାକୁ ସମର୍ଥା ଦେବୀ । ଆମ୍ଭମାନଙ୍କ ଉପରେ ପ୍ରସନ୍ନ ହୁଅ । ସଂପୂର୍ଣ୍ଣ ଜଗତର ମାତା ତୁମେ, ତୁମେ ବିଶ୍ୱେଶ୍ୱରୀ, ଏ ବିଶ୍ୱର ରକ୍ଷା କର । ତ୍ୱମୀଶ୍ୱରୀ ଦେବୀ, ଚରାଚରସ୍ୟ । ୧୧/୩/୨

ତୁମେ ଚରାଚର ଜଗତର ଇଶ୍ୱରୀ<br>
ଆଧାରଭୂତା ଜଗତସ୍ତ୍ୱମେକା<br>
ମହୀସ୍ୱରୂପେଣ ଯତଃ ସ୍ଥିତାସି । ୧୧/୪/୨

ତୁମେ ଏ ଜଗତର ଏକମାତ୍ର ଆଧାର । କାରଣ ତୁମେ ହିଁ ପୃଥିବୀ ରୂପରେ ଅବସ୍ଥାନ କରୁଛ ।

ତୁମେ ଅନନ୍ତ ବୀର୍ଯ୍ୟା । ଅର୍ଥାତ୍ ତୁମର ପରାକ୍ରମର ଅନ୍ତ ନାହିଁ, ତୁମର ପରାକ୍ରମକୁ କେହି ଲଙ୍ଘନ କରିପାରିବେ ନାହିଁ । ତୁମେ ଜଳରୂପରେ ସମସ୍ତ ଜଗତର ତୃପ୍ତି ସାଧନ କରୁଛ । ତୁମେ ଅନନ୍ତ ବଳ ସମ୍ପନ୍ନା ବୈଷ୍ଣବୀ ଶକ୍ତି । ବିଶ୍ୱସ୍ୟ ବୀଜ ପରମାସିମାୟା, ବିଶ୍ୱର ବୀଜସ୍ୱରୂପା । ଏହି ବିଶ୍ୱ ସୃଷ୍ଟିର ମୂଳ କାରଣ ତୁମେ, ତୁମେ ମାୟା, ତୁମେ ଏ ସମସ୍ତ ଜଗତକୁ ମୋହିତ କରି ରଖିଛ, ତୁମେ ପ୍ରସନ୍ନ ହେଲେ ଏ ପୃଥିବୀର ମୋକ୍ଷପ୍ରାପ୍ତି ହୁଏ । ସମସ୍ତ ବିଦ୍ୟାରେ ତୁମର ଭିନ୍ନଭିନ୍ନ ସ୍ୱରୂପ ଅଟେ । ଜଗତରେ ଯେତେ ସ୍ତ୍ରୀ ଅଛନ୍ତି, ସେମାନେ ସମସ୍ତେ ତୁମରି ମୂର୍ତ୍ତି । ହେ ଜଗଦମ୍ବେ ! ତୁମେ ଏକାକୀ ଏ ସମସ୍ତ ଜଗତକୁ ପରିବ୍ୟାପ୍ତ କରି ରଖିଛ ।'

ଦେବତାମାନେ ସ୍ତୁତି କରିବାରେ ଲାଗିଛନ୍ତି । କାରଣ ସେମାନେ ଏବେ ଭଲଭାବରେ ଜାଣି ଯାଇଛନ୍ତି ଯେ କେବଳ ମହାମାୟାଙ୍କ ବିନା କେହି ସେମାନଙ୍କୁ ରକ୍ଷା କରିପାରିବେ ନାହିଁ, ଦେବତାମାନେ ଦେବୀଙ୍କୁ ମଙ୍ଗଳମୟୀ କହି ସ୍ତୁତି କରିଛନ୍ତି ।

ହେ ନାରାୟଣୀ, ତୁମେ ମଙ୍ଗଳମୟୀ, ତୁମେ ସମସ୍ତ ପ୍ରକାର ମଂଗଳ ପ୍ରଦାନ କାରିଣୀ । ତୁମେ କଲ୍ୟାଣକାରିଣୀ ଶିବା ଅଟ । ତୁମେ ସମସ୍ତଙ୍କୁ ପୁରୁଷାର୍ଥ ପ୍ରଦାନକାରିଣୀ, ତୁମେ ଶରଣାଗତ ବତ୍ସଳା, ତୁମେ ତ୍ରିନେତ୍ରଧାରିଣୀ ଗୌରୀ, ତୁମକୁ ନମସ୍କାର ।

ତୁମେ ମୂଳ ସଂହାର କାରିଣୀ ସନାତନୀ ଦେବୀ, ସମସ୍ତ ଗୁଣର ଆଧାର । ତୁମେ ଇନ୍ଦ୍ରାଣୀ ରୂପରେ ହଂସ ଟାଣୁଥିବା ରଥ ଉପରେ ବସି କମଣ୍ଡଳୁ ଜଳକୁ କୁଶରେ ସିଂଚନ କରି ଚାଲିଛ । ତୁମେ ମାହେଶ୍ୱରୀ ରୂପରେ ତ୍ରିଶୂଳ, ଚନ୍ଦ୍ରମା ଓ ସର୍ପ ଧାରଣ କରି ବୃଷଭ ପିଠିରେ ବସି ଜଗତକୁ





ଭ୍ରମଣ କରୁଥାଅ । ତୁମେ ପୁଣି ବୈଷ୍ଣବୀ ଶକ୍ତି । ଶଂଖ ଚକ୍ର ଗଦା ଓ ଶାରଂଶଧନୁ ଧାରଣ କରି ଜଗତର ମଙ୍ଗଳ କରିଥାଅ । ତୁମେ ପୁଣି ବାରାହୀ, ହାତରେ ତୁମର ଚକ୍ର, ତୁମେ ତୁମର ଥୋଡି ଉପରେ ପୃଥିବୀକୁ ଧାରଣ କରିଥିଲ । ହେ ନାରାୟଣୀ ! ତୁମେ ନାରସିଂହୀ ରୂପୀ କଲ୍ୟାଣମୟୀ ଶକ୍ତି, ତୁମ ହାତର ନଖରେ ରାକ୍ଷସମାନଙ୍କର ବିନାଶ କରିପାର । ମସ୍ତକରେ କିରୀଟ ବା ମୁକୁଟ, ହାତରେ ମହାବଜ୍ର, ଧାରଣ କରି ଇନ୍ଦ୍ରଙ୍କର ଶକ୍ତିରୂପୀ ଐନ୍ଦ୍ରୀ, ହେ ନାରାୟଣୀ ! ତୁମେ ଶିବ ଦୂତୀ ରୂପ ଧାରଣ କରିଥିବା ମହାସଂହାର କାରିଣୀ ଦେବୀ । ତୁମେ ମଧ୍ୟ ଚାମୁଣ୍ଡା ରୂପରେ ମୁଣ୍ଡମାଳ ଧାରଣ କରିଥିବା ମହାଦେବୀ । ତୁମକୁ ନମସ୍କାର, ତୁମେ ପୁଣି –

ଲକ୍ଷ୍ମୀ ଲଜ୍ଜେ ମହାବିଦ୍ୟେ ଶ୍ରଦ୍ଧେପୁଷ୍ଟିସ୍ୱଧେଧ୍ରୁବେ
ମହାରାତ୍ରି, ମହାବିଦ୍ୟେ, ନାରାୟଣୀ ନମସ୍ତୁତେ ।

୧୧/୨୨

ଲକ୍ଷ୍ମୀ, ଲଜ୍ଜା, ମହାବିଦ୍ୟା, ଶ୍ରଦ୍ଧା, ପୁଷ୍ଟି, ସ୍ୱଧା, ଧ୍ରୁବୀ । ମହାରାତ୍ରୀ ତଥା ମହା ଅବିଦ୍ୟା ରୂପିଣୀ ନାରାୟଣୀ । ତୁମେ ଅମୋଘ ବରଦାୟିନୀ । ତୁମେ ଦୟାକର ଦୟାକର ଏହିପରି ଭାବରେ ନିରବଚ୍ଛିନ୍ନ ସ୍ତୁତି କରିଚାଲିଛନ୍ତି ଦେବତାମାନେ । ବହୁ ଭାବରେ ଦେବୀଙ୍କର ଗୁଣଗାନ କରି ଜୟ ଜୟକାର କରିଛନ୍ତି ।

ଏ ସମଗ୍ର ବିଶ୍ୱର ପୀଡାହରଣ କାରିଣୀ ଦେବୀ । ଆମ୍ଭେମାନେ ତୁମର ଚରଣତଳେ ପଡିଅଛୁ । ଆମ୍ଭମାନଙ୍କ ଉପରେ ପ୍ରସନ୍ନ ହୁଅ । ହେ ପରମେଶ୍ୱରୀ ! ତୁମେ ତ୍ରିଲୋକବାସୀଙ୍କର ପୂଜନୀୟା, ପରମେଶ୍ୱରୀ ! ସମସ୍ତ ଲୋକଙ୍କୁ ବର ପ୍ରଦାନ କର ।

ଏବେ ଦେବୀ କହିବାକୁ ଆରମ୍ଭ କରିଛନ୍ତି । ଦେବୀ କହିଛନ୍ତି, ହେ ଦେବତାମାନେ ! ମୁଁ ବରଦେବାକୁ ପ୍ରସ୍ତୁତି । ତୁମମାନଙ୍କ ମଧ୍ୟରେ ଯେଉଁ ଇଚ୍ଛା ଅଛି, ସେହିପରି ବର ମାଗିନିଅ । ସଂସାରର ମଂଗଳ ପାଇଁ ମୁଁ ସେହି ବର ପ୍ରଦାନ କରିବି ।

ଦେବତାମାନେ କହିଛନ୍ତି ,

ସର୍ବ ବାଧା ପ୍ରଶମନଂ ତ୍ରୈଲୋକ୍ୟସ୍ୟା ଖିଳେଶ୍ୱରି
ଏବମେବ ତ୍ୱୟା କାର୍ଯ୍ୟମସ୍ମ ଦ୍ୱୈରିବିନାଶନମ୍ ।

୧୧/୩୯

ହେ ସର୍ବେଶ୍ୱରୀ ! ତୁମେ ଏହିପରି ଭାବରେ ତିନି ଲୋକର ସମସ୍ତ ବାଧାକୁ ଶାନ୍ତ କର ଓ ଆମର ଶତ୍ରୁମାନଙ୍କୁ ନାଶ କର । ଉତ୍ତରରେ ଦେବୀମୋହା କହିଛନ୍ତି ତାହା ଉପସ୍ଥାପନ କରିବା ମୂଳ ଉଦ୍ଦେଶ୍ୟ । ଦେବୀ କହିଛନ୍ତି,

ବୈବସ୍ୱତେଅନ୍ତରେ ପ୍ରାପ୍ତେ ଅଷ୍ଟାବିଂଶତିମେ ଯୁଗେ
ଶୁମ୍ଭୋ ନିଶୁମ୍ଭ ଶ୍ଚୈବାନ୍ୟା ବ୍ୟୁତ୍ୟସ୍ୟେତେ ମହାସୁରୈ

୧୧/୪୧

ନନ୍ଦଗୋପଗୃହେ ଜାତା ଯଶୋଦାଗର୍ଭେ ସମ୍ଭବା
ତତସ୍ତୌ ନାଶୟିଷ୍ୟାମି ବିଂଧ୍ୟାଚଳ ନିବାସିନୀ,

୧୧/୪୨

ହେ ଦେବତାମାନେ ! ବୈବସ୍ୱତ ମନ୍ୱନ୍ତରର ଅଠାଇଶତମ ଯୁଗରେ ଶୁମ୍ଭ ଓ ନିଶୁମ୍ଭ ନାମକ ଦୁଇ ମହାଦୈତ୍ୟ ଜନ୍ମନେବେ, ସେତେବେଳେ ମୁଁ ଗୋପପୁରବାସୀ ନନ୍ଦଙ୍କ ଘରେ ତାଙ୍କର ପତ୍ନୀ ଯଶୋଦାଙ୍କ ଗର୍ଭରେ ଜନ୍ମଲାଭ କରି ବିନ୍ଧ୍ୟାଚଳରେ ଅବସ୍ଥାନ କରିବି ଏବଂ ଦୁଇ ଅସୁରକୁ ବଧ କରିବି ।

ସାଧାରଣ ଭାବରେ ଭାରତୀୟ ମଣିଷ ଜାଣନ୍ତି କଂସର ଅତ୍ୟାଚାରରେ ଅତ୍ୟାଚାରିତ ହୋଇ ପୃଥିବୀକୁ କଂସର ଦାଉରୁ ଉଦ୍ଧାର କରିବା ପାଇଁ ଭଗବାନ ନାରାୟଣ ସ୍ଥିର କରିଥିଲେ । ସେ ମଥୁରାର ବସୁଦେବଙ୍କର ପତ୍ନୀ ଦେବକୀଙ୍କ ଅଷ୍ଟମ ଗର୍ଭରେ ସ୍ଥାନିତ ହେବେ । ସେତେବେଳକୁ କଂସର ବନ୍ଦୀଶାଳାରେ ଥିବା ଦେବକୀଙ୍କର ସପ୍ତମ ଗର୍ଭ ହୋଇ ସାରିଥିବ । ଭଗବାନ ବିଷ୍ଣୁ ଅଷ୍ଟମ ସନ୍ତାନ ହୋଇ ଦେବକୀଙ୍କ ଗର୍ଭରୁ ଉଦୟ ହେବାର କଥା ।

ତା'ପୂର୍ବରୁ ଦେବକୀଙ୍କ ଗର୍ଭରେ ଉଦୟ ହୋଇଛନ୍ତି ଶ୍ରୀଅନନ୍ତ ବଳଭଦ୍ର ରୂପରେ । ଏତିକିବେଳେ ଭଗବାନ ବିଷ୍ଣୁ ଡାକିଛନ୍ତି ତାଙ୍କର ମାୟାଶକ୍ତିଙ୍କୁ । ସେ ମାୟାଶକ୍ତିଙ୍କୁ 'ହେ ଯୋଗମାୟା ! ତୁମେ ଏଠାରୁ ମଥୁରାକୁ ଯାଅ କଂସର ବନ୍ଦୀଶାଳାରେ ବସୁଦେବଙ୍କର ପତ୍ନୀ ଦେବକୀ ଅଛନ୍ତି । ତାଙ୍କ ଗର୍ଭରେ ତାଙ୍କର ସପ୍ତମ ସନ୍ତାନ ରୂପେ ଅନନ୍ତ ଅବସ୍ଥାନ କରୁଛନ୍ତି । ତୁମେ ତାଙ୍କୁ ଆକର୍ଷଣ କରି ଆଣି ଗୋପପୁରେ ନନ୍ଦଙ୍କ ଘରେ ରହୁଥିବା ବସୁଦେବଙ୍କ ଅନ୍ୟତମ ପତ୍ନୀ ରୋହିଣୀଙ୍କ ଗର୍ଭରେ ସ୍ଥାନିତ କର । ରୋହିଣୀଙ୍କ ଗର୍ଭରୁ ଜାତ ହୋଇ ଅନନ୍ତ ସଂକର୍ଷଣ ନାମରେ ନାମିତ ହେବେ । ତୁମେ ନନ୍ଦଙ୍କରାଣୀ ଯଶୋଦାଙ୍କ ଗର୍ଭରେ ରହିବ । ଦେବକୀଙ୍କର ଅଷ୍ଟମ ଗର୍ଭରେ ମୁଁ ସ୍ଥାନିତ ହେବି । ମୁଁ ଯେଉଁଦିନ ଦେବକୀଙ୍କ ଗର୍ଭରୁ ଜନ୍ମନେବି ତୁମେ ସେହିଦିନ ମା' ଯଶୋଦାଙ୍କ ଗର୍ଭରୁ ଜନ୍ମ ନେବ । ମାୟା ସେଦିନ ପଚାରିଥିଲେ ମୋର ଲାଭ କଣ ହେବ ? ସେଦିନ ଭଗବାନ ବିଷ୍ଣୁ ଉତ୍ତର ଦେଇଥିଲେ-

ନାମଧେୟାନି କୁର୍ବନ୍ତି ସ୍ଥାନାନଚ ନରା ଭବି
ଦୁର୍ଗେତି ଭଦ୍ରାକାଳୀତି ବିଜୟା ବୈଷ୍ଣବୀତି ଚ
କୁମୁଦା ଚଣ୍ଡିକୀ କୃଷ୍ଣା-ମାଧବୀ କନ୍ୟେକେତିଚ
ମାୟା ନାରାୟଣୀ ଶାନୀ ଶାରଦେତ୍ୟମ୍ବିକେତ ଚ
ଭାଗବତ, ୧୦।୨।୧୧।୧୨

ଏ ପୃଥବୀର ମଣିଷମାନେ ତୁମପାଇଁ ବହୁତ ସ୍ଥାନ ପ୍ରସ୍ତୁତ କରିବେ । ଦୁର୍ଗା, ଭଦ୍ରକାଳୀ, ବିଜୟା, ବୈଷ୍ଣବୀ, କୁମୁଦା, ଚଣ୍ଡିକା, କୃଷ୍ଣା, ମାଧବୀ, କନ୍ୟା, ମାୟା, ନାରାୟଣୀ, କୁଶାନୀ, ଶାରଦା ଏବଂ ଅମ୍ବିକା ଆଦି ବହୁ ନାମରେ ସମ୍ବୋଧନ କରିବେ ।

ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ ମଧ୍ୟ ସେଇକଥା କହିବା ସଂଗେ ସଂଗେ ସେ ଦେବୀ ଯେ ଗାଁରେ ଗାଁରେ ପୂଜା ପାଇବେ, ଏକଥା କହିଛନ୍ତି । ଯଥା-

ଜୟା ବିଜୟା ଭଦ୍ରକାଳୀ
ଚଂଚଳା ମଂଗଳା କରାଳୀ
ଗ୍ରାମଗ୍ରାମକେ ତୋର ପୂଜା
ଅନେକ ଦେବେ ବଳି ଭୋଜା ।

ସୁତରାଂ ଭଗବତୀ ମହାମାୟା ଯେ ଯଶୋଦାଙ୍କର କନ୍ୟା ଭାବରେ ଜନ୍ମନେବେ ଏକଥା ଭଗବାନ ବିଷ୍ଣୁ ଆଗରୁ ଯୋଜନା କରିସାରିଥିଲେ ଓ ନିର୍ଦ୍ଦେଶ ଦେଇ ସାରିଥିଲେ ।

ଏଠାରେ ଦୁଇଟି ମତ ଆସୁଛି । ଭଗବତୀ ଅମ୍ବିକା ବା ଚଣ୍ଡିକା ଦେବତାମାନଙ୍କୁ ବର ଦେବା ଛଳରେ ଏହି ଭବିଷ୍ୟବାଣୀ ଘୋଷଣା କରିଛନ୍ତି । ଦିତ୍ୱୀୟଟି ହେଉଛି ବିଷ୍ଣୁଙ୍କ ନିର୍ଦ୍ଦେଶରେ ଯୋଗମାୟା ବା ଅମ୍ବିକା ଯଶୋଦାଙ୍କ ଗର୍ଭକୁ ଆସିଛନ୍ତି ।

ଏଠାରେ ପୁଣି ଏକ ପ୍ରଶ୍ନ ଉଠୁଛି, ଶ୍ରୀମଦ୍ ଭାଗବତ ଏ କଥାଟିକୁ  ଆଗେ କହିଛନ୍ତି ନା ଶ୍ରୀଦୁର୍ଗା ସପ୍ତଶତୀ ଏକଥା ଆଗେ କହିଛନ୍ତି ? ମାର୍କଣ୍ଡେୟ ପୁରାଣ ଆଗେ ନା ଶ୍ରୀମଦ୍ ଭାଗବତ ଆଗେ । ଅଷ୍ଟାଦଶ ମହାପୁରାଣ କ୍ରମରେ ଶ୍ରୀମଦ୍ ଭାଗବତର ସ୍ଥାନ ପଞ୍ଚମରେ ଓ ମାର୍କଣ୍ଡେୟ ପୁରାଣର ସ୍ଥାନ ସପ୍ତମରେ ମତାନ୍ତରେ ଅଷ୍ଟମ ସ୍ଥାନରେ । ଶ୍ରୀମଦ୍ ଭାଗବତର କ୍ରମସଂଖ୍ୟା ଯେ ୫ ଏକଥା, ସର୍ବସମ୍ମତ । ତେଣୁ ଶ୍ରୀମଦ୍ ଭାଗବତ ପରେ ଯେ ମାକର୍ଣ୍ଡେୟ ପୁରାଣର ସୃଷ୍ଟି ଓ ଶ୍ରୀଦୁର୍ଗା ସପ୍ତଶତୀ ମହାଗ୍ରନ୍ଥ ଆମ ସମ୍ମୁଖକୁ ଏକଥା ପ୍ରତୀୟମାନ ହୁଏ, ସୁତରାଂ ଶ୍ରୀମଦ୍ ଭାଗବତର ମତ ଶ୍ରୀଦୁର୍ଗା ସପ୍ତଶତୀରେ ପ୍ରତିଧ୍ୱନିତ ବା ପ୍ରତିବିମ୍ବିତ ହୋଇଛି ।

ଶ୍ରୀମଦ୍ ଭାଗବତର ବର୍ଣ୍ଣନା ଅନୁଯାୟୀ ଭାଦ୍ରବ କୃଷ୍ଣ ଅଷ୍ଟମୀର ନିଶାର୍ଦ୍ଧରେ ଭଗବାନ ଶ୍ରୀକୃଷ୍ଣଙ୍କୁ ଦେବୀଙ୍କ କୋଳରୁ ନେଇ ବସୁଦେବ ଗୋପପୁରର ନନ୍ଦଗୃହରେ ଯଶୋଦାଙ୍କ କୋଳରେ ରଖିଛନ୍ତି । ପରଦିନ ଦୁଷ୍ଟାତ୍ମା କଂସ ସେହି ନବଜାତ କନ୍ୟାକୁ ଆଣି ପାଷାଣରେ ପିଟିବାବେଳେ ଯୋଗମାୟା ବିଜୁଳି ବେଗରେ ଆକାଶକୁ ଉଠିଯାଇଛନ୍ତି । ତାଙ୍କୁ କୁହାଯାଇଛି ବିଜୁଳି କନ୍ୟା । ସେ କଂସର ମୃତ୍ୟୁ ସମ୍ବାଦ ଦେଇ ଅନ୍ତର୍ହିତ ହୋଇଯାଇଛନ୍ତି । ଭାଗବତରେ ଯୋଗମାୟାଙ୍କ ଚରିତ୍ର ଏଇଠି ଶେଷ ହୋଇଛି । କିନ୍ତୁ ଶ୍ରୀଦୁର୍ଗା ସପ୍ତଶତୀ ଯୋଗମାୟା ବା ମହାମାୟାଙ୍କ ଚରିତ୍ରକୁ ଆଗକୁ ନେଇଛନ୍ତି । ଭାଗବତଠାରୁ ଅଲଗା କଥା କୁହାଯାଇଛି ଦେବୀ ଅମ୍ବିକା ଦେବତାମାନଙ୍କୁ ବର ଦେଇ ବାରମ୍ବାର

ଧରାପୃଷ୍ଠକୁ ଆସିବାକୁ ପ୍ରତିଶ୍ରୁତି ଦେଇଛନ୍ତି । ଏଠାରେ ବିଷ୍ଣୁଙ୍କର ନିର୍ଦ୍ଦେଶ ବା ଯୋଜନାର କଥା କୁହାଯାଇନି ବରଂ ଏ ଯୋଜନା ମହାମାୟାଙ୍କର । ସେ ଦେବତାମାନଙ୍କୁ ଭବିଷ୍ୟତ ବାଣୀ ଶୁଣାଇଛନ୍ତି । କ'ଣ କହିଛନ୍ତି ସେକଥା ଆଗରୁ କୁହାଯାଇଛି ।

ଶ୍ରୀଦୁର୍ଗା ସପ୍ତଶତୀଙ୍କ ମତରେ ଏଇ ଶୁମ୍ଭ ନିଶୁମ୍ଭଙ୍କ ମୃତ୍ୟୁରେ କାର୍ଯ୍ୟ ଶେଷ ହୋଇନାହିଁ । ଏହି ଦୁଇ ଅସୁର ପୁଣି ଆସିବେ ସେତେବେଳେ ଯଶୋଦାନନ୍ଦିନୀ ହୋଇ ଅମ୍ବିକା ବିନ୍ଧ୍ୟାଚଳରେ ବାସ କରୁଥିବେ ଓ ପୁଣି ଥରେ ଶୁମ୍ଭ ନିଶୁମ୍ଭଂକୁ ବଧ କରିବେ ସୁତରାଂ ଯଶୋଦାନନ୍ଦିନୀ ଯେ ଦୁର୍ଗା ବିନ୍ଧ୍ୟାବାସିନୀ ସେ ଯେ ଅମ୍ବିକା ସାକ୍ଷାତ୍ ଏକଥା ସପ୍ତଶତୀ ଘୋଷଣା କରିବା ସଂଗେ ସଂଗେ କଂସ ହାତରୁ ଖସିଯିବା ପରେ ତାଙ୍କର ଯାତ୍ରା ଶେଷ ନ କରି ମନ୍ୱନ୍ତର ମନ୍ୱନ୍ତର ପର୍ଯନ୍ତ ବିନ୍ଧ୍ୟବାସିନୀ ହୋଇ ରହିବେ ବୋଲି ଘୋଷଣା କରିଛନ୍ତି ।

ତେଣୁ ଶ୍ରୀଦୁର୍ଗା ସପ୍ତଶତୀ ଯେ ଯଶୋଦାନନ୍ଦିନୀ ଦୁର୍ଗାଙ୍କର ଏହି ବର୍ଦ୍ଧିତ ରୂପର ପରିକଳ୍ପନା କରିଛନ୍ତି ବୋଲି କୁହାଯାଇପାରିବ ।

ତା'ପରେ ଦେବୀ ମହାମାୟା ଦେବତାମାନଙ୍କୁ କହିଛନ୍ତି ସେ ବିପ୍ରଚିତ୍ତ ନାମକ ରାକ୍ଷସକୁ ବଧ କରିବେ । ଗୋଟିଏ ମନ୍ୱନ୍ତରରେ ପୃଥିବୀରେ ଭୟଙ୍କର ଅନାବୃଷ୍ଟି ଦେଖାଯିବ, ସେତେବେଳେ ମୁନିମାନଙ୍କ ଅନୁରୋଧରେ ପୃଥିବୀକୁ ଅବତରି ଆସି ମୁନିମାନଙ୍କୁ ଶତନେତ୍ରରେ ଦେଖିବେ । ସେତେବେଳେ ତାଙ୍କର ନାମ ହେବ ଶତାକ୍ଷୀ । ନିଜ ଦେହରୁ ଶାଗ ଜନ୍ମାଇ ଲୋକମାନଙ୍କୁ ଶାଗ ଖୁଆଇ ବଂଚାଇ ରଖିବେ । ତେଣୁ ତାଙ୍କ ନାମ ହେବ ଶାକମ୍ଭରୀ । ପୁଣି 'ଦୁର୍ଗମ' ନାମକ ରାକ୍ଷସକୁ ବଧ କରିବେ । ତେଣୁ ତାଙ୍କ ନାମ ହେବ 'ଦୁଗ୍‌ଦେବୀ' । ପୁଣି ଭୀମରୂପ ଧାରଣ କରି ହିମାଳୟବାସୀ ରାକ୍ଷସମାନଙ୍କୁ ଭକ୍ଷଣ କରିବେ ତେଣୁ ତାଙ୍କ ନାଁ ହେବ ଭୀମାଦେବୀ । ପୁଣି ଅସଂଖ୍ୟ ଭ୍ରମର ରୂପ ଧାରଣ କରି ଅରୁଣ ନାମକ ରାକ୍ଷସକୁ ବଧ କରିବେ । ତେଣୁ ତାଙ୍କର ନାମ ହେବ 'ଭ୍ରମରୀ'। ଏବେ ବି ଦକ୍ଷିଣ ଭାରତର ଆନ୍ଧ୍ରପ୍ରଦେଶରେ ଥିବା 'ଶ୍ରୀଶୈଳମ୍' ପର୍ବତ ଉପରେ ଥିବା 'ମଲ୍ଲିକାର୍ଜ୍ଜୁନ' ଜ୍ୟୋତିର୍ଲିଙ୍ଗ ନିକଟରେ ଭ୍ରମରୀ ଦେବୀଙ୍କ ମନ୍ଦିର ଛିଡା ହୋଇଛି ।

ଶେଷରେ ଏତିକି କୁହାଯାଇପାରେ ଦେବୀ ଯୋଗମାୟା ନିଜର ଅବତାରମାନଙ୍କର ଭବିଷ୍ୟତ ସୂଚନା ନିଜେ ଦେଇଛନ୍ତି ଓ ଭବିଷ୍ୟତରେ କେଉଁ କେଉଁ ରୂପ ଧାରଣ କରିବେ ସେହିକଥା କହିବା ବେଳେ ସେ ଯେ ଯଶୋଦାନନ୍ଦିନୀ ହେବେ ଏବଂ ଶ୍ରୀକୃଷ୍ଣଙ୍କର ଭଗିନୀ ହେବେ, ଏକଥା ଘୋଷଣା କରିଛନ୍ତି ।

ବେଗନା, କୋରାଇ
ଯାଜପୁର – ୭୫୫୦୨୨



# ବଲାଙ୍ଗିର ଜିଲ୍ଲାର ଇଷ୍ଟଦେବୀ ପାଟଣେଶ୍ୱରୀ

ପବିତ୍ର ମୋହନ ବାରିକ

ବଲାଙ୍ଗିର ଜିଲ୍ଲାର କଳା, ସାହିତ୍ୟ, ସଂସ୍କୃତି, ପରମ୍ପରା, ଐତିହ୍ୟ ହେଉଛି ଅନୁପମ ଓ ଅସାଧାରଣ । ବଲାଙ୍ଗିର ପାଟଣା ଦେଶୀୟ ରାଜ୍ୟ ପାଟଣା ଗଡଜାତ ନାମରେ ଖ୍ୟାତି ଅର୍ଜନ କରିଥିଲା । ପାଟଣା ଗଡଜାତର ପୂର୍ବତନ ରାଜଧାନୀ ଥିଲା ପାଟଣାଗଡ । କିନ୍ତୁ ପରବର୍ତ୍ତୀ ସମୟରେ ଇଂରେଜମାନେ ପାଟଣାଗଡରୁ ବଲାଙ୍ଗିରକୁ ରାଜଧାନୀ ସ୍ଥାନାନ୍ତରିତ କଲେ । ପ୍ରଶାସନିକ ସୁବିଧା, ସମ୍ବଲପୁର ସହିତ ଉତ୍ତମ ଯୋଗାଯୋଗ ଓ ଗମନାଗମନ, କଳାହାଣ୍ଡିରେ କନ୍ଧ ମେଳିକୁ ଦମନ କରିବା ନିମନ୍ତେ ଇଂରେଜମାନେ ବଲାଙ୍ଗିରକୁ ରାଜଧାନୀ ରୂପେ ଗ୍ରହଣ କରି ନେଇଥିଲେ । ବର୍ତ୍ତମାନ ପାଟଣାଗଡ ବଲାଙ୍ଗିର ଜିଲ୍ଲାର ଏକ ଉପଖଣ୍ଡ ଅଟେ । ପାଟଣାଗଡ ସହର ତା'ର ସମୁଜ୍ଜ୍ୱଳ ସାଂସ୍କୃତିକ ବିଭବ ଓ ଐତିହ୍ୟ ପାଇଁ ଯଥେଷ୍ଟ ସୁନାମ ଅର୍ଜନ କରିଛି । ଶକ୍ତି ଉପାସନା ପରମ୍ପରାରେ ଏ ସହରର ଅନେକ ସୁନାମ ରହିଛି । ପାଟଣାଗଡର ଆରାଧ୍ୟ ଦେବୀ ପାଟଣେଶ୍ୱରୀ । ସେ ସମଗ୍ର ବଲାଙ୍ଗିର ଜିଲ୍ଲାର ଅଧିଷ୍ଠାତ୍ରୀ ଦେବୀ ଏବଂ ବଲାଙ୍ଗୀର ପାଟଣା ଚୌହାନ ରାଜବଂଶର ଇଷ୍ଟଦେବୀ । ଦେବୀଙ୍କ ମହିମା ଅପାର । ସେ ବିଶ୍ୱାସର ଦେବୀ । ସେ ସନ୍ତାନ ବତ୍ସଳା । ବିପଦରେ ଡାକିଲେ ମା' ସାହା ହୁଅନ୍ତି । ମା' ପାଟଣେଶ୍ୱରୀ, ପାଟଣାଗଡ ତଥା ସମଗ୍ର ବଲାଙ୍ଗିର ଜିଲ୍ଲାର ପ୍ରତ୍ୟକ୍ଷ ଦେବୀ ରୂପେ ଜଣାଶୁଣା । ତନ୍ତ୍ର ସାଧନାରେ ପ୍ରାଚୀନ ଓଡ଼ିଶାର ଅନେକ ସୁନାମ ରହିଛି । ତନ୍ତ୍ର ସାଧନାର ଏକ ପ୍ରାଚୀନ ପୀଠ ରୂପେ ଓଡ଼ିଶା ପରିଚିତ । ତନ୍ତ୍ର ସମ୍ବଳିତ ଗ୍ରନ୍ଥମାନଙ୍କରେ ''ଉଡିଆନ ପୀଠ'' ନାମରେ ଉଲ୍ଲେଖ



ଅଛି । ତନ୍ତ୍ରବିଦ୍ୟାରେ ପଶ୍ଚିମ ଓଡିଶାର ବହୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଭାରତୀୟ ସଂସ୍କୃତିର ଅବଶେଷ ଉପରେ ପୁସ୍ତକ ରଚନା କରିଥିବା ଐତିହାସିକ ଡଃ ରମେଶ ପ୍ରସାଦ ମିଶ୍ର ଓ ଦକ୍ଷିଣ କୋଶଳରେ ତାନ୍ତ୍ରିକ ପରମ୍ପରା ଉପରେ ପୁସ୍ତକ ଲେଖିଥିବା ଡଃ ଜିତାମିତ୍ରା ପ୍ରସାଦ ସିଂହଦେଓ ମତବ୍ୟକ୍ତ କରିଛନ୍ତି, ପଶ୍ଚିମ ଓଡିଶା ତନ୍ତ୍ର ସାଧନାର ଏକ ପ୍ରାଚୀନ ଓ ଗୁରୁତ୍ୱପୂର୍ଣ୍ଣ ପୀଠ । ସମ୍ବଳ (ସମ୍ବଲପୁର)ର



ରାଜା ଇନ୍ଦ୍ରଭୂତିଙ୍କ ଭଗ୍ନୀ ଲକ୍ଷ୍ମୀକରା ବୌଦ୍ଧ ସହଜଯାନର ଥିଲେ ପ୍ରବର୍ତ୍ତିକା । ଲକ୍ଷ୍ମୀକରା ସୋନପୁର ରାଜବଧୂ ଥିଲେ । ତାଙ୍କ ପ୍ରବର୍ତ୍ତିତ ଦର୍ଶନ ''ପିଣ୍ଡ ବ୍ରହ୍ମାଣ୍ଡ'' ଓ ଶରୀର ତତ୍ତ୍ୱ ଉପରେ ପର୍ଯ୍ୟବସିତ ଥିଲା । ଶରୀର ତତ୍ତ୍ୱ ମାଧ୍ୟମରେ ସୂକ୍ଷ୍ମତ୍ତର ଚେତନାର ବିକାଶ ସହଜ ଆନନ୍ଦ ଲାଭ କରିବାର ଉପାୟ ଲକ୍ଷ୍ମୀକରା ନିର୍ଦ୍ଧାରଣ କରିଥିଲେ । ତାଙ୍କ ତତ୍ତ୍ୱରେ ଆକର୍ଷିତ ହୋଇ ସାତ ଜଣ କୁମାରୀ କନ୍ୟା ତନ୍ତ୍ର ସାଧନାରେ ଅଭିମନ୍ତ୍ରିତ ଥିଲେ । ସେହି ତନ୍ତ୍ର ସାଧିକାମାନେ ଥିଲେ ମଦନା ବା ଜ୍ଞାନଦେଈ ମାଲୁଣୀ, ନିତାଇ ଧୋବଣୀ, ଲହୁକୁଟୀ ଲହୁରୁଣୀ, ସୁକୁଟି ଚମାରୁଣୀ, ପତ୍ରପିନ୍ଧା ସଉରୁଣୀ, ଗାଙ୍ଗୀ ଗଉଡୁଣୀ ଓ ଶୁଆ ତେଲୁଣୀ ।

ଏହି ତନ୍ତ୍ର କୁମାରୀମାନେ ନିଜ-ନିଜର ତନ୍ତ୍ର ବିଦ୍ୟାରେ ଥିଲେ ସିଦ୍ଧହସ୍ତା । କିମ୍ବଦନ୍ତୀ ଓ ଲୋକକଥାରେ ଏହି ତନ୍ତ୍ର କୁମାରୀମାନଙ୍କର ଅନେକ ଅଲୌକିକ କାହାଣୀ ଶୁଣିବାକୁ ମିଳେ । ତନ୍ତ୍ର କୁମାରୀମାନଙ୍କର ବିଦ୍ୟା କାଉଁରୀ ବିଦ୍ୟା ନାମରେ ଖ୍ୟାତ, । ଲେଖିବାର ଉଦ୍ଦେଶ୍ୟ, ଐତିହ୍ୟ ବିମଣ୍ଡିତ ସହର ପାଟଣାଗଡ କାଉଁରୀ ପାଟଣା ନାମରେ ପ୍ରସିଦ୍ଧ ଅର୍ଜନ କରିଥିଲା । ଏହି ସାତଜଣ ତନ୍ତ୍ର କୁମାରୀମାନଙ୍କୁ ''ସାତବହନୀ'' ବୋଲି କୁହାଯାଏ । ଏବେ ମଧ୍ୟ ଏ ଅଞ୍ଚଳରେ ''ସାତବହନୀ'' ପୂଜା ପ୍ରଚଳିତ ଅଛି ।

ପାଟଣାଗଡର କଣ୍ଡରା ରାଜା କାମଚଣ୍ଡୀଙ୍କୁ ପୂଜା କରୁଥିଲେ । ମାଧବଚନ୍ଦ୍ର ଦେବ କଳିଙ୍ଗ ବିଜୟ ପରେ ପଉନ ରାଜ୍ୟ ପ୍ରତିଷ୍ଠା କଲେ ଓ କାମଚଣ୍ଡୀଙ୍କୁ ପଉନେଶ୍ୱରୀ ନାମରେ ସ୍ଥାପନ କଲେ । କାଳକ୍ରମେ ପଉନ ରାଜ୍ୟ ପାଟଣାରାଜ୍ୟ ଓ ଦେବୀ ପଉନେଶ୍ୱରୀ ପାଟଣେଶ୍ୱରୀ ନାମରେ ପରିଚିତ ହେଲେ । ପାଟଣେଶ୍ୱରୀ ମନ୍ଦିରର ପୂଜକ କୁହନ୍ତି ମଧୁ କୈଟଭ ବଧ ସମୟରେ ମହାକାଳୀ ହିଁ ଦେବୀ ପାଟଣେଶ୍ୱରୀ ଅଟନ୍ତି । ରାଜା ମାଧବଚନ୍ଦ୍ରଙ୍କ ବଂଶ ଅପୁତ୍ରିକ ହେବାରୁ ରାଜକାର୍ଯ୍ୟ ପରିଚାଳନା ପାଇଁ ଅନେକ ପ୍ରତ୍ୟାଶୀ ନିଜର ଦାବୀ ଉପସ୍ଥାପନା କଲେ । ରାଜ ସିଂହାସନ ପାଇଁ ଅନେକ ଦାବୀଦାର ଆସିଲେ । କିନ୍ତୁ ଏକ ସ୍ୱର୍ଣ୍ଣ ଲେମ୍ବୁକୁ ପ୍ରତୀକ ଭାବେ ଗ୍ରହଣ କରି ଆଠଜଣ ମଲ୍ଲ ରାଣୀଙ୍କ ନିର୍ଦ୍ଦେଶରେ ଶାସନ କାର୍ଯ୍ୟ ସଂପାଦିତ କଲେ । ଜଣେ-ଜଣେ ମଲ୍ଲ ଓ ଲେମ୍ବୁ ଏକ ନିର୍ଦ୍ଦିଷ୍ଟ ସମୟ ଲାଗି ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ''ଆଠମଲ୍ଲ ଲେମ୍ବୁରାଜା'' ବୋଲି ଆଜି ପର୍ଯ୍ୟନ୍ତ ଲୋକକଥାରେ ପ୍ରଚଳିତ ଅଛି । ପରେ ଚୌହାନ ବଂଶୀୟ ରାଜା ରମାଇ ଦେବ ଅଷ୍ଟମଲ୍ଲିକଙ୍କୁ ହତ୍ୟା କରି ପାଟଣା ରାଜ ସିଂହାସନ ଅଧିକାର କଲେ । ବର୍ତ୍ତମାନର ବଲାଙ୍ଗିର, ସମ୍ବଲପୁର ଓ ସୋନପୁର ରାଜ ପରିବାର ରମାଇ ଦେବଙ୍କ ବଂଶଧର ଅଟନ୍ତି । ରମାଇ ଦେବ ପାଟଣାଗଡର ରାଜପଦ ଅଳଙ୍କୃତ କଲା ପରେ ଦେବୀ ପାଟଣେଶ୍ୱରୀଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଇଥିଲେ । ଗଙ୍ଗବଂଶ ଶାସକମାନେ ଦେବୀଙ୍କ ପୂଜା ପାଇଁ ଦେଉଳ ଗାଁ, କଲଙ୍ଗାପାଲି, ଡିଆଡୁମେର, ଉଚ୍ଚବାଲି, ଘୁନଘୁଟିପାଲି ଓ ବରପିଟା ଛଅଟି ଗାଁ ଦାନ କରିଥିଲେ । ବର୍ଷସାରା ଦେବୀଙ୍କ ପୀଠରେ ବିଭିନ୍ନ ପୂଜା ଲାଗି ରହିଥାଏ । ଆଶ୍ୱିନ ମାସ କୃଷ୍ଣପକ୍ଷ ଅଷ୍ଟମୀରୁ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଷୋଡଶୋପଚାରରେ ଦେବୀଙ୍କ ଷୋଳପୂଜା ଆୟୋଜନ କରାଯାଏ । ଷୋଳ ପୂଜାରେ ରମାଇ ଦେବଙ୍କ ଖଣ୍ଡା ଯେଉଁଥିରେ ମଲ୍ଲମାନଙ୍କୁ ହତ୍ୟା କରିଥିଲେ, ତାହା ମଧ୍ୟ ପୂଜା କରାଯାଏ । ନବମୀ ଦିନ ଦେବୀ ଜଣକ ଦେହରେ ଆବିର୍ଭୂତା ହୋଇଥାନ୍ତି । ମା'ଙ୍କ ଆଶୀର୍ବାଦ ନେବା ପାଇଁ ଛତିଶଗଡରୁ ଶ୍ରଦ୍ଧାଳୁମାନେ ପାଟଣାଗଡ ଆସିଥାନ୍ତି । ଦେବୀ ଯାହାଙ୍କ ଦେହରେ ଆବିର୍ଭୂତା ହେବେ ତାହାର ଚୟନ ମଧ୍ୟ ବିଚିତ୍ର । ଜଣେ ବାଳୁତ କନ୍ୟା (ଯେ ରଜବତୀ ହୋଇନଥିବ) ସହ ତା'ର ବିବାହ କରାଯାଏ । ଏହା କୁଆଁରୀ ପୂଜା ନାମରେ ଖ୍ୟାତି । ପୁଅ ଓ ଝିଅ ଅଲଗା ରହିଥାନ୍ତି । କୃଷ୍ଣାଷ୍ଟମୀରେ ପୁଅ ମନ୍ଦିରରେ ପ୍ରବେଶ କରିଥାଏ । ଦିନ ବେଳା ପଛରେ ଓ ରାତ୍ରରେ ଦେବୀଙ୍କ ସମ୍ମୁଖରେ ଗୋଟିଏ ସ୍ୱତନ୍ତ୍ର ମୁଦ୍ରାରେ ବସିଥାଏ । ମହାଳୟା ଦିନ ସମଲେଶ୍ୱରୀ ଦେବୀ ବିଜେ କଲା ପରେ ପଞ୍ଚମୀ ଦିନ ପାଟଣେଶ୍ୱରୀ ଯନ୍ତ୍ର ଓ ସମଲେଶ୍ୱରୀ ଯନ୍ତ୍ର ଅକ୍ଷତ



ଅରୁଆ ଚାଉଳରେ ଅଙ୍କା ଯାଏ । ଏହାକୁ ଡେଇଁବା ପରେ ଯୁବକ ଜଣକ ସଂଜ୍ଞାହୀନ ହୋଇଥାଏ । ଏହାପରେ ଯୁବକକୁ ପାଣି ଭିତରେ ପଦ୍ମାସନରେ ବସାଇ ଦିଆଯାଏ । ଆଗରୁ କଣା କରାଯାଇଥିବା ନଡିଆ ଓ କଳସ ତା' ମୁଣ୍ଡରେ ରଖାଯାଏ । ନଡିଆ ଭିତରେ ପାଣି ପୂରି ଗଲେ ଯୁବକ ଜଣକୁ ଟେକି ଆଣି ଦେବୀଙ୍କ ସମ୍ମୁଖରେ ସ୍ୱତନ୍ତ୍ର ଯନ୍ତ୍ରରେ ଶୁଆଇ ଦିଆଯାଏ । ଏହି ପୂଜା ସମୟରେ ସମଲେଶ୍ୱରୀ ଓ ପାଟଣେଶ୍ୱରୀ ଯନ୍ତ୍ରକୁ ବୋଦା ବଳି ଦିଆଯାଏ । ଯୁବକ ଜଣକର ସଂଜ୍ଞା ଫେରି ଆସିବା ପରେ ତାକୁ ଗରମ ପାଣିରେ ଗାଧେଇ ଦିଆଯାଏ ଏବଂ ତେଲ, କ୍ଷୀର ପ୍ରଦାନ କରାଯାଏ । ଷଷ୍ଠୀଦିନ ଯୁବକର ହାତରେ, ସପ୍ତମୀ ଦିନ ମସ୍ତକରେ ଓ ଅଷ୍ଟମୀ ଦିନ ସମଗ୍ର ଦେହରେ ଦେବୀ ଆବିର୍ଭୂତା ହୋଇଥାନ୍ତି । ନବମୀ ଦିନ ନଗରୀ ପରିକ୍ରମା କରିବା ପୂର୍ବରୁ ମଲ୍ଲମାନଙ୍କର ସମାଧିକୁ ରମାଇ ଦେବଙ୍କ ଖଣ୍ଡା ଦ୍ୱାରା ଦେବୀ ମଲ୍ଲମାନଙ୍କର ସମାଧିରେ ଆଘାତ କରିଥାନ୍ତି । ଜନଶ୍ରୁତିରେ ଅଛି ଯଦି ଦେବୀ ମଲ୍ଲମାନଙ୍କର ସମାଧିରେ ଆଘାତ ନ ଦିଅନ୍ତି ସେମାନେ ପୁନର୍ବାର ତାଙ୍କର ପୂର୍ବ ଅତ୍ୟାଚାର ଆରମ୍ଭ କରିବେ । ଗଙ୍ଗବଂଶ ରାଜତ୍ୱ ସମୟରେ ଦେବୀଙ୍କ ପୂଜାର୍ଚ୍ଚନା ପାଇଁ ଛଅ ଖଣ୍ଡ ଗ୍ରାମ ଦାନ କରାଯାଇଥିଲା । ପୂଜକଙ୍କ କହିବା ଅନୁଯାୟୀ ଦେବୀଙ୍କ ନିୟୋଗରେ ଥିବା ଏହି ଗ୍ରାମମାନଙ୍କରୁ ପୂର୍ବେ ୧୩୩୯ ସ୍ୱର୍ଣ୍ଣ ମୁଦ୍ରା, ୧୩୩୯ ରୌପ୍ୟ ମୁଦ୍ରା ଓ ପ୍ରଚୁର ଶସ୍ୟ ଆସୁଥିଲା । ୧୯୫୪-୫୫ ଉପନାମ ବିଲୀନ ଅଧ୍ୟାଦେଶ ବଳରେ ଦେବୀଙ୍କ ନିୟୋଗରୁ ଏହି ଛଅ ଖଣ୍ଡ ଗ୍ରାମ ଉଚ୍ଛେଦ କରାଗଲା । ୧୯୭୨ ମସିହାରେ ମନ୍ଦିର ପରିଚାଳନା ଦାୟିତ୍ୱ ଟ୍ରଷ୍ଟି ବୋର୍ଡ ହାତକୁ ଗଲା । ସରକାର ସେସମୟରେ ଦେବୀଙ୍କ ପୂଜାର୍ଚ୍ଚନା ପାଇଁ ବାର୍ଷିକ ୯୦୦ ଟଙ୍କା ଦେଉଥିଲେ । ବଲାଙ୍ଗିର ଜିଲ୍ଲା ଓ ଚୌହାନ ରାଜ ବଂଶର ଇଷ୍ଟଦେବୀ ପାଟଣେଶ୍ୱରୀ । ଦେବୀ ପାଟଣେଶ୍ୱରୀଙ୍କର ଦଶହରା ପୂଜା ପାଇଁ ପରମ୍ପରା ଅନୁଯାୟୀ ପାଟଣାଗଡ ରାଜବାଟୀରୁ ପାଟ ସିନ୍ଦୂର ଆସିଥାଏ । ପାଟ ସିନ୍ଦୂରକୁ ସମାନ ଦୁଇ ଭାଗରେ ବିଭକ୍ତ କରାଯାଏ । ଗୋଟିଏ ଭାଗ ଦେବୀ ପାଟଣେଶ୍ୱରୀଙ୍କ ବ୍ୟବହାର ପାଇଁ ରଖାଯାଏ । ଅନ୍ୟ ଭାଗଟି ଯନ୍ତ୍ରର ସହିତ ଏକ ଫରୁଆରେ ରଖାଯାଏ । ଜରାସିଂହାସ୍ଥିତ ମା' ପାଟଖଣ୍ଡା ମନ୍ଦିରର ସେବକ ଏହି ପାଟ ସିନ୍ଦୂର ନେବା ପାଇଁ ପ୍ରତିବର୍ଷ ପାଟଣାଗଡର ପାଟଣେଶ୍ୱରୀ ମନ୍ଦିରକୁ ଆସିଥାନ୍ତି । ସେବକ ପାଟ ସିନ୍ଦୂର ନେବା ପରେ ନବମୀ ତିଥିରେ ଜରାସିଂହାରେ ପାଟଖଣ୍ଡା ଯାତ୍ରା ଆରମ୍ଭ ହୁଏ । ଦେବୀ ପାଟଣେଶ୍ୱରୀ ଦୟାମୟୀ, ଶକ୍ତି ସ୍ୱରୂପିଣୀ ଓ କଲ୍ୟାଣମୟୀ ଅଟନ୍ତି ।

ଅଧ୍ୟାପକ, ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪







# ଆଦି ଶଙ୍କରାଚାର୍ଯ୍ୟ ଓ ଧର୍ମପୀଠ

**ଗିରିଜା ଶଙ୍କର ଦାସ**

ପ୍ରାଚୀନ ଭାରତୀୟ ସନାତନ ପରମ୍ପରାର ବିକାଶ ଏବଂ ହିନ୍ଦୁ ଧର୍ମର ପ୍ରଚାର ଏବଂ ପ୍ରସାର କ୍ଷେତ୍ରରେ ଆଦି ଶଙ୍କରାଚାର୍ଯ୍ୟଙ୍କର ମହାନ୍ ଯୋଗଦାନ ରହିଛି । ସେ ଭାରତୀୟ ସନାତନ ପରମ୍ପରାକୁ ସମଗ୍ର ଦେଶରେ ବ୍ୟାପକ କରିବା ସହିତ ଭାରତର ଚାରିକୋଣରେ ୪ଟି ଶଙ୍କରାଚାର୍ଯ୍ୟ ମଠ ପ୍ରତିଷ୍ଠା କରିଥିଲେ । ପୂର୍ବରେ ଗୋବର୍ଦ୍ଧନ ମଠ-ପୁରୀ ଜଗନ୍ନାଥ, ପଶ୍ଚିମରେ ଶାରଦା ମଠ-ଗୁଜୁରାଟ, ଉତ୍ତରରେ ଜ୍ୟୋତିର୍ମଠ-ବଦ୍ରୀନାଥ ଏବଂ ଦକ୍ଷିଣରେ ଶୃଙ୍ଗେରୀ ମଠ-ରାମେଶ୍ୱରମ୍‌ରେ ସ୍ଥାପନା କରିଥିଲେ । ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ସ୍ଥାପିତ କରାଯାଇଥିବା ଏହି ୪ଟି ମଠ ୪ ଜଣ ଶଙ୍କରାଚାର୍ଯ୍ୟଙ୍କ ନେତୃତ୍ୱରେ ସନାତନ ପରମ୍ପରାର ପ୍ରଚାର ଏବଂ ପ୍ରସାର କରିଚାଲିଛନ୍ତି ।

ଆଦି ଶଙ୍କରାଚାର୍ଯ୍ୟ ଏହି ୪ଟି ମଠ ବ୍ୟତୀତ ୧୨ଟି ଜ୍ୟୋତିର୍ଲିଙ୍ଗର ସ୍ଥାପନା କରିଥିଲେ । ଆଦି ଶଙ୍କରାଚାର୍ଯ୍ୟଙ୍କୁ ଅଦ୍ୱୈତ ବେଦାନ୍ତ ପରମ୍ପରାର ପ୍ରବର୍ତ୍ତକ ବୋଲି କୁହାଯାଏ । ସେ କହୁଥିଲେ ଆତ୍ମା ଓ ପରମାତ୍ମା ଏକ । ଅଜ୍ଞାନତା କାରଣରୁ ଏ ଦୁଇଟିକୁ ମନୁଷ୍ୟ ଭିନ୍ନ ଭିନ୍ନ ବୋଲି ଭାବିଥାଏ ଗୁରୁଶିଷ୍ୟ ପରମ୍ପରା ଉଦ୍‌ଜୀବିତ କରି ରଖିବାରେ ମଠଗୁଡ଼ିକର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସମଗ୍ର ଭାରତରେ ଦେଖାଯାଉଥିବା ସନ୍ନ୍ୟାସୀମାନେ ଭିନ୍ନ ଭିନ୍ନ ମଠ ସହିତ ଜଡ଼ିତ । ଏହି ମଠଗୁଡ଼ିକରେ ଶିଷ୍ୟଗଣଙ୍କୁ ସନ୍ନ୍ୟାସ ଦୀକ୍ଷା ଦିଆଯାଇଥାଏ । ସନ୍ନ୍ୟାସରେ ଦୀକ୍ଷିତ ହେବା ପରେ ସେମାନଙ୍କ ନାମ ସହିତ ଏକ ବିଶେଷଣ ଯୋଗ କରାଯାଇଥାଏ । ଯେଉଁଥିରୁ ଏହି ସଙ୍କେତ ମିଳିଥାଏ ଯେ ସନ୍ନ୍ୟାସୀ ଜଣକ କେଉଁ ମଠ ପରମ୍ପରାର ନିର୍ବାହନ କରୁଛନ୍ତି । ସମସ୍ତ ମଠ ଭିନ୍ନ ଭିନ୍ନ ବୈଦିକ ବାର୍ତ୍ତାର ପ୍ରଚାର କରିଥାନ୍ତି, ଯାହାର ଏକ ବିଶେଷ ମହାବାକ୍ୟ ରହିଥାଏ । ମଠକୁ ପୀଠ ମଧ୍ୟ କୁହାଯାଇଥାଏ । ଆଦି ଶଙ୍କରାଚାର୍ଯ୍ୟ ନିଜର ଚାରିଜଣ ଯୋଗ୍ୟ ଶିଷ୍ୟଙ୍କ ମଧ୍ୟରୁ ଜଣକୁ ଏହି ମଠର ଅଧୀଶ ରୂପେ ନିଯୁକ୍ତ କରିଥିଲେ । ଏହି ପରମ୍ପରା ଆଜି ବି ପ୍ରଚଳିତ ରହିଛି । ପ୍ରତ୍ୟେକ ମଠାଧୀଶ ଶଙ୍କରାଚାର୍ଯ୍ୟ ବୋଲାଇଥାନ୍ତି । ସେମାନେ ନିଜ ଜୀବନ କାଳରେ ନିଜର ଜଣେ ଯୋଗ୍ୟ ଶିଷ୍ୟଙ୍କୁ ଉତ୍ତରାଧିକାରୀ ନିଯୁକ୍ତ କରିଥାନ୍ତି । ଏହି ମଠ ଭାରତର ଦକ୍ଷିଣ ଭାଗରେ ଥିବା ରାମେଶ୍ୱର ଧାମରେ ରହିଛି । ଏହି ମଠରେ ଦୀକ୍ଷା ନେଉଥିବା ସନ୍ନ୍ୟାସୀଙ୍କ ନାମ ପରେ ସରସ୍ୱତୀ, ଭାରତୀ ଏବଂ ପୁରୀ ସମ୍ପ୍ରଦାୟର ନାମ ବିଶେଷଣ ଲଗାଯାଇଥାଏ । ଏହି ନାମରୁ ହିଁ ସନ୍ନ୍ୟାସୀମାନେ ନିଜ ସମ୍ପ୍ରଦାୟର ପରିଚୟ ଦେଇଥାନ୍ତି । ଏହି ମଠର ମହାବାକ୍ୟ ହେଉଛି, ''ଅହଂ, ବ୍ରହ୍ମସ୍ମି ଏବଂ ଯଜୁର୍ବେଦକୁ ମଠର ଗ୍ରନ୍ଥ ଭାବେ ଗ୍ରହଣ କରାଯାଇଛି । ଏହି ମଠର ପ୍ରଥମ ମଠାଧୀଶ ଥିଲେ ଆଚାର୍ଯ୍ୟ ସୁରେଶ୍ୱର । ବର୍ତ୍ତମାନ ସ୍ୱାମୀ ଭାରତୀ କୃଷ୍ଣତୀର୍ଥ ମଠର ୩୬ ତମ ମଠାଧୀଶ ଭାବେ କାର୍ଯ୍ୟ କରୁଛନ୍ତି । ଗୋବର୍ଦ୍ଧନ ମଠ ଶ୍ରୀକ୍ଷେତ୍ର ପୁରୀରେ ରହିଛି । ଗୋବର୍ଦ୍ଧନ ମଠ ଅଧୀନରେ ଦୀକ୍ଷା ଗ୍ରହଣ କରୁଥିବା ସନ୍ନ୍ୟାସୀଙ୍କ ନାମରେ ''ଆରଣ୍ୟ'' ସମ୍ପ୍ରଦାୟ ନାମ ବିଶେଷଣ ଲଗାଯାଇଥାଏ । ଯେଉଁଥିରୁ ଏହି ସମ୍ପ୍ରଦାୟର ସନ୍ନ୍ୟାସୀଙ୍କ





ପରିଚୟ ପ୍ରାପ୍ତ ହୋଇଥାଏ । ଯେଉଁଥିରୁ ଏହି ସମ୍ପ୍ରଦାୟର ସନ୍ନ୍ୟାସୀଙ୍କ ପରିଚୟ ପ୍ରାପ୍ତ ହୋଇଥାଏ । ଏହି ମଠର ମହାବାକ୍ୟ ହେଉଛି, ''ପ୍ରଜ୍ଞାନ ବ୍ରହ୍ମା'' । ଏହି ମଠର ଗ୍ରନ୍ଥ ଭାବେ ଋକ୍ ବେଦକୁ ଗ୍ରହଣ କରାଯାଇଛି । ଆଦି ଶଙ୍କରାଚାର୍ଯ୍ୟଙ୍କ ପ୍ରଥମ ଶିଷ୍ୟ ଥିଲେ ପଦ୍ମପାଦ । ସେ ଗୋବର୍ଦ୍ଧନ ମଠର ପ୍ରଥମ ମଠାଧୀଶ । ବର୍ତ୍ତମାନ ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀ ଗୋବର୍ଦ୍ଧନ ମଠର ମଠାଧୀଶ ଭାବେ ଦାୟିତ୍ୱ ନିର୍ବାହ କରୁଛନ୍ତି । ଶାରଦା ମଠ ଗୁଜୁରାଟର ଦ୍ୱାରିକା ଧାମରେ ରହିଛି । ଏହି ମଠ ଅଧୀନରେ ଦୀକ୍ଷା ନେଉଥିବା ସନ୍ନ୍ୟାସୀଙ୍କ ନାମ ପରେ 'ତୀର୍ଥ' ଏବଂ ଆଶ୍ରମ ସମ୍ପ୍ରଦାୟର ବିଶେଷଣ ଯୋଗ କରାଯାଇଥାଏ । ଯେଉଁ ନାମରୁ ଏହି ସମ୍ପ୍ରଦାୟର ପରିଚୟ ପ୍ରାପ୍ତ ହୋଇଥାଏ । ଏହି ମଠର ମହାବାକ୍ୟ ହେଉଛି 'ତତ୍ତ୍ୱ ମସି' । ଏହି ମଠର ଗ୍ରନ୍ଥ ଭାବେ ସାମ ବେଦକୁ ଗ୍ରହଣ କରାଯାଇଛି । ଶାରଦା ମଠର ପ୍ରଥମ ମଠାଧୀଶ ଥିଲେ ହସ୍ତାମଳକ । ହସ୍ତାମଳକ ଆଦି ଶଙ୍କରଚାର୍ଯ୍ୟଙ୍କ ପ୍ରମୁଖ ୪ ଶିଷ୍ୟଙ୍କ ମଧ୍ୟରୁ ଅନ୍ୟତମ ଥିଲେ ।

ବର୍ତ୍ତମାନ ସ୍ୱାମୀ ସ୍ୱରୂପାନନ୍ଦ ସରସ୍ୱତୀ ଏହି ମଠର ୭୯ତମ ମଠାଧୀଶ ରୂପେ ଦାୟିତ୍ୱ ନିର୍ବାହନ କରୁଛନ୍ତି । ଜ୍ୟୋତିର୍ମଠ ଉତ୍ତରାଖଣ୍ଡର ବଦ୍ରିକାଶ୍ରମରେ ରହିଛି । ଜ୍ୟୋତିର୍ମଠ ଅଧୀନରେ ଦୀକ୍ଷା ଗ୍ରହଣ କରୁଥିବା ସଦସ୍ୟଙ୍କ ନାମ ପରେ ଗିରି, ପର୍ବତ ଏବଂ ସାଗର ସମ୍ପ୍ରଦାୟ ନାମ ବିଶେଷଣ ଯୋଗ କରାଯାଇଥାଏ । ଯେଉଁଥିରୁ ଏହି ସମ୍ପ୍ରଦାୟର ସନ୍ନ୍ୟାସୀଙ୍କ ପରିଚୟ ମିଳିଥାଏ । ଏହି ମଠର ମହାବାକ୍ୟ ହେଉଛି 'ଅୟମାତ୍ମା ବ୍ରହ୍ମ' । ଏହି ମଠ ଅନ୍ତର୍ଗତ ଅଥର୍ବ ବେଦକୁ ରଖାଯାଇଛି ।

ଜ୍ୟୋତିର୍ମଠର ପ୍ରଥମ ମଠାଧୀଶ ଭାବେ ଆଚାର୍ଯ୍ୟ ତୋଟକଙ୍କୁ ନିଯୁକ୍ତି କରାଯାଇଥିଲା । ବର୍ତ୍ତମାନ କୃଷ୍ଣବୋଦ୍ଧାଶ୍ରମ ଏହି ମଠର ୪୪ତମ ମଠାଧୀଶ ଭାବେ କାର୍ଯ୍ୟ କରୁଛନ୍ତି । ସେହିପରି ଭାରତର ୧୨ଟି ସ୍ଥାନ ସୌରାଷ୍ଟ୍ରର ସୋମେଶ୍ୱର, ଉଜ୍ଜୟିନୀର ମହାକାଳେଶ୍ୱର, ରାମେଶ୍ୱରମ୍‌ର ରାମେଶ୍ୱର, ବାରଣାସୀର କାଶୀ ବିଶ୍ୱନାଥ, ଆନ୍ଧ୍ରର ମଲ୍ଲିକାର୍ଜ୍ଜୁନ, ମଧ୍ୟପ୍ରଦେଶର ଓମକାରେଶ୍ୱର, ଉତ୍ତରାଖଣ୍ଡର କେଦାରନାଥ, ମହାରାଷ୍ଟ୍ରର ଭୀମାଶଙ୍କର ଓ ତ୍ରୟମ୍ବେକେଶ୍ୱର, ଦେଓଘରର ବୈଦ୍ୟନାଥ, ମହାରାଷ୍ଟ୍ରର ଘୃଷ୍ଣେଶ୍ୱର ଓ ଅନ୍ଧନାଗନାଥ ଆଦି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଆଦି ଶଙ୍କରାଚାର୍ଯ୍ୟ ପ୍ରତିଷ୍ଠା କରିଥିଲେ ।

ଉପରୋକ୍ତ ସ୍ଥାନରେ ପୂର୍ବରୁ ଧର୍ମପୀଠଗୁଡ଼ିକ ଥିଲେ ବି ସେସବୁକୁ ସନାତନ ଧର୍ମର ପ୍ରତୀକ ଭାବେ ଗ୍ରହଣ କରିଥିଲେ ଆଦିଶଙ୍କର । ସେ ସାରା ଭାରତ ଦେଶ ଭ୍ରମଣ କରିଥିଲେ । ସର୍ବତ୍ର ସେ ବେଦ, ଉପନିଷଦ ପୁରାଣ ଆଦିରେ ରହିଥିବା ସନାତନ ଧର୍ମର ଗୂଢ଼ତତ୍ତ୍ୱର ପ୍ରଚାର ପ୍ରସାର କରି ସନାତନ ଧର୍ମର ପୁନଃ ସ୍ଥାପନା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ମାର୍ଗରେ ଯାଇ ସେ ଭାରତ ଭୂଖଣ୍ଡରେ ଏକତା ଏବଂ ଅଖଣ୍ଡତା ଉପରେ ଗୁରୁତ୍ୱାରୋପ କରିଥିଲେ । ସାରା ଭାରତରେ ସେ ବେଦ ଜ୍ଞାନ ପ୍ରଚାର କରିବା ସହ ବିଭିନ୍ନ ଉପନିଷଦଗୁଡ଼ିକ ଉପରେ ଟୀକା ରଚନା କରିଥିଲେ । ତାଙ୍କର ରଚନାବଳୀ ଏବଂ ଭାଷ୍ୟଗୁଡ଼ିକ ପରବର୍ତ୍ତୀ ସମୟରେ ସନାତନ ଧର୍ମର ପ୍ରଚାର ପ୍ରସାର ଦିଗରେ ମହତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ବରିଷ୍ଠ ଗ୍ରନ୍ଥକାର
ଭୁବନେଶ୍ୱର



# ଶ୍ରୀକ୍ଷେତ୍ରରେ ତନ୍ତ୍ର ପରମ୍ପରା ଓ ଗୋସାଣୀ ଯାତ୍ରା

**ଡକ୍ଟର ରମାକାନ୍ତ କର**

ଶ୍ରୀକ୍ଷେତ୍ର ଏକ ତନ୍ତ୍ରପୀଠ ଭାବରେ ପୂର୍ବ ପରିଚିତ । ଏହି କ୍ଷେତ୍ରରେ ତନ୍ତ୍ରର ଦେବତା, ତାନ୍ତ୍ରିକ ପରମ୍ପରା ପ୍ରଚଳନର ବହୁ ଦୃଷ୍ଟାନ୍ତ ବିଭିନ୍ନ ଶାସ୍ତ୍ରରେ ପରିଦୃଷ୍ଟ ହୁଏ । ତନ୍ତ୍ରଶାସ୍ତ୍ରରେ ଚତୁଷଷ୍ଠୀ ଯୋଗିନୀ, ଦଶମହାବିଦ୍ୟା, ପୁରୁଷ-ପ୍ରକୃତି ଉପାସନା, ଭୈରବ-ଭୈରବୀ ତତ୍ତ୍ୱାଦିର ବର୍ଣ୍ଣନା ରହିଛି । ଏହି ଯୋଗିନୀର ଅନ୍ୟନାମ ହେଲା ଗୋସାଣୀ । ଏହି ଗୋସାଣୀମାନେ ମୃଣ୍ମୟ ମୂର୍ତ୍ତି ଆକାରରେ ଶରତ କାଳର ଆଶ୍ୱିନ ମାସ ଶୁକ୍ଳପକ୍ଷ ୭ମୀ, ୮ମୀ ଓ ୯ମୀ ତିନିଦିନ ଧରି ଷୋଡଶ ଉପଚାରରେ ପୂଜିତ ହୋଇଥାନ୍ତି । ଆଉ କେହି କେହି ମୃଣ୍ମୟ ମୂର୍ତ୍ତି କୃଷ୍ଣପକ୍ଷ ଅଷ୍ଟମୀଠାରୁ ଆରମ୍ଭ କରି ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଦୀର୍ଘ ୧୬ ଦିନ ଧରି ପୂଜିତ ହୁଅନ୍ତି । ପୂର୍ବ ତିନିଦିନକୁ ତିନିପୂଜା ଓ ପର ୧୬ ଦିନକୁ ଷୋଳପୂଜା କୁହାଯାଏ ।

ଏହି ଯୋଗିନୀମାନେ ବିଭିନ୍ନ ରୂପରେ ବିଭିନ୍ନ ନାମରେ ପୂଜିତ ହୋଇ ଏକାଦଶୀ ଦିନ ବିସର୍ଜିତ ହୁଅନ୍ତି । ଶ୍ରୀକ୍ଷେତ୍ରରେ ଏହି ମୃଣ୍ମୟ ମୁର୍ତ୍ତି ପୂଜା ମଧ୍ୟ ପାରମ୍ପରିକ ନୀତିରେ ପ୍ରଚଳିତ ହୋଇଆସୁଅଛି । ଶାରଦୀୟ ଦିବସରେ ଯେକୌଣସି ମୂର୍ତ୍ତି ହୁଅନ୍ତୁ ନା କାହିଁକି ଏଥିରେ ଚିତ୍‌ଶକ୍ତି ଥିବାରୁ ଏହି ମୂର୍ତ୍ତିଗୁଡ଼ିକୁ ଶକ୍ତି ମନ୍ତ୍ରରେ ହିଁ ପୂଜା କରାଯାଇଥାଏ । ପୁରୀରେ ଶ୍ରୀଜଗନ୍ନାଥ ମନ୍ଦିରର ସେବକମାନଙ୍କ ପରିବାରର କୁମାରୀମାନେ ଯୋଗିନୀ ବେଶ ସାଜି ନାନା ଅଳଙ୍କାରରେ ଭୂଷିତ ହୋଇ ନାରୀ ଶକ୍ତିର ବିକାଶ ନିମିତ୍ତ ବାସୁଆ ବା ବୃଷଭ ଉପାସନା କରନ୍ତି । ଏହି ପୂଜାକୁ ବଳିପୂଜା କୁହାଯାଏ ଓ ସେହି କୁମାରୀମାନଙ୍କୁ ''ନେତପିଲା'' କହନ୍ତି । ଯେଉଁମାନେ ବଳିପୂଜା କରନ୍ତି ସମସ୍ତେ ନେତପିଲା ସାଜନ୍ତି ନାହିଁ । କେବଳ ଯାଚିଜ୍ଞା କରିଥିବା କୁମାରୀମାନେ 'ନେତପିଲା' ବେଶ ହୁଅନ୍ତି । ସମସ୍ତ କୁମାରୀମାନେ ସମବେତ ହୋଇ ସମବେତ କଣ୍ଠରେ ବଳିପୂଜା ଗୀତ ଗାନ କରନ୍ତି - ''ବଳିରେ ବଳି ନକର କଳି କାଲି ଆଣିଦେବି ସରୁ ଚକୁଳି'' ଇତ୍ୟାଦି ଗୀତଗୁଡ଼ିକ ଗାନ କରାଯାଏ ।

ପଞ୍ଚମହାଭୂତ କ୍ଷିତି (ମୃଣ୍ମୟ) ଆପଃ (ଜଳ), ଅଗ୍ନି, ବାୟୁ, ଆକାଶ ଆମ୍ଭମାନଙ୍କର ଜୀବନ ନିର୍ବାହରେ ସହାୟକ । ଏଣୁ ମାନବ ଏହି ପଞ୍ଚ ପ୍ରକୃତିକୁ ଉପାସନା କରେ । ବଟବୃକ୍ଷ ଛାୟା ପ୍ରଦାନ, ତୁଳସୀ ରୋଗସେବା, ବେଲପତ୍ର ରୋଗସେବା ଇତ୍ୟାଦି କରୁଥିବା ବଟ, ଅଶ୍ୱତ୍‌ଥ, ତୁଳସୀ ବିଲ୍ୱପତ୍ରାଦି ବୃକ୍ଷକୁ ସେବା କରାଯାଏ । ପୂଜା ଅର୍ଥ ସେବା । ଯେଉଁ ମୂର୍ତ୍ତି ଅଚେତନ ହେଲେ ମଧ୍ୟ ଯେଉଁଥିରେ ଚେତନ ଶକ୍ତିର ସତ୍ତା ଉପଲବ୍‌ଧି ହୁଏ, ସେହି ମୂର୍ତ୍ତି ହିଁ ପୂଜ୍ୟ । ଆମେ ଜଡ଼ବସ୍ତୁର ପୂଜା କରୁଛୁ ବୋଲି କହିଲେ ଚିତ୍‌ଶକ୍ତିର ପୂଜା କରୁଛୁ । ଆତ୍ମାବିହୀନ ଆମର ଶରୀର ମଧ୍ୟ ଜଡ଼ । ସାରା ସଂସାର ମଧ୍ୟ ଜଡ଼ବସ୍ତୁ । କିନ୍ତୁ ପୂଜା ଏହାର ବ୍ୟାପକ ଅଟେ । ସଃ 'ସ୍ୱ ଓ ତଃପ୍ରୋତଶ୍ଚ ବିଭୁଃ ପ୍ରଜାସୁ' (ଯଜୁ ମାଧ୍ୟଂ ୩୨-୮) ଆମର ପୂଜା କରୁଥିବା ହାତ ହିଁ ଜଡ଼ । ସ୍ତୁତିକର୍ତ୍ତା ଆମର ମୁଖ ଏବଂ ଜିହ୍ୱା ମଧ୍ୟ ଜଡ଼ । ଏଣୁ ଜଡ଼ ପଦାର୍ଥ ବିନା ଏହି ସଂସାରରେ କୌଣସି କାମ



ହୋଇପାରେ ନାହିଁ । ଏହି ଜଡ଼ ପଦାର୍ଥରେ ଚିତ୍‌ଶକ୍ତି ପ୍ରଦାନ କରିବାର ମାଧ୍ୟମ ହିଁ ମୂର୍ତ୍ତିପୂଜା । ଏହି ମୂର୍ତ୍ତିପୂଜାକୁ ପ୍ରତିମା ଓ ପିତୁଳାଦି ପୂଜା କୁହାଯାଏ । ପ୍ରତିମା ଅର୍ଥ ଉପମା । ଏହି ପ୍ରତିମା ଶବ୍ଦର ବ୍ୟବହାର ବହୁ ସ୍ଥାନରେ ଦେଖାଯାଏ ।

ପୂଜା ମୁଖ୍ୟତଃ ଦୁଇପ୍ରକାରର । ଔପଚାରିକ ଓ ମାନସିକ । ପ୍ରାୟ ପ୍ରତ୍ୟେକ ଧର୍ମ ହିଁ ଏହି ମୂର୍ତ୍ତି ପୂଜାକୁ ସ୍ୱୀକାର କରିଛନ୍ତି । ଈଶ୍ୱର ସର୍ବବ୍ୟାପୀ ଅଟନ୍ତି । ସେ ସାକାର ବସ୍ତୁରେ ମଧ୍ୟ ରହିଛନ୍ତି । ମନ୍ତ୍ର ଓ ବ୍ରାହ୍ମଣ ଏହି ଦୁଇଟି ବେଦାନ୍ତର୍ଭୁକ୍ତ ଅଟେ । ବେଦାନ୍ତ ତଥା ତନ୍ତ୍ରୋକ୍ତ ରୀତିରେ ଯୁଗେ ଯୁଗେ ସାରା ବିଶ୍ୱରେ ବିଶେଷତଃ ଭାରତରେ ଅନାଦି କାଳରୁ ମୂର୍ତ୍ତିପୂଜା ହୋଇଆସୁଅଛି ।

ଏହା ବ୍ୟତୀତ ପ୍ରତ୍ୟେକ ସାହି ଓ ଗଳିକନ୍ଦିରେ ଠାକୁରାଣୀମାନଙ୍କର ମୃଣ୍ମୟ ମୂର୍ତ୍ତିମାନ, ନାଗା, ହାଡ଼ିଆବଣିଆ ଭୂତ, ବୁଢାବୁଢ଼ୀ, ମହାଦେବ-ପାର୍ବତୀ ଇତ୍ୟାଦି ମୃଣ୍ମୟ ମୂର୍ତ୍ତି ପୂଜିତ ହୁଅନ୍ତି । ଗୃହେ ଗୃହେ ଦୁର୍ଗାପୂଜା ମହାସମାରୋହରେ ପାଳିତ ହୁଏ । ଘଣ୍ଟ ଘଣ୍ଟା, ବାଦ୍ୟ, ଶଙ୍ଖ ହୁଳହୁଳିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠେ । ପ୍ରତ୍ୟେକ ମୃଣ୍ମୟ ମୂର୍ତ୍ତି ଜରିଜମ୍ପୁରା ଓ ମେଢାଦିରେ ସୁସଜ୍ଜିତ ହୋଇଥାନ୍ତି ଏବଂ ତାଙ୍କର ସମ୍ମୁଖରେ ଭକ୍ତି ଭଜନ, ଓଡ଼ିଶୀ ସଂଗୀତର ଚର୍ଚ୍ଚା ସଙ୍ଗୀତ ବିଶାରଦମାନଙ୍କ ଦ୍ୱାରା କରାଯାଇଥାଏ । ଏହିପରି ସପ୍ତମୀଠାରୁ ଦଶହରା ପର୍ଯ୍ୟନ୍ତ କଟିଯାଏ । ତା' ପରଦିନ ଆସେ ଏକାଦଶୀ ଦିନ । ଏହିଦିନ ଗୋସାଣୀ ଯାତ୍ରାର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ।

ଗୋସାଣୀ ଯାତ୍ରା ଦିନ ସିଂହଦ୍ୱାର ନିକଟରେ ପ୍ରତ୍ୟେକ ଠାକୁରାଣୀଙ୍କ ପାଇଁ ଖଣ୍ଡିଏ ଖଣ୍ଡିଏ ଜାଗା ନିଆଯାଇଥାଏ । ଏହି ସ୍ଥାନରେ ପ୍ରାୟ ଅପରାହ୍ନ ୪ଟାଠାରୁ ଆରମ୍ଭ କରି ପ୍ରାୟ ରାତ୍ର ୧୦ଟା ପର୍ଯ୍ୟନ୍ତ ସମସ୍ତ ସାହି ଓ ଗଳିକନ୍ଦିରୁ ମୃଣ୍ମୟ ମୂର୍ତ୍ତିମାନ ଗୋଟି ଗୋଟି ହୋଇ ଆସି ସ୍ୱ ସ୍ୱ ଆସ୍ଥାନ ଉପରେ ଅବସ୍ଥାନ କରନ୍ତି । ପ୍ରାୟ ୧୦ଟା ସୁଦ୍ଧା ସମସ୍ତ ମୂର୍ତ୍ତି ସିଂହଦ୍ୱାର ସାମନାରେ ଧାଡ଼ି ଧାଡ଼ି ହୋଇ ବସି ସାରିଥାନ୍ତି । ଏହି ଠାକୁରାଣୀ ବା ଗୋସାଣୀ ମୂର୍ତ୍ତିମାନଙ୍କ ମଧ୍ୟରେ ହରଚଣ୍ଡୀ ସାହିର ସବୁଠାରୁ ବଡ଼ ମୃଣ୍ମୟ ମୂର୍ତ୍ତି ''ବାରବାଟୀ'', ତାଙ୍କ ନିକଟରେ ଦୋଳମଣ୍ଡପ ସାହିର ଠାକୁରାଣୀ ''ଜହ୍ନିମୁଣ୍ଡିଆ''। ମହନ୍ତେଶ୍ୱରୀ, ଗେଲବାଇ, ଚକ୍ରକୋଟ ଇତ୍ୟାଦି ହରଚଣ୍ଡୀ ସାହିର, ତା'ପରେ ବନଦୁର୍ଗା ଗୌଡ଼ବାଡ଼ ଜହ୍ନିମୁଣ୍ଡିଆ ସାହିର, ବାଲିସାହିର ଜହ୍ନିଖାଇ, ପଣାପ୍ରିୟା ଠାକୁରାଣୀ, ଗୁଡ଼ିଆ ସାହିର ଯମକୋଟ ଠାକୁରାଣୀ ଓ ଗେଲବାଇ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଏହାବ୍ୟତୀତ ଭୋଗ ଜାଗା ଠାକୁରାଣୀ, ଶୂନ୍ୟଗୋସାଣୀ, ହଜୁରୀ, ହାଡ଼ବାଇ, ବନଦୁର୍ଗା, ଦଶଭୁଜା ଇତ୍ୟାଦି ବିଭିନ୍ନ ନାମରେ ନାମିତ ଗୋସାଣୀମାନେ ଆସି ସମବେତ ହୁଅନ୍ତି ।

ଗୋସାଣୀମାନଙ୍କ ବ୍ୟତୀତ ପ୍ରାୟ ୩ଟି ବଡ଼ନାଗା ଓ ୨ଟି ରାବଣ, ୧ଟି ବୁଢାବୁଢ଼ୀ ଆସି ସେଠାରେ ପହଞ୍ଚନ୍ତି । ବଡ଼ନାଗା ମଧ୍ୟରୁ ଗୋଟିଏ ବାଲିସାହିର, ଦ୍ୱିତୀୟଟି ହରଚଣ୍ଡୀ ସାହିର ଓ ତୃତୀୟଟି ଦୋଳମଣ୍ଡପ ସାହିର । ଏହି ନାଗାମାନଙ୍କ ମଧ୍ୟରେ ପ୍ରତିଯୋଗିତା କରାଯାଏ । ଠାକୁରାଣୀ ମୂର୍ତ୍ତି ଓ ସାଜସଜ୍ଜା ଉପରେ ମଧ୍ୟ ସ୍ୱତନ୍ତ୍ର ପୁରସ୍କାର ଦିଆଯାଏ । ମାର୍କଣ୍ଡେଶ୍ୱର ସାହିର ସମ୍ପ୍ରତି ମଧ୍ୟ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ । ସମୁଦାୟ ୩୦୦/୪୦୦ ମୃଣ୍ମୟ ମୂର୍ତ୍ତି ଏକତ୍ର ଆସି ଜମା ହୁଅନ୍ତି । ପଞ୍ଚକୋଶୀ ତଥା ବହୁ ଦୂରରୁ ଦର୍ଶକମାନେ ଆସି ସେ ସ୍ଥାନ କୋଳାହଳରେ ମୁଖରିତ ହୋଇଉଠେ । ସିଂହଦ୍ୱାରଠାରେ ୪/୫ ଘଣ୍ଟା ଅବସ୍ଥାନ କଲା ପରେ ନିଜ ନିଜ ଆସ୍ଥାନରୁ ଉଠି ପୁରୀ ସହର ନିକଟସ୍ଥ ନରେନ୍ଦ୍ର ନିକଟ ମୂଷା ନଈରେ ବିସର୍ଜିତ ହୁଅନ୍ତି ।

ଏକାଦଶୀ ପୂର୍ବଦିନ ଦଶହରା । ଏହିଦିନ ଶ୍ରୀକ୍ଷେତ୍ରରେ ଗୋସାଣୀମାନଙ୍କ ନିକଟରେ ମହୋତ୍ସବ ହୁଏ । ଦୋକାନ ବଜାରର ସାଜସଜ୍ଜା ଓ ପିଲାମାନଙ୍କର ନୂତନ ପୋଷାକ ପରିଧାନ ଓ ସମସ୍ତ ଜନସାଧାରଣଙ୍କ ମନରେ ଭରିଥାଏ ଆନନ୍ଦ ଓ ଉଲ୍ଲାସ । ଏହି ଦୃଶ୍ୟ ଅବଶ୍ୟ ଉପଭୋଗ୍ୟ । ଏହିଦିନ ରାତ୍ରିରେ ବାଲିସାହିର 'କାକୁଡ଼ିଖାଇ' ଠାକୁରାଣୀ ସମସ୍ତଙ୍କର 'ମାଆ' ବୋଲି




ସମ୍ବୋଧନ କରାଯାଏ । ଏଣୁ ସମସ୍ତ ଠାକୁରାଣୀ ବିସର୍ଜନ ହେବା ପୂର୍ବରୁ ଦଶହରା ରାତ୍ରରେ ଗୋପନୀୟ ଭାବରେ ଏହି ଠାକୁରାଣୀଙ୍କୁ ବିସର୍ଜନ କରାଯାଏ । ଏହାଛଡ଼ା ଶ୍ରୀକ୍ଷେତ୍ରରେ ଶାକ୍ତଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୁଏ । ଏହାର ପାରମ୍ପରିକ ବିଧିବିଧାନ ମଧ୍ୟ ଶାକ୍ତସଂସ୍କୃତି ଅନୁମୋଦିତ । ଏହି ଗୋସାଣୀ ଯାତ୍ରା ଶାକ୍ତସଂସ୍କୃତିର ପ୍ରସାର ଦିଗରେ ସହାୟକ ।

ସଂପାଦକ, ଯୋଗ ପଲ୍ଲବ
ଯୋଗ ନିକେତନ, ଗୁଡ଼ିଆ ସାହି, ପୁରୀ-୧

# ନବ ରାତ୍ରେ ନବକୁମାରୀ ପୂଜା

ଇଂଜିନିୟର ରଘୁନାଥ ପାତ୍ର

ମାଆର ପଣତ କାନି ସୁରକ୍ଷିତ
ସନ୍ତାନଗଣ ସର୍ବଦା
ମାତୃଶକ୍ତି ପୂଜା କରି ସେ ଆସୁଛି
ଆଦିମ କାଳୁ ପ୍ରମଦା !
ସୃଷ୍ଟି ସ୍ଥିତି ଲୟ ଉତ୍ସ
ମହାଶକ୍ତି ଦ୍ୱାରା ସକଳ ସମ୍ଭବ
ଶକ୍ତିହୀନ ଜୀବ ତୁଚ୍ଛ ।
ଶରତ ଋତୁରେ ନବ କୁମାରୀଙ୍କ
ପୂଜାରମ୍ଭ 'ନବରାତ୍ର'
ପ୍ରଥମ ଦିନରେ ଗୋଟିଏ କୁମାରୀ
ଦ୍ୱିତୀୟେ ଦି'ଜଣ ମାତ୍ର ।
ତୃତୀୟରେ ତିନି ଜଣ
ଏହିପରି ନିତି ବଢ଼ି ବଢ଼ି ଚାଲେ
ନବମୀରେ ନଅ ଜଣ ।
ପ୍ରଥମ ଦିନରେ ଦୁଇ ବରଷର
ଦ୍ୱିତୀୟେ ତିନି ବରଷ
ନବମୀରେ ଦଶ ବରଷ କନ୍ୟାର
ପୂଜା ପରେ ପୂଜା ଶେଷ ।
ପ୍ରଥମ କୁମାରୀ ଦେବୀ
ଦ୍ୱିତୀୟେ ତ୍ରିମୂର୍ତ୍ତି ତୃତୀୟେ କଲ୍ୟାଣୀ
ଚତୁର୍ଥେ ରୋହିଣୀ ଦେବୀ ।
ପଞ୍ଚମେ କାଳିକା ଷଷ୍ଠରେ ଚଣ୍ଡିକା
ସପ୍ତମେ ଶାମ୍ଭବୀ ପୂଜା
ଅଷ୍ଟମରେ ଦୁର୍ଗା ନବମେ ସୁଭଦ୍ରା
ନାମେ ଉଡ଼େ ଦେବୀ ଧ୍ୱଜା
ଧର୍ମ ଅର୍ଥ କାମ ମୋକ୍ଷ
ଚତୁର୍ବର୍ଗ କୃପା ପ୍ରାର୍ଥୀ ହୁଏ ଜୀବ
ଭକ୍ତଙ୍କୁ ଦିଅନ୍ତି ସୁଖ ।
ସକଳ ଅଭୀଷ୍ଟ ପୂର୍ଣ୍ଣ ଅଭିଳାଷେ
ସୁଭଦ୍ରାଙ୍କୁ ପୂଜି ଶେଷେ
ନବରାତ୍ରେ ପୂଜି ନବକୁମାରୀଙ୍କୁ
ମେଲାଣି ମାଗନ୍ତି ତୋଷେ ।
ନବ ବସ୍ତ୍ର, ଆଭୂଷଣ
ମାଳା ଓ ଚନ୍ଦନ ଦେଇ ତୋଷିଥାନ୍ତି
ଭକ୍ତଗଣ ନଅ ଦିନ ।
ସତ୍ ଚିତ୍ ଆନନ୍ଦ ପରଂବ୍ରହ୍ମଙ୍କର
ସତ୍ତ୍ୱ ରଜ ତମ ଶକ୍ତି
ଚଉଦ ଭୁବନ ପରିବ୍ୟାପ୍ତ ସଦା
ଗାଏ ଏ ଦେଶ ସଂସ୍କୃତି
ଶରତ ବସନ୍ତେ ଶକ୍ତି
ପୂଜା ଆରାଧନା ଦେଖି କବି ରଘୁ
ଆଶା କରେ ଗତିମୁକ୍ତି ।

ବୃନ୍ଦାବନ ଧାମ
ଲୋକନାଥ ରୋଡ୍
(ପାଟଣାହାଟ ସାହି ଛକ), ପୁରୀ – ୭୫୨୦୦୧





# ମହିଷମର୍ଦ୍ଦିନୀ

ରବୀନ୍ଦ୍ର କୁମାର ବେହୁରିଆ

ପ୍ରାକ୍ ବୈଦିକ ଯୁଗରୁ ପବିତ୍ର ଭାରତବର୍ଷରେ ଶକ୍ତି ଉପାସନାର ଅବିଚ୍ଛିନ୍ନ ଧାରା ପ୍ରବାହିତ । ମାତୃପୂଜାର ପରିକଳ୍ପନା ସଚେତନ ମନୁଷ୍ୟର ଏକ ଶ୍ରେଷ୍ଠ ଉପଲବ୍ଧି କହିଲେ ଅତ୍ୟୁକ୍ତି ହେବ ନାହିଁ । ଜ୍ଞାନୀ ତଥା ଅଜ୍ଞାନ, ସୃଜନଶୀଳ ବ୍ୟକ୍ତିମାନେ ମାତୃଶକ୍ତିକୁ ବିଭିନ୍ନ ଭାବରେ ରୂପ ଦେଇଛନ୍ତି । କେତେବେଳେ ସେ ଜଗଜ୍ଜନନୀ, ଶାନ୍ତ, ସହାନୁଭୂତିଶୀଳା, ସନ୍ତୋଷୀ, ସର୍ବମଙ୍ଗଳକାରିଣୀ ସର୍ବ ମଙ୍ଗଳା, ଅନ୍ୟ ଭାବରେ ସେ ଭୀମା, ଭୀଷଣା, ଭୟଙ୍କରୀ, କାଳୀ, କରାଳୀ, ଦୁର୍ଗା, ଦୁର୍ଗତିନାଶିନୀ । ବେଦ, ଉପନିଷଦ, ସଂହିତା, ବ୍ରାହ୍ମଣ, ଆରଣ୍ୟକ, ସ୍ମୃତି ପୁରାଣ, ତନ୍ତ୍ର ଓ ଅନ୍ୟାନ୍ୟ ଶକ୍ତି ସାହିତ୍ୟରେ ମହାଶକ୍ତିଙ୍କର ମାହାତ୍ମ୍ୟ ପର୍ଯ୍ୟାପ୍ତ ରୂପେ ଚିତ୍ରିତ । ସଂସ୍କୃତିର ପ୍ରବହମାନ ଧାରାରେ ପବିତ୍ର ଭାରତବର୍ଷର କୋଣେ ଅନୁକୋଣେ ଅଗଣିତ ପୀଠ, ମନ୍ଦିର ତଥା ଆସ୍ଥାନ ପ୍ରତିଷ୍ଠିତ ହୋଇ ଆକୁମାରୀ ହିମାଳୟ ସମଗ୍ର ଭାରତବର୍ଷରେ ସମନ୍ୱୟର ବାର୍ତ୍ତା ପ୍ରଚାରିତ । ମାତୃଶକ୍ତି ବିଷୟରେ ସାଧାରଣ ଲୋକ ଧାରଣା ସୀମିତ ରହିଛି ଲୋକ ବିଶ୍ୱାସ, ଲୋକ ସାହିତ୍ୟ ଓ ଲୋକ କଳାରେ ।



ଶକ୍ତି ଓ ଶାକ୍ତ ବିଶ୍ୱାସର ପ୍ରାରମ୍ଭ କେବେ, ତାହା ଜାଣିବା ସମ୍ଭବ ନୁହେଁ । ତେବେ ଆଦ୍ୟାଶକ୍ତି ଦେବୀ ମାତୃଶକ୍ତି ରୂପେ ପରିକଳ୍ପିତା ହୋଇଥିବା ବେଳେ ଏହାର ଉପାସକମାନେ 'ଶାକ୍ତ' ନାମରେ ଅଭିହିତ ହୁଅନ୍ତି । ପୃଥିବୀ ମାତାଙ୍କ ପୂଜା ସଂପର୍କିତ ଅନୁଷ୍ଠାନରୁ ଶାକ୍ତ ସଂସ୍କୃତି ବିକାଶ ଲାଭ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଦେଶ ବିଦେଶରେ ବହୁ ବିଦ୍ୱାନ୍ ମତ ଦିଅନ୍ତି ଯେ ଭାରତ ମାତୃ ପୂଜାର ଆଦିପୀଠ । ଏହା ବ୍ୟତୀତ ପୃଥିବୀର ଅନ୍ୟ କେତେକ ପ୍ରାଚୀନ ସଂସ୍କୃତି ସଂପନ୍ନ ଦେଶରେ ମଧ୍ୟ ମାତୃପୂଜାର ପରମ୍ପରା ଦେଖିବାକୁ ମିଳେ । ସେହି ଦେଶମାନଙ୍କ ମଧ୍ୟରେ ମେସୋପଟାମିଆ, ଇଜିପ୍ଟ,



ଇରାନ, ଆଫ୍ରିକା ଇତ୍ୟାଦି ଅନ୍ୟତମ । ଭାରତର ପ୍ରାଚୀନତମ ଧର୍ମଗ୍ରନ୍ଥ ବେଦରେ ବହୁ ପୁରୁଷ ଦେବତାଙ୍କ ବ୍ୟତୀତ ଅଦିତି, ସରସ୍ୱତୀ, ପୃଥିବୀ, ରାତ୍ରି, ଉଷା, ଇଡ଼ା, ଧୀଷଣା, ରୋଦସି, ଶଚୀ, ଶ୍ରଦ୍ଧା, ଗୌରୀ, ସ୍ୱାହାଙ୍କ ଭଳି ପ୍ରାୟ ଚାଳିଶି ଦେବୀଙ୍କ ନାମ ଦେଖାଯାଏ । ଏମାନେ ପ୍ରାୟ ପ୍ରକୃତିର ବିଭିନ୍ନ ରୂପ ଓ ଗୁଣକୁ ନେଇ ପରିକଳ୍ପିତା । ଏଣୁ ପ୍ରତ୍ୟେକଙ୍କ ଭୂମିକାର ଗୁରୁତ୍ୱ ଭିନ୍ନ ଭିନ୍ନ । ତେବେ ଋଗ୍‌ବେଦରେ ବର୍ଣ୍ଣିତ ବାଗ୍‌ଦେବୀ ସ୍ୱକ୍ତକୁ ମାର୍ଜିତ ଶକ୍ତି ତତ୍ତ୍ୱର ଆଦ୍ୟ ଉତ୍ସଭାବେ ଗ୍ରହଣ କରାଯାଏ । ବୈଦିକ ଋଷି ଅମ୍ଭୃଣଙ୍କ କନ୍ୟା ବାକ୍ ନିଜ ମଧ୍ୟରେ ବିଶ୍ୱଜନନୀ ବା ଶକ୍ତି ଚେତନା ଉପଲବ୍‌ଧି କରି ଯେଉଁ ଆଠଗୋଟି ମନ୍ତ୍ର ପ୍ରଥମେ ଉଚ୍ଚାରଣ କରିଛନ୍ତି, ତାହା ହିଁ ଦେବୀ ସ୍ୱକ୍ତ ଭାବେ ପରିଚିତ । ଏଥିରେ ସମଗ୍ର ବିଶ୍ୱର ଦେବୀ ଶକ୍ତି ସତ୍ତାକୁ ଅତି ସୂକ୍ଷ୍ମ ଭାବରେ ସୂଚିତ କରାଯାଇଛି ।

''ଅର୍ଥାତ୍ ମୁଁ ରୁଦ୍ରଗଣ, ଅଷ୍ଟବସୁ, ଆଦିତ୍ୟଗଣ ଓ ବିଶ୍ୱଦେବତା ସହିତ ବିଚରଣ କରୁଅଛି । ମୁଁ ହିଁ ମିତ୍ର ଓ ବରୁଣ, ଇନ୍ଦ୍ର, ଅଗ୍ନି ଏବଂ ଅଶ୍ୱିନୀ କୁମାରଦ୍ୱୟଙ୍କୁ ଧାରଣ କରିଅଛି । ମୁଁ ହିଁ ଶତ୍ରୁନାଶନ ସୋମଦେବ ତ୍ୱଷ୍ଟା, ପୁଷ୍ପା ଓ ଭଗଙ୍କୁ ଧାରଣ କରିଅଛି । ଦେବତୃପ୍ତି ଯଜ୍ଞ ନିମିତ୍ତ ମୁଁ ଯଜମାନଙ୍କ ପାଇଁ ଧନର ବିଧାନ କରେ । ମୁଁ ଅଖିଳ ବିଶ୍ୱର ଅଧିଷ୍ଠାତ୍ରୀ, ସାଧକଙ୍କର ଧନଦାତ୍ରୀ ଏବଂ ବହୁ ସ୍ଥାନରେ ବହୁ ରୂପରେ ଅବସ୍ଥିତ । ଦେବତାବୃନ୍ଦ ମୋର ସ୍ତୁତି କରିଥାନ୍ତି । ମୋ କୃପାରେ ଜୀବ ଜଗତ ଅନ୍ନ ପ୍ରସାଦ ଲାଭ କରନ୍ତି । ଯେ ମୋର ମାହାତ୍ମ୍ୟ ସଂପର୍କରେ ଅଜ୍ଞ ସେ କ୍ଷୟପ୍ରାପ୍ତ ହୁଏ । ମୁଁ ଦେବତା, ବ୍ରାହ୍ମଣ ତଥା ମାନବଙ୍କୁ ବ୍ରହ୍ମଜ୍ଞାନ ଦାନ କରେ । ଅଖିଳ ବିଶ୍ୱ ନିମିତ୍ତ ମୁଁ ସଂଗ୍ରାମ କରେ । ଏହି ଦୃଶ୍ୟମାନ ଜଗତ ମୋଠାରୁ ସୃଷ୍ଟ । ମୁଁ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ । ମୋର ମହିମା ଦ୍ୟୁଲୋକ ଓ ପୃଥିବୀକୁ ଅତିକ୍ରମ କରିଅଛି ।''

ଆଜିକୁ ପାଞ୍ଚହଜାର ବର୍ଷ ପୂର୍ବ ସିନ୍ଧୁ ସଭ୍ୟତାର ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ କେତେକ ମୋହର ବା ସିଲ୍‌ରେ ଏହି ଆଖ୍ୟାନର ଆଦ୍ୟ ସୂଚନା ମିଳେ । ମହେଞ୍ଜୋଦାରରୁ ପ୍ରାପ୍ତ ଏକ ସିଲ୍‌ରେ ଏକ ଦୁଷ୍ଟ ମହିଷ ସହିତ ଲଢୁଥିବା କେତେକ ବ୍ୟକ୍ତିଙ୍କ ଦୃଶ୍ୟ ରହିଛି । ସେହିପରି ଅନ୍ୟ କେତୋଟି ସିଲ୍‌ରେ ବୃକ୍ଷ କିମ୍ବା ମଞ୍ଚ ଉପରେ ରହିଥିବା ଜଣେ ନାରୀ ଓ ନିକଟରେ ଥିବା ବ୍ୟାଘ୍ରର ଚିତ୍ର, ବନବାସିନୀ କୌଣସି ଦେବୀଙ୍କର ସୂଚନା ଦିଏ । ଏହା ବ୍ୟତୀତ ପୋଡ଼ାମାଟିର ଅନେକ ନାରୀ-ପ୍ରତିମା ସେସମୟରେ ମାତୃଶକ୍ତି ପୂଜାର ପ୍ରଚଳନକୁ ବୁଝାଏ । ଅର୍ଥାତ୍, ସାମୂହିକ ଭାବେ ଏହିସବୁ ତଥ୍ୟ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ଆଦ୍ୟ ରୂପର ଉତ୍ସ ହୋଇଥିବା ସମ୍ଭବ ।

ଋଗ୍‌ବେଦ ଭିନ୍ନ ସାମବେଦ, ଅଥର୍ବ ବେଦ, ଋଗ୍‌ବେଦୀୟ ସଂଖ୍ୟାୟନ ଧାରଣ୍ୟକ, ସଂଖ୍ୟାୟନ ଶୌଚସୂତ୍ର, ବୃହଦ୍ଧାରିତ ସଂହିତା, ବଶିଷ୍ଠ ଧର୍ମଶାସ୍ତ୍ର, କୌଶିକ ସୂତ୍ର ପ୍ରଭୃତି ବୈଦିକ ସାହିତ୍ୟରେ ଶକ୍ତି ଉପାସନାର ପର୍ଯ୍ୟାପ୍ତ ପ୍ରମାଣ ଉପଲବ୍ଧ । ଅନୁଭୂତ ହୁଏ, ବୈଦିକ ଋଷିବୃନ୍ଦ ସମଗ୍ର ବିଶ୍ୱର କୋଣେ ଅନୁକୋଣେ ଦେବୀ ସତ୍ତାର ପୂର୍ଣ୍ଣ ଉପଲବ୍‌ଧି କରିଥିଲେ । ସକଳ ଦେବଦେବୀଙ୍କ ଆହ୍ୱାନ ନିମିତ୍ତ ସେ ଯଜ୍ଞ ମନ୍ତ୍ରରୂପା ଏବଂ ଉଦାତ୍ତ, ଅନୁଦାତ୍ତ ଓ ଆକାରାଦି ସ୍ୱରୂପା ଅଟନ୍ତି । ଅଧିକନ୍ତୁ ସେ ଅମୃତ ରୂପା ଓ ମ, ଉ, ମ୍, ତ୍ରିବିଧ ମାତ୍ରା ରୂପରେ ଅବସ୍ଥିତ ପ୍ରବଣରୂପା ଅଟନ୍ତି । ବିଶେଷତଃ ସେ ଉଚ୍ଚାରଣ ବିହୀନ ଅର୍ଦ୍ଧମାତ୍ରା ସ୍ୱରୂପା, ବାକ୍ୟାତୀତା, ନିର୍ଗୁଣା, ଗାୟତ୍ରୀ ମନ୍ତ୍ରସ୍ୱରୂପା, ଶ୍ରେଷ୍ଠା ଶକ୍ତି ତଥା ଆଦିମାତା । ସେ' ହିଁ ବ୍ରହ୍ମ ସ୍ୱରୂପା ଜ୍ଞାନମୟୀ ସାବିତ୍ରୀ ।

ଅହଂ ବ୍ରହ୍ମ ସ୍ୱରୂପିଣୀ ମତଃ ପ୍ରକୃତି
ପୁରୁଷାତ୍ମକ ଜଗତ । ଶୂନ୍ୟଂଚା ଶୂନ୍ୟଂଚ
ଅହମାନନ୍ଦାନାନନ୍ଦୌ ଅହଂ ବିଜ୍ଞାନାବିଜ୍ଞାନେ
ଅହଂ ବ୍ରହ୍ମାବ୍ରହ୍ମାଣୀ ବେଦିତବ୍ୟେ, ଅହଂ
ପଞ୍ଚଭୂତାନାଂ ପଞ୍ଚଭୂତାନି । ଅହମଖିଳଂ ଜଗତ୍ ।

ଋଗ୍‌ବେଦରେ ଅନେକ ପୌରାଣିକ ଦେବୀଙ୍କ ନାମ ଦେଖାଯାଏ ନାହିଁ । ତେବେ ବୈଦିକ ସାହିତ୍ୟର ଅଙ୍ଗ କୁହାଯାଉଥିବା ବାଜସେନେୟୀ ସଂହିତାରେ ଅମ୍ବିକାଙ୍କୁ ରୁଦ୍ରଙ୍କ ଭଗିନୀ ବୋଲି ବର୍ଣ୍ଣନା କରାଯାଇଛି ଏବଂ ତା'ର



ପରବର୍ତ୍ତୀ ସମୟରେ ତାଙ୍କୁ ଜଗତ୍‌ଜନନୀ ଆଖ୍ୟା ଦିଆଯାଇଛି । ତୈତ୍ତିରୀୟ ଆରଣ୍ୟକ ଓ କେନ ଉପନିଷଦରେ ଉମା ଓ ପାର୍ବତୀ ସାଧାରଣତଃ ହୈମବତୀ ନାମରେ ପରିଚିତ ଏବଂ ସେ ଶିବଙ୍କ ପତ୍ନୀ ଅଟନ୍ତି । ଭାଗବତରେ ଦୁର୍ଗା ବା ଏକାନଂଶା କୃଷ୍ଣଙ୍କ ଭଗିନୀ ଅଟନ୍ତି । ମହାଭାରତର ଭୀଷ୍ମ ପର୍ବରେ ଅର୍ଜୁନ ଉମାଙ୍କୁ ଶିବଙ୍କ ଶକ୍ତି ଭାବରେ ଆରାଧନା କରିଛନ୍ତି । ବିରାଟ ପର୍ବରେ ଯୁଧିଷ୍ଠିର ତାଙ୍କୁ ନାରାୟଣ ଶକ୍ତିଭାବେ ସ୍ତୁତି କରିଥିବା ଜଣାଯାଏ । ହରିବଂଶରେ ସେ ସ୍ୱଷ୍ଟ ଭାବେ ମହିଷମର୍ଦ୍ଦିନୀ ଭାବେ ବର୍ଣ୍ଣିତ ହେବା ସଂଗେ ସଂଗେ ଯୁଦ୍ଧରେ ବିଜୟ ପାଇଁ ତାଙ୍କ ପୂଜାର୍ଚ୍ଚନାର ସୂଚନା ମିଳେ । ଏଠାରେ ଦେବୀ ବିନ୍ଧ୍ୟବାସିନୀ ନାମରେ ପରିଚିତା । ଗୁପ୍ତଯୁଗ ଅର୍ଥାତ୍ ଖ୍ରୀ:୪ର୍ଥ-୫ମ ଶତାବ୍ଦୀ ବେଳକୁ ଶକ୍ତିପୂଜା ତଥା ତନ୍ତ୍ରପୂଜାର ପ୍ରସାର ଘଟିଲା । ସେହି ସମୟରେ ରଚିତ ମାର୍କଣ୍ଡେୟ ପୁରାଣର ଦେବୀ-ମାହାତ୍ମ୍ୟରେ ଦୁର୍ଗାଙ୍କର ପ୍ରଶସ୍ତ କରାଯାଇଛି । ପ୍ରକାଶ ଥାଉ କି, ଏହା ପରବର୍ତ୍ତୀ ସମୟର ମୂର୍ତ୍ତିକଳାକୁ ପ୍ରଭାବିତ କରିଥିବା ଜଣାଯାଏ । ସେହିପରି ଶ୍ରୀ: ୧୪ଶ-୧୫ଶ ଶତାବ୍ଦୀରେ ରଚିତ ମୟୂରଙ୍କ ପ୍ରଖ୍ୟାତ ତନ୍ତ୍ରଶାସ୍ତ୍ର ''ତନ୍ତ୍ରସାର''ରେ ମଧ୍ୟ ମହିଷାସୁର ସହିତ ଦେବୀଙ୍କ ଭୀଷଣ ଯୁଦ୍ଧର ଅବତାରଣା ଜନମାନସକୁ ପ୍ରଭାବିତ କରିଛି ।

ସଂପ୍ରତି ପ୍ରଚଳିତ ଯେକୌଣସି ଶାସ୍ତ୍ରୀୟ ଦେବୀପୂଜାରେ ସପ୍ତଶତୀ ଚଣ୍ଡୀକୁ ବିଶେଷ ଗୁରୁତ୍ୱ ଦିଆଯାଇଥାଏ । ଏହା ମାର୍କଣ୍ଡେୟ ପୁରାଣର ଏକ ଅଂଶ । ଶିବ ଭକ୍ତ ଋଷି, ମାର୍କଣ୍ଡେୟଙ୍କ ଦ୍ୱାରା ରଚିତ ଏହି ଗ୍ରନ୍ଥରେ ଶକ୍ତି ତତ୍ତ୍ୱର ବିସ୍ତୃତ ପରିକଳ୍ପନା କରାଯାଇଛି । ଏହା ଭାରତୀୟ ମାତୃପୂଜା ଦାର୍ଶନିକ ଚିନ୍ତାଧାରାର ଏକ ସର୍ବଶ୍ରେଷ୍ଠ ରଚନା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ମହାନ୍ ଗ୍ରନ୍ଥ ୧୩୭ ଅଧ୍ୟାୟ ବିଶିଷ୍ଟ । ଏହାର ୮୧ ଅଧ୍ୟାୟଠାରୁ ୯୩ ଅଧ୍ୟାୟ ମଧ୍ୟରେ ଜଗଜ୍ଜନନୀ ଭଗବତୀ ଦୁର୍ଗାଙ୍କର ଅଚିନ୍ତ୍ୟ ଶକ୍ତି ଓ ଅନନ୍ତ ମହିମା ବିଷୟକ ବିଭିନ୍ନ ଚରିତ୍ର ବର୍ଣ୍ଣିତ ହୋଇଛି ଏବଂ ସମସ୍ତ ବିଷୟକୁ ତିନି ଭାଗରେ ବିଭକ୍ତ କରାଯାଇଛି, ଯଥା : ପ୍ରଥମ ଚରିତ୍ର, ମଧ୍ୟମ ଚରିତ୍ର ଓ ଉତ୍ତମ ଚରିତ୍ର । ୮୧ ତମ ଚରିତ୍ର ହେଉଛି ପ୍ରଥମ ଚରିତ୍ର ଅନ୍ତର୍ଭୁକ୍ତ ଏବଂ ଏଥିମଧ୍ୟରେ ଦେବୀଙ୍କର ଆବିର୍ଭାବ ତଥା ତାଙ୍କଦ୍ୱାରା ମଧୁକୈଟଭ ଅସୁରର ବଧ ବିଷୟ ବର୍ଣ୍ଣିତ ହୋଇଛି । ୮୨, ୮୩ ଓ ୮୪ ଅଧ୍ୟାୟ ମଧ୍ୟମ ନାମରେ ଖ୍ୟାତ । ଏଥିରେ ଦେବୀ ଦୁର୍ଗାଙ୍କର ଆବିର୍ଭାବ ମହିଷାସୁର ବିଷୟ ବର୍ଣ୍ଣିତ । ଅବଶିଷ୍ଟ ୮୫ ଅଧ୍ୟାୟଠାରୁ ୯୩ ଅଧ୍ୟାୟ ପର୍ଯ୍ୟନ୍ତ ଅଂଶ ଉତ୍ତର ଚରିତ୍ର ନାମରେ ଖ୍ୟାତ । ଏଥିରେ ଦେବୀଙ୍କ ଦ୍ୱାରା ଧୂମ୍ରଲୋଚନ, ଚଣ୍ଡ, ମୁଣ୍ଡ, ରକ୍ତ ବୀର୍ଯ୍ୟ, ଶୁମ୍ଭ, ନିଶୁମ୍ଭ ପ୍ରଭୃତି ଅସୁରମାନଙ୍କ ସଂହାର, ନାରାୟଣୀ ସ୍ତୁତି ଓ ଦେବୀ ମାହାତ୍ମ୍ୟର ଫଳଶ୍ରୁତି ଓ ଦେବୀଙ୍କ ବର ପ୍ରଦାନ ବିଷୟ ବର୍ଣ୍ଣିତ ହୋଇଛି । ମୋଟ ଉପରେ ତେରଗୋଟି ଅଧ୍ୟାୟରେ ଶକ୍ତିମୟୀ ଦେବୀଙ୍କର ଅଚିନ୍ତ୍ୟ ଶକ୍ତି ବିଷୟ ବର୍ଣ୍ଣିତ ହେବା ସଂଗେ ସଂଗେ ତାହାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ଅଧିକାରିଣୀ ତଥା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କଠାରୁ ମଧ୍ୟ ମହିମାଶାଳିନୀ ବୋଲି ପ୍ରତିପାଦନ କରାଯାଇଛି ।

ମାର୍କଣ୍ଡେୟ ପୁରାଣ ଅନୁଯାୟୀ ଦେବୀଙ୍କ ଅଲୌକିକ ରୂପ ପରିକଳ୍ପନା ଏହିକି : ଶିବଙ୍କ ତେଜରୁ ମୁଖମଣ୍ଡଳ, ଯମଙ୍କ ତେଜରୁ କେଶରାଶି, ବିଷ୍ଣୁଙ୍କ ବାହୁଯୁଗଳ, ଚନ୍ଦ୍ରଙ୍କ ତେଜରୁ କୁଚଯୁଗଳ, ଇନ୍ଦ୍ରଙ୍କ ତେଜରୁ କଟିଭାଗ, ବରୁଣଙ୍କ ତେଜରୁ ଜଘନ, ପୃଥିବୀଙ୍କ ତେଜରୁ ନିତମ୍ବ, ବ୍ରହ୍ମାଙ୍କ ତେଜରୁ ଦୁଇ ଚରଣ, ସୂର୍ଯ୍ୟଙ୍କ ତେଜରୁ ପଦାଙ୍ଗୁଳି, କୁବେରଙ୍କ ତେଜରୁ ନାସିକା, ପ୍ରଜାପତିଙ୍କ ତେଜରୁ ଦନ୍ତପଂକ୍ତି, ଅଗ୍ନିଙ୍କ ତେଜରୁ ତ୍ରିନୟନ ଏବଂ ବାୟୁଙ୍କ ତେଜରୁ କର୍ଣ୍ଣ ଦ୍ୱୟ ଉତ୍ପନ୍ନ ହୋଇଛି । ଦେବୀଙ୍କ ବିଭିନ୍ନ ଗୁଣ ସହିତ ବର୍ଣ୍ଣତତ୍ତ୍ୱ ମଧ୍ୟ ସଂପର୍କିତ । ସେ ମୁକ୍ତି ପ୍ରଦାୟିନୀ ଭାବରେ ଶ୍ୱେତବର୍ଣ୍ଣା ହୋଇଥିବା ବେଳେ ଭକ୍ତମାନଙ୍କ ଜ୍ଞାନର ସଂଚାଳିକା ବା ଶାସନକାରିଣୀ ଭାବେ ରକ୍ତବର୍ଣ୍ଣା ଅଟନ୍ତି । ଧନ ଓ ଐଶ୍ୱର୍ଯ୍ୟ ପ୍ରଦାୟିନୀ ରୂପରେ ସେ କେଶର ବର୍ଣ୍ଣା ଏବଂ ବିଶ୍ୱର ସଂହାରକାରିଣୀ ଭାବରେ ଦେବୀ କୃଷ୍ଣା ଅଟନ୍ତି ।

ମହିଷାସୁର ସହିତ ଦେବୀଙ୍କ ଯୁଦ୍ଧର କାରଣ ଓ ଯୁଦ୍ଧର ବର୍ଣ୍ଣନା କରିବାକୁ ଯାଇ ବିଭିନ୍ନ ପୁରାଣରେ କେତେକ ଭିନ୍ନତା ପରିଲକ୍ଷିତ ହେଉଥିବା ସତ୍ତ୍ୱେ ଦେବୀଙ୍କୁ ସର୍ବଶକ୍ତି

ସଂପନ୍ନ କରିବା ନିମନ୍ତେ ଦେବତାମାନେ ନିଜ ନିଜର ତେଜ ସମେତ ମୁଖ୍ୟ ଅସ୍ତ୍ର ଶସ୍ତ୍ର, ବସ୍ତ୍ର-ଭୂଷଣ ଓ ଦ୍ରବ୍ୟମାନ ଦେଇଥିବା ସୂଚନା ମିଳେ । ଦେବୀ ମାହାତ୍ମ୍ୟରେ ଏହାର ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳ । ଏହି ଶାସ୍ତ୍ର ଅନୁସାରେ ଦେବୀଙ୍କ ହସ୍ତରେ ଦେଖାଯାଏ ଶିବଙ୍କ ତ୍ରିଶୂଳ, ବିଷ୍ଣୁଙ୍କ ଶଙ୍ଖ ଓ ଚକ୍ର, ବାୟୁ ଦେଇଥିବା ଧନୁ ଓ ଶରପୂର୍ଣ୍ଣ ଅକ୍ଷୟତୂଣୀର, ଇନ୍ଦ୍ରଙ୍କ ବଜ୍ର ଓ ଐରାବତ ହସ୍ତୀର ଘଣ୍ଟା, ଯମଙ୍କ ଦଣ୍ଡ ଓ କାଳପାଶ, କାଳଙ୍କ ଖଡ୍‌ଗ ଓ ଢାଲ, ବିଶ୍ୱକର୍ମାଙ୍କ ଦିବ୍ୟ କୁଠାର, ବହୁ ଅସ୍ତ୍ର ଶସ୍ତ୍ର ଓ ଦେବୀଙ୍କ ଭୂଷଣ ନିମନ୍ତେ ଅଳଙ୍କାର । ଶେଷନାଗ ଦେବୀଙ୍କୁ ଦେଇଥିଲେ ନାଗପାଶ ଓ କଣ୍ଠ ନିମନ୍ତେ ମଣିଯୁକ୍ତ ନାଗହାର । ଅନ୍ୟାନ୍ୟ ପଦାର୍ଥ ମଧ୍ୟରେ ବରୁଣ ଦେଇଥିବା ଅକ୍ଷୟ ବସ୍ତ୍ର ଓ ମୁକ୍ତାହାର, ପ୍ରଜାପତିଙ୍କ ଅକ୍ଷମାଳା, ବ୍ରହ୍ମାଙ୍କ କମଣ୍ଡଳୁ ଓ କୁବେରଙ୍କ ସୁରାପାତ୍ର ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ଦେବୀଙ୍କ ବାହନ ନିମନ୍ତେ ହିମବାନ ଦେଇଥିବା ସିଂହ ଉଲ୍ଲେଖଯୋଗ୍ୟ ।

ପୁରାଣ ଯୁଗରେ ଭାରତରେ ଅନେକ ଶକ୍ତିପୀଠ ସୃଷ୍ଟି ହୋଇଥିଲା । ପୁରାଣ ବର୍ଣ୍ଣନାନୁଯାୟୀ ଦକ୍ଷ ପ୍ରଜାପତିଙ୍କ ଯଜ୍ଞ ଧ୍ୱଂସ ପରେ ସତୀଙ୍କ ମୃତ୍ୟୁ ଶରୀରର ଦେହାବଶେଷ ପତିତ ହୋଇଥିବା ସ୍ଥାନଗୁଡ଼ିକ ପ୍ରସିଦ୍ଧ ଶକ୍ତିପୀଠର ମାନ୍ୟତା ଲାଭ କଲା । ଏହି ପବିତ୍ର ପୀଠ ସମୂହରେ ଦେବୀ ମୂର୍ତ୍ତିମାନ ପ୍ରତିଷ୍ଠିତ ହୋଇ ଭାରତୀୟ ସମାଜରେ ଶାକ୍ତ ଉପାସନାର ଏକ ଗୌରବମୟ ପରଂପରା ସୃଷ୍ଟି କରିଥିଲା । ତନ୍ତ୍ରୋକ୍ତ ଶକ୍ତି ଉପାସନାର କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଓ କମଳାତ୍ମିକା ପ୍ରଭୃତି ଦଶମହାବିଦ୍ୟାଙ୍କର ମହତ୍ତ୍ୱ ବୃଦ୍ଧି ପାଇଲା । ପରଂବ୍ରହ୍ମ ବିଷ୍ଣୁଙ୍କର ଦଶ ଅବତାର ସଦୃଶ ଦେବୀଙ୍କର ଏହି ଦଶରୂପ ମାନ୍ୟତା ଲାଭ କଲା । ଭାରତର କୋଣେ ଅନୁକୋଣେ ବିଭିନ୍ନ ଶାକ୍ତ ସଂପ୍ରଦାୟର ଆବିର୍ଭାବ ଘଟିଲା । ପ୍ରତ୍ୟେକ ସଂପ୍ରଦାୟ ସେମାନଙ୍କ ନିଜସ୍ୱ ରୀତିରେ ଶାକ୍ତ ଉପାସନା ଧାରାର ଉତ୍ତରୋତ୍ତର ବିକାଶ ଘଟାଇଥିଲେ । ଭାରତୀୟ ଜନଜୀବନରେ ଜଗଜ୍ଜନନୀଙ୍କର ସାକାର ଉପାସନା ପ୍ରବର୍ତ୍ତନ ହିଁ ପୁରାଣ ଯୁଗର ମହନୀୟତା ।

ପୁରାଣ ଯୁଗୀୟ ଶକ୍ତି ଉପାସନାରେ ମହିଷମର୍ଦ୍ଦିନୀ ଦୁର୍ଗାପୂଜାର ବିଶେଷ ପ୍ରସାର ଘଟିଥିଲା । ପ୍ରାଥମିକ ପର୍ଯ୍ୟାୟରେ ଦ୍ୱିଭୁଜା ମହିଷମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତିର ପରିକଳ୍ପନା ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ବହୁଭୁଜା ମୂର୍ତ୍ତିମାନ ସୃଷ୍ଟିହୋଇ ଦୁର୍ଗତିନାଶିନୀ ଦୁର୍ଗା ସର୍ବ ଶକ୍ତିମୟୀ ଭାବରେ ମାନ୍ୟତା ଲାଭ କଲେ । ସୂଚନାଯୋଗ୍ୟ ଯେ, ତୀର୍ଥ ଭେଦରେ ଦେବୀ ଦୁର୍ଗା ସର୍ବଶକ୍ତିମୟୀ ଭାବରେ ମାନ୍ୟତା ଲାଭ କଲେ । ମଥୁରା ଓ ବ୍ରଜ ଭୂମିରେ କାତ୍ୟାୟନୀ, କାଶୀରେ ବିଶାଳାକ୍ଷୀ, ପ୍ରୟାଗରେ ଲଳିତା, ହସ୍ତିନାରେ ଜୟନ୍ତୀ, ହିମାଳୟରେ ନନ୍ଦା, ଏକାମ୍ରରେ କୀର୍ତ୍ତିମତୀ, ଗୋକର୍ଣ୍ଣିକାରେ ଭଦ୍ରକାଳିକା, ବୈତରଣୀ ତୀର୍ଥରେ ବିରଜା, ଗଙ୍ଗାରେ ମଙ୍ଗଳା, ଯମୁନାରେ ମୃଗାମତୀ, ପୁରୁଷୋତ୍ତମରେ ବିମଳା, ସରସ୍ୱତୀ ତୀର୍ଥରେ ବେଦମାତା, ବଦ୍ରିଧାମରେ ଉର୍ବଶୀ, କୈଳାସରେ ପାର୍ବତୀ ଆଦି ବହୁ ନାମରେ ଜଗଜ୍ଜନନୀ ପୁରାଣ ଯୁଗରେ ଭାରତ ଭୂଖଣ୍ଡରେ ଖ୍ୟାତିଲାଭ କରିଥିଲେ । ସାକାର ଶାକ୍ତ ଉପାସନାରେ ମହାଶକ୍ତି ମାନବୀସଦୃଶା ମାନ୍ୟତା ଲାଭ କରିବା ସହିତ ଦେବୀଙ୍କର ବିଭିନ୍ନ ସ୍ତବ, ସ୍ତୋତ୍ର, ପ୍ରାର୍ଥନା, ଧ୍ୟାନ, କବଚ, କୀଳକ ପ୍ରଭୃତି ରଚନା କରାହୋଇଥିଲା । ପୁରାଣକାର ତ୍ରିଶକ୍ତି ବିଚାରବୋଧରେ ବିଭିନ୍ନ ଆଖ୍ୟାୟିକା ମାଧ୍ୟମରେ ମହାଶକ୍ତିଙ୍କର ଦିବ୍ୟ ଚରିତ୍ର ଚିତ୍ରଣ କରିଥିଲେ । ସଂକ୍ଷେପରେ କହିଲେ, ପୁରାଣ ଯୁଗରେ ଭାରତର କୋଣେ ଅନୁକୋଣେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରାପ୍ତି କାମନାରେ ଶକ୍ତି ଉପାସନାର ଦ୍ରୁତ ପ୍ରସାର ଘଟି ସମଗ୍ର ଭାରତବାସୀ ଗୋଟିଏ ମାଆର ସନ୍ତାନ ଭାବରେ ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନଯାପନ କରୁଥିଲେ ।

ମହିଷମର୍ଦ୍ଦିନୀଙ୍କ ପ୍ରାଚୀନତମ ମୂର୍ତ୍ତିଗୁଡ଼ିକ ଦ୍ୱିଭୁଜା ହୋଇଥିବା ବେଳେ ପରବର୍ତ୍ତୀ ସମୟରେ ବହୁଭୁଜା ମୂର୍ତ୍ତିମାନ ରଚନା କରାଯାଇଛି । ମଧ୍ୟଯୁଗୀୟ ରଚନାମାନଙ୍କ ମଧ୍ୟରୁ ଅଭିଳାଷ ତୀର୍ଥ ଚିନ୍ତାମଣି, ମତ୍ସ୍ୟପୁରାଣ, ଚଣ୍ଡୀପୁରାଣ, ମାର୍କଣ୍ଡେୟ ପୁରାଣ, ଶିଳ୍ପରତ୍ନ ଓ ରୂପମଣ୍ଡନ ଗ୍ରନ୍ଥରେ ଦେବୀ ଦଶଭୁଜା ବୋଲି ବର୍ଣ୍ଣିତ ହୋଇଥିବା ବେଳେ ବିଷ୍ଣୁଧର୍ମୋତ୍ତର ପୁରାଣ, ବରାହ ପୁରାଣ, ଚଣ୍ଡୀକଳ୍ପ ଓ ବିଶ୍ୱକର୍ମା ଶିଳ୍ପ ଶାସ୍ତ୍ରରେ ତାଙ୍କୁ ସର୍ବାଧିକ ଦଶଭୁଜା ବୋଲି





କୁହାଯାଇଛି । ମୟଦୀପିକାୟମ୍ ଶିଳ୍ପ ଶାସ୍ତ୍ର ଅନୁସାରେ ଦେବୀ ଦଶଭୁଜା, ତାଙ୍କ ଦକ୍ଷିଣ ହସ୍ତମାନଙ୍କରେ ତ୍ରିଶୂଳ, ଖଡ୍‌ଗ, ଶକ୍ତି, ଚକ୍ର, ଧନୁ ଏବଂ ବାମ ହସ୍ତମାନଙ୍କରେ ପାଶ, ଖେଟକ, ପରଶୁ ରହିବା ବିଧେୟ । ବାମନ ପୁରାଣରେ ଦେବୀ ଅଷ୍ଟାଦଶ ଭୁଜା ଅଟନ୍ତି । ସାଧାରଣତଃ ଜଣାଯାଏ ଯେ ଦେବୀ ତ୍ରିନେତ୍ରା, ଉନ୍ନତ କୁଚଯୁଗଳା, କ୍ଷୀଣକଟି, ତ୍ରିଭଙ୍ଗ ତନୁ, ଶିରକଟା ମୁକୁଟ ମଣ୍ଡିତ, ଦିବ୍ୟଜ୍ୟୋତି ସଂପନ୍ନା, ନାନା ବସ୍ତ୍ରାଳଙ୍କାରରେ ବିଭୂଷିତା । ସର୍ବୋପରି ସେ ଉଗ୍ରା, ଭୀଷଣା ଓ ଭୟଂକରୀ । ପୁରାଣ ଓ ଶାସ୍ତ୍ରବର୍ଣ୍ଣିତ ଦେବୀଙ୍କ ଏହି ପ୍ରକାର ରୂପ, ହସ୍ତ, ଆୟୁଧ ଏପରିକି ଶୂଳରେ ମହିଷାସୁରକୁ ବଧ କରିବା କୌଶଳ ମଧ୍ୟ ମଧ୍ୟଯୁଗୀୟ ତଥା ତା'ର ପରବର୍ତ୍ତୀ ସମୟର ବହୁ ବିକଶିତ ମୂର୍ତ୍ତିକଳାରେ ପ୍ରତିଫଳିତ ହୋଇଛି ।

ଓଡ଼ିଶାର ଯାଜପୁରଠାରେ ଥିବା ବିରଜାଙ୍କ ପ୍ରସ୍ତର ମୂର୍ତ୍ତିଟି ମଧ୍ୟ ଏହି ସମୟର ଏକ ଉଲ୍ଲେଖଯୋଗ୍ୟ କୃତି । ଏଠାରେ ଦେବୀ ଦକ୍ଷିଣ ହସ୍ତରେ ମହିଷର ପୁଚ୍ଛକୁ ଧାରଣ କରି ବାମହସ୍ତର ଶୂଳରେ ଭୂମିରେ ଲାଗିଥିବା ତା'ର ମସ୍ତକକୁ ଭେଦ କରୁଛନ୍ତି । ଖ୍ରୀ: ୪ର୍ଥ ଶତାବ୍ଦୀର ଅନେକ ଧାତବ ପ୍ରତିମା ମଧ୍ୟରେ ଚମ୍ବା ଘାଟିର ଭରମୁରଠାରେ ଥିବା ''ଲକ୍ଷ୍ୟଣାଦେବୀ'' ନାମରେ ପରିଚିତା ସୁଦୀର୍ଘ, ସୁନ୍ଦର ପ୍ରତିମା ଅନ୍ୟତମ । କେତେକ ଉଲ୍ଲେଖଯୋଗ୍ୟ ଚତୁର୍ଭୁଜା ମୂର୍ତ୍ତି ମଧ୍ୟରେ ଖ୍ରୀ: ୫ମ ଶତାବ୍ଦୀର ଭୂମରା, ସଂଘୋଲ ଓ ମଥୁରାରୁ ପ୍ରାପ୍ତ କେତେକ ପୋଡ଼ାମାଟି ପ୍ରତିମା, ଖ୍ରୀ: ୭ମ ଶତାବ୍ଦୀର ଅହିହୋଲ, ଆଲମୋରା, ଜାଗେଶ୍ୱର ଓ ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ମନ୍ଦିର ଦେହର ସୁନ୍ଦର ମହିଷମର୍ଦ୍ଦିନୀ, ଏଲୋରା ଗୁମ୍ଫା ମଧ୍ୟରେ କେତୋଟି ବିଶାଳ ପ୍ରତିମା ଅନ୍ୟତମ । ଏହି ସମୟର ଅଧିକାଂଶ ରଚନାରେ ମହିଷାସୁର ପ୍ରଥମ ପର୍ଯ୍ୟାୟ ଭଳି ପଶୁ ରୂପରେ ଦେଖାଯାଉଥିବାବେଳେ କ୍ୱଚିତ୍ ସ୍ଥାନରେ ମିଶ୍ରିତ ରୂପ ଅର୍ଥାତ୍ ପଶୁର ଦେହ ଓ ମନୁଷ୍ୟାକୃତି ଆବକ୍ଷ ମସ୍ତକ ଦେଖାଯାଏ । ପ୍ରାରମ୍ଭରୁ ଖ୍ରୀ : ୭ମ ଶତାବ୍ଦୀ ପର୍ଯ୍ୟନ୍ତ କୌଣସି ମୂର୍ତ୍ତିରେ ସିଂହ ନ ଥିବାବେଳେ ୭ମ ଶେଷ ଓ ୮ମ ଶତାବ୍ଦୀର ପ୍ରାରମ୍ଭରେ ନିର୍ମିତ କେତେକ ମୂର୍ତ୍ତିରେ ପ୍ରଥମ ଥର ପାଇଁ ଦେବୀଙ୍କ ସହିତ ତାଙ୍କ ବାହନ ସିଂହ ଦୃଷ୍ଟିଗୋଚର ହୁଏ । ଭାରତର ବିଭିନ୍ନ ସ୍ଥାନରେ ଥିବା ଅଷ୍ଟଭୁଜା ମହିଷମର୍ଦ୍ଦିନୀ ମୂର୍ତ୍ତି ମଧ୍ୟରେ ଖ୍ରୀ:୮ମ ଶତାବ୍ଦୀର ପଟ୍ଟାଡୋକଲ ଶିବ ମନ୍ଦିର ମଧ୍ୟର ମୂର୍ତ୍ତି, ଖ୍ରୀ: ୯ମ ଶତାବ୍ଦୀର ଏଲୋରା ଗୁମ୍ଫାର କେତେକ ମୂର୍ତ୍ତି, ଖ୍ରୀ: ୧୦ମ - ୧୧ଶ ଶତାବ୍ଦୀ ମଧ୍ୟରେ, ବଙ୍ଗଳାର ପାଳ ରାଜତ୍ୱ ସମୟରେ କେତେକ ମୂର୍ତ୍ତି, ଆଲମ୍‌ପୁରର ଖ୍ରୀ: ୧୧ଶ ଶତାବ୍ଦୀର ମୂର୍ତ୍ତି, ଦକ୍ଷିଣ ଭାରତର ଚିଦାମ୍ବରମ୍‌ଠାରେ ଥିବା ଖ୍ରୀ: ୧୨ଶ ଶତାବ୍ଦୀର ଦେବୀ ପ୍ରତିମା ଓ ଆସାମର ଗୋପେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଥିବା ଅଷ୍ଟଭୁଜା ଦୁର୍ଗା ଉଲ୍ଲେଖଯୋଗ୍ୟ ।

ଓଡ଼ିଶାର ଅନେକ ସୁନ୍ଦର ଦଶଭୁଜା ମହିଷମର୍ଦ୍ଦିନୀ ପ୍ରତିମା ପ୍ରାୟ ଖ୍ରୀ: ୧୦ମରୁ ୧୫ଶ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିବା ଲକ୍ଷ୍ୟ କରାଯାଏ । ଏହି ପ୍ରକାର କେତେକ କୃତି ମଧ୍ୟରେ କଟକ ଜିଲ୍ଲା ପ୍ରାଚୀନଦୀ କୂଳ ଅଡ଼ସପୁର, ଆମ୍ବାପଡ଼ା, ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ପାଳିଆ ଓ ସେରଗଡ଼, ତାଳଚେର ନିକଟ କୁଆଲୋ, ମହାନଦୀ କୂଳ ବୈଦେଶ୍ୱର, ସିଂହନାଥ ଓ ମୟୂରଭଂଜ ଜିଲ୍ଲା ଖିଚିଂର ବିଶାଳ ମୂର୍ତ୍ତି ଅନ୍ୟତମ । ଏହି ମଧ୍ୟଯୁଗୀୟ ମୂର୍ତ୍ତିଗୁଡ଼ିକରେ ଖଣ୍ଡିତ ମହିଷ ମଧ୍ୟରୁ ମନୁଷ୍ୟରୂପୀ ଏକ ଅସୁର ଜାତ ହୋଇ ଦେବୀଙ୍କ ସହିତ ଯୁଦ୍ଧ କରୁଥିବା ଦେଖାଯାଏ । ଏଠାରେ ସିଂହ ମଧ୍ୟ ଅଧିକ ଉଗ୍ର ମନେ ହୁଏ ।

ମହିଷମର୍ଦ୍ଦିନୀଙ୍କ ଦ୍ୱାଦଶ ଭୁଜା ମୂର୍ତ୍ତି ସଂଖ୍ୟା ପ୍ରାୟ କମ୍ । ଆଲମୋରାର ବୈଜିନାଥ ଶିବ ମନ୍ଦିର ଓ କାଶ୍ମୀରର ଏହି ପ୍ରକାର ମୂର୍ତ୍ତିକୁ ଖ୍ରୀ: ୧୦ମ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ଉଲ୍ଲେଖଯୋଗ୍ୟ ଯେ, ଏହି କୃତିରେ ଦେବୀଙ୍କ ସହିତ ସିଂହ ଦେଖାଯାଏ ନାହିଁ । ଭାରତର ଉତ୍ତର - ପଶ୍ଚିମାଞ୍ଚଳ, ରୋହତକ୍‌ରୁ ପ୍ରାପ୍ତ ଓ ପାକିସ୍ତାନର ଲାହୋର ସଂଗ୍ରହାଳୟରେ ଥିବା ଦ୍ୱାଦଶ ଭୁଜା ଦେବୀଙ୍କ ସହିତ ସପ୍ତମାତୃକା, ନବଦୁର୍ଗା ଓ ସରସ୍ୱତୀ ମଧ୍ୟ ରହିଛନ୍ତି । ଏହା ଖ୍ରୀ: ୧୨ଶ ଶତାବ୍ଦୀର କଳାକୃତି ବୋଲି ଜଣାଯାଏ । ଓଡ଼ିଶାରେ ଦେଖାଯାଉଥିବା କେତେକ ଦ୍ୱାଦଶ ଭୁଜା



ମହିଷମର୍ଦ୍ଦିନୀ ମୂର୍ତ୍ତି ମଧ୍ୟ ଏହି ସମୟର । ଅବିଭକ୍ତ କଟକ ଜିଲ୍ଲାର ଧର୍ମଶାଳାଠାରୁ ପ୍ରାପ୍ତ, ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଥିବା ଏକ ମୂର୍ତ୍ତି ଓ ତାଳଚେର ନିକଟ କୁଆଳୋ ଗ୍ରାମର ଏକ ମୂର୍ତ୍ତି କିଞ୍ଚିତ ପୂର୍ବବର୍ତ୍ତୀ ସମୟର ହୋଇଥିବା ମନେହୁଏ । ପ୍ରାଚୀନଦୀ କୂଳ ଅମଣାକୁଦ ଗ୍ରାମର ବାରଭୁଜା ନାମରେ ପୂଜା ପାଉଥିବା ଏକ ବିଶାଳ ପ୍ରତିମା ଖ୍ରୀ:୧୨ଶ ଶତାବ୍ଦୀର ବୋଲି ଅନୁମାନ କରାଯାଏ ।

ଅଷ୍ଟ ଦଶଭୁଜା ମୂର୍ତ୍ତି ମଧ୍ୟରେ ପାଟନା ସଂଗ୍ରହାଳୟର ଏକ ସୁନ୍ଦର କୃତି, ଦକ୍ଷିଣ ଭାରତର ଚିଦାମ୍ବରମ୍ ନଟରାଜ ମନ୍ଦିରର ମୂର୍ତ୍ତି, ଗଙ୍ଗାଇକୋଟା ଓ ଚୋଳାପୁରମ୍‌ଠାରେ ଥିବା ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ । ଦକ୍ଷିଣ ଭାରତର ମୂର୍ତ୍ତିରେ ଦେବୀଙ୍କ ମସ୍ତକରେ ଅଧିକାଂଶ ସ୍ଥଳେ ଜଟା ମୁକୁଟ ପରିବର୍ତ୍ତେ କିରୀଟ ମୁକୁଟ ଦେଖାଯାଏ । ବିଂଶଭୁଜା ମହିଷାସୁର ମର୍ଦ୍ଦିନୀ ପ୍ରତିମା ମଧ୍ୟରେ ବିହାର ପାଟନା ସଂଗ୍ରହାଳୟରେ ଥିବା ଦେବୀ ସିଂହବାହିନୀ ଅଟନ୍ତି । ରାଜସ୍ଥାନର ଏକ କୃତିରେ ଦେବୀ ରଥାରୂଢ଼ା ହୋଇ ମହିଷାସୁର ସହିତ ଯୁଦ୍ଧ କରୁଥିବାବେଳେ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ନିକଟରୁ ପ୍ରାପ୍ତ ଏକ ମୂର୍ତ୍ତିରେ ଦେବୀ ନୌକା ଉପରେ ଉଭା ହୋଇଛନ୍ତି । ଏକମାତ୍ର ବିରଳ ମୂର୍ତ୍ତି ମଧ୍ୟରେ ବଙ୍ଗଳାର ବେନ୍ତ, ଦିନାଜପୁର ଜିଲ୍ଲାର ବତ୍ରିଶଭୁଜା ମହିଷମର୍ଦ୍ଦିନୀ ପ୍ରତିମା ଉଲ୍ଲେଖଯୋଗ୍ୟ ।

ମହାଭାରତରେ ବ୍ୟାସଦେବ କହିଛନ୍ତି, ''ସକଳ ଦୁର୍ଗତିରୁ ପରିତ୍ରାଣ କରବୋଲି– 'ହେ ଦେବି ! ତୁମେ ଦୁର୍ଗା ନାମରେ ପୂଜିତ ।'' ମାର୍କଣ୍ଡ ପୁରାଣରେ ସେ ଭବସାଗରର ଏକମାତ୍ର ନୌକା ସ୍ୱରୂପା । ଦେବୀ ଭାଗବତରେ ସେ ସଂକଟତାରିଣୀ, ଦୁର୍ଗା ମନ୍ତ୍ରରେ ସେ ସକଳ ଭୂତରେ ପରିବ୍ୟାପ୍ତ, ମଙ୍ଗଳ କାରିଣୀ, ଶତ୍ରୁ ବିନାଶିନୀ, ସମସ୍ତ ଶକ୍ତି ଓ ବୁଦ୍ଧି ଅଧିକାରିଣୀ, ଏଭଳି ଏକ ଦେବୀଙ୍କର ପରିକଳ୍ପନା ବାସ୍ତବିକ ଅନନ୍ୟ, ଏଣୁ ଏହି ଶକ୍ତି–ଦେବୀଙ୍କର ପୂଜନ ଓ ମନନ ସମସ୍ତ ଜୀବଙ୍କର କାମ୍ୟ ଏବଂ ସ୍ମରଣୀୟ ମଧ୍ୟ ।

ଦେବୀ ଦୁର୍ଗା କେବଳ ସୃଷ୍ଟିର ପାଳନକର୍ତ୍ତା ବା ଦୁଷ୍ଟ ସଂହାରିଣୀ ଶକ୍ତି ନୁହନ୍ତି, ଏହି ମଙ୍ଗଳମୟ ସୃଷ୍ଟିର ସେ ମଙ୍ଗଳଦାତ୍ରୀ, ଏହି ଶୋଭାମୟ ସୁନ୍ଦର ସୃଷ୍ଟିର ସେ ସୁଖ ଶାନ୍ତି ପ୍ରଦାୟିନୀ । ସୂଚନାଯୋଗ୍ୟ ଯେ, ଊନବିଂଶ ଶତାବ୍ଦୀରୁ ମୃଣ୍ମୟ ଦୁର୍ଗାପୂଜାର ଉନ୍ମେଷ ଘଟି ଶାରଦୀୟ ଦୁର୍ଗୋତ୍ସବର ଏକ ମହନୀୟ ପରଂପରା ସୃଷ୍ଟି ହୋଇଛି । ବସ୍ତୁବାଦୀ ନାସ୍ତିକ ହୃଦୟ ମଧ୍ୟରେ ଏହି ପୂଜା ମାଧ୍ୟମରେ ଭକ୍ତି–ଭାବନାର ଉଦ୍ରେକ, ପୂର୍ଣ୍ଣ ପବିତ୍ରର ନିର୍ଯ୍ୟାସ, ପ୍ରେମ–ପୁଲକର ସୁଗନ୍ଧ, ସତ୍ୟ–ଧର୍ମ–ଦୟା–କ୍ଷମା ବାଣୀର ଚିନ୍ତନ, ସୁଖ–ସମ୍ଭୋଗର ମହକ ଏବଂ ଶାନ୍ତି–ମୈତ୍ରୀ–ପ୍ରୀତିର କଲ୍ଲୋଳ, ଗଙ୍ଗା–ଯମୁନା–ସରସ୍ୱତୀର ତ୍ରିବେଣୀ ସଂଗମରେ ହିଲ୍ଲୋଳିତ ହୋଇଥାଏ ।

ସଂପ୍ରତି ଶାରଦୀୟ ଦୁର୍ଗୋତ୍ସବ ଜାତି, ଧର୍ମ, ବର୍ଣ୍ଣ ଓ ସଂପ୍ରଦାୟ ନିର୍ବିଶେଷରେ ଏକ ଗଣ ମହୋତ୍ସବ ରୂପେ ପ୍ରତିଭାତ । ଦୁର୍ଗତିର ଦୁର୍ଗମ ଦୁର୍ଗରେ ବନ୍ଦୀ ଆଜିର ମଣିଷ ''ଶାରଦୀୟ ଦୁର୍ଗୋତ୍ସବ''ରେ ଜଗଜ୍ଜନନୀଙ୍କର କରୁଣା କାମନା କରୁଛି । ଆଜିର ପୁଣ୍ୟ ମହୋତ୍ସବରେ ଦେବୀ ଦୁର୍ଗା ଆପଣାର ଦଶଭୁଜାରେ ମିଥ୍ୟା, କ୍ରୋଧ, ଅଭିମାନ, ଅହଂତ୍ୱ, ନାସ୍ତିକ ଭାବ, ଆତ୍ମଗ୍ଲାନି, ଅସୂୟା, ଈର୍ଷା, ଦ୍ୱେଷ ଓ ପରୋକ୍ଷବାକ୍ ପ୍ରଭୃତି ଦଶବାଧା ବିନିର୍ମୁକ୍ତ କରି ବିଶ୍ୱର ମଙ୍ଗଳ କରନ୍ତୁ । ଏତିକି ତାଙ୍କ ଶ୍ରୀଚରଣରେ ନିବେଦନ ।

**ସହାୟକ ଗ୍ରନ୍ଥସୂଚୀ :**

(୧) ପଣ୍ଡା, ଦୁର୍ଗାଚରଣ । ଭାରତୀୟ ସଂସ୍କୃତି ଓ ମୂର୍ତ୍ତି କଳାରେ ହିନ୍ଦୁ ଦେବଦେବୀ । ପୃ ୧୪୯–୬୯

(୨) ମିଶ୍ର, ଅନ୍ତର୍ଯ୍ୟାମୀ । ଭାରତୀୟ ଧର୍ମ ଓ ସଂସ୍କୃତି । ପୃ ୧୭–୨୯ ।

(୩) ଅଭିଯାନ । ସେପ୍ଟେମ୍ବର – ଅକ୍ଟୋବର : ଶାରଦୀୟ, ୨୦୦୮ ।

(୪) ବେହୁରିଆ, ରବୀନ୍ଦ୍ର କୁମାର । ଉତ୍କଳ ପ୍ରସଂଗ । ସେପ୍ଟେମ୍ବର – ଅକ୍ଟୋବର, ୨୦୦୮ ।

---

ସଭାପତି, ଚାନ୍ଦବାଲି ସାଂସ୍କୃତିକ ପରିଷଦ
ଚାନ୍ଦବାଲି, ଭଦ୍ରକ, ପିନ୍ – ୭୫୬୧୩୩





# ପାଦେ କୋଟି ନମସ୍କାର

**ଚନ୍ଦ୍ର ଶେଖର ପଣ୍ଡା**

ମା' ବୋଲି ଯେଉଁ ଅମୃତ ଶବଦ
ତା'ସରି ତ କିଛି ନାହିଁ
ଉଚ୍ଚାରିଲେ ଯା'ରେ 'ଆ' ପ୍ରତିଧ୍ୱନି
ଶୂନ୍ୟରୁ ଭାସି ଆସଇ ।
କେଉଁ ବିନ୍ଧାଣି ସେ ଶବଦ ରଚିଛି
କେତେକାଳ ବସି ବସି
ସେ ଅପୂର୍ବ ଶବ୍ଦ ସଭିଙ୍କ ମନରେ
ଅମୃତ ଦିଏ ବରଷି ।
ଚଉଦ ଭୁବନେ ଯେତେକ ଦରବ
ମା' ଠାରୁ ସବୁ ଊଣା
ସବୁ ଅସମ୍ଭବ ସମ୍ଭବ ହୁଅଇ
ମା'ର ଥିଲେ କରୁଣା ।
ରୋଗ ବଇରାଗ ଶୋକ ଦୁଃଖ ଆଦି
ଯେତେ ବସା ବାନ୍ଧିଥିବ
ମା'ର କଟାକ୍ଷ ପାତରେ
ସେ ସବୁ ନିମିଷେ ଉଭେଇ ଯିବ ।
କ୍ଷୁଧା ତୃଷା କଷ୍ଟ ସହିଯାଏ ଯିଏ
ସନ୍ତାନେ ଖୁଆଇ ହସେ
ବିପଦ କିଞ୍ଚିତେ ନ ଆସୁ ବୋଲିକି
ଦିବା ନିଶି ନିଘା ରଖେ ।
କେତେ ଯେ କଷଣ ସହି ଥାଏ ସିଏ
ସନ୍ତାନର ହିତ ପାଇଁ
ତଥାପି ତା' ମୁଖେ ମନ୍ଦ ହାସ ଦେଖ
ଟିକିଏ ବିଷାଦ ନାହିଁ ।

ପୂର୍ବ ଦେବ ହତେ ପ୍ରହରଣ ହସ୍ତେ
ତେଜି ଲଜ୍ଜା ରଣ କ୍ଷେତ୍ରେ
ଦୁର୍ଗତି ନାଶିବା ହେତୁ ତ୍ରିଭୁବନେ
ପୂଜା ପାଏ ଦୁର୍ଗା ରୂପେ ।
କିଏ କହେ ତାକୁ କାଳୀ କପାଳୀ ବା
କିଏ ବା ଖାଙ୍କର କେଶୀ
ଛିନ୍ନମସ୍ତା ଚଣ୍ଡୀ ଚାମୁଣ୍ଡା ବୋଲେ କେ
କେହୁ ଅବା ମୁକ୍ତ କେଶୀ ।
ଯିଏ ଯେଉଁ ନାମେ ଡାକୁ ପଛେ ତାକୁ
ତା' ମନେ ଶୋଚନା ନାହିଁ
ଭକ୍ତରଙ୍କା ଭକ୍ତ ହିତ ପାଇଁ ସଦା
ଥାଏ ତା' ନୟନ ଫେଇ ।
ଖରା ବରଷାରେ ଶୀତ କାକରରେ
ବୃକ୍ଷ ମୂଳେ ଶିଳା ରଖି
ଗ୍ରାମ ଉପକଣ୍ଠେ ମା' ବୋଲି ପୂଜେ
ସିନ୍ଦୂର ଟୋପାଏ ମାଖି ।
ପଣା ଟୋପେ ଦେଇ ମୁଣ୍ଡିଆ ମାରେ କେ
କେବା ନୁଖୁରା ସଳିତା
କାଚ କାଛ ମାଛ କିଏ ବା ଅରପେ
କିଏ ବା ଦି' ପଟ ଶଙ୍ଖା ।
ମାଟି ଘୋଡା ଥୋଇ ଓଳଗି ହୁଏ କେ
କଳା ପତନି କେ ଦିଏ
ନିଘା ନାହିଁ ତା'ର ଏ ଦରବେ କିଛି
ଭକତେ କୋଳେଇ ନିଏ ।



ଏଇ ସର୍ବଂସହା ଗୁଣ ପାଇଁ ସିଏ
ବୋଲାଏ ଜଗଜ୍ଜନନୀ
ଦମ୍ଭ ଅଭିମାନ ଧନ ଗର୍ବ ତେଜି
ତା' ପାଦେ କର ଦଇନି ।
ଶଙ୍କା ଜାତ ହୁଏ ଭକ୍ତ ଦୁଃଖ ପାଇଁ
ଯା ଆଖିରୁ ଝରେ ଲୁହ
ନିତି ମରୁଛନ୍ତି ବାଳ ବୃଦ୍ଧ ଯୁବା
କେମିତି ସହୁଛୁ କହ ।
ସନ୍ତାନ ବତ୍ସଳା ବୋଲି ତୋର ନାମେ
ବାନା ଉଡେ ଫର ଫର
କରୁଣା କଟାକ୍ଷେ ଥରୁଟିଏ ଚାହାଁ
ରୋଗ ଶୋକ ହେଉ ଦୂର ।

ମନ୍ଦାର ମାଳିନୀ କର୍ପୂର ଗନ୍ଧିନୀ
କନ୍ଦର ତେଜି ମା' ଆସ
ଯୋଡ଼ ହସ୍ତେ ଅଳି କରୁ ତୋ ପୟରେ
ବ୍ୟାଧି ଦୈତ୍ୟ ବେଗେ ନାଶ ।
ଅଚିରେ ଅସାଧ ମହାମାରୀ ନାଶ
ହସୁ ଏ ସୁନା ସଂସାର
ମା' ଭଗବତୀ ପାଦ ପଦ୍ମେ ତୋର
କୋଟି କୋଟି ନମସ୍କାର ।

ପ୍ଲଟ୍ ନଂ - ୧୮୫୩/୩୭୨୦
କପିଳପ୍ରସାଦ, ମହତାବ ରୋଡ
ଭୁବନେଶ୍ୱର- ୭୫୧୦୦୨



# ଜଗଜ୍ଜନନୀ

ମମତା ପରିଜା

ନମୋ ନମ ନମୋ ଦୁର୍ଗେ ନମୋ ନାରାୟଣୀ
କର ଦୟା ଦୁଃଖୀ ଦାସେ ତବ ଗୁଣ ଗୁଣୀ
ତବାଶିଷ ବିନା ସର୍ବ ଅନ୍ଧାର ଦିଶଇ
ଦୁଃଖ ଦୁର୍ଦ୍ଦିନରେ ମା' ସହାୟ ହୁଅଇ
ସପ୍ତଶତୀ ମହାମାୟୀ ମା' ଚଣ୍ଡୀରୂପିଣୀ
ବୀରାଙ୍ଗନା ଅପରୂପା ମା' ତ୍ରୈଲୋକ୍ୟ ମୋହିନୀ
ଅଲୌକିକ ଶକ୍ତିରୂପା କୋଟି ସୂର୍ଯ୍ୟ ଆଭା
ଜ୍ୟୋତିର୍ମୟୀ ଜ୍ୟୋତିରୂପା ଅପର୍ଣ୍ଣା ଚଣ୍ଡିକା

ଦର୍ପଦଳିନୀ ମାଗୋ ଦୁଷ୍ଟ ବିନାଶିନୀ
ଅନ୍ୟାୟ ଅଧର୍ମ କରୁ କ୍ଷଣିକେ ଖଣ୍ଡନୀ
ଯୁଗେ ଯୁଗେ ଟେକ ରଖୁ ଦେଇ ଶାନ୍ତି ବାର୍ତ୍ତା
ଅଜ୍ଞାନ ଅନ୍ଧାର ଦୂର କରୁଥାଉ ସଦା
କୃପା କର କୃପାମୟୀ ଅକିଞ୍ଚନ ଦାସେ
ଦୁଃଖ ଦୂର ହେଉ ସଦା ପାଉ ତବା ଶିଷେ ।

ଗ୍ରାମ- ତେନ୍ତୁଳିପଦା
ତିର୍ତ୍ତୋଲ, ଜଗତସିଂହପୁର





# ଶକ୍ତି ସ୍ୱରୂପିଣୀ ଶ୍ରୀଦୁର୍ଗା

ପ୍ରଫୁଲ୍ଲ କୁମାର ଦାସ

ଦେବୀ ଦେବତାର ଇତିହାସ ଅବଲୋକନ କଲେ ବିଶ୍ୱ ବିଚିତ୍ରର ଚମତ୍କାରିତା ମାନସ ମାନଚିତ୍ରକୁ ବିସ୍ମିତ



କରେ । ସମୟର ଚୁକୁଚିରି ବିଦାୟ ନେଇଛି ମହାସଙ୍କୁଳ ଘୋର ଦାବାନଳ ଘନ କାଳ । ରଙ୍ଗୀନ୍ ରଙ୍ଗ ମଂଚରେ ହସି ଭାସି ଆସୁଛି ପ୍ରୀତି ପ୍ରମୋଦୋଚ୍ଛଳ ଶୁଭ୍ର ଶାନ୍ତ କାନ୍ତ ଶରତ । ଦିଗ୍‌ବଳୟର ବୈଜୟନ୍ତୀ ବର୍ଣ୍ଣୋତ୍ସବମୟ ଦୃଶ୍ୟ ମହୋତ୍ସବ । ସ୍ୱଚ୍ଛ ସୁବିଶାଳ ସୁନୀଳ ଆକାଶ । ସଦ୍ୟ ସବୁଜ ସତେଜ ବସୁନ୍ଧରା ସ୍ପର୍ଶ ସୁଖଦ ମୃଦୁମଳ ମଳୟା ଅନିଳ । ସ୍ୱଚ୍ଛନ୍ଦ ସ୍ରୋତସ୍ୱିନୀ । ସ୍ୱଚ୍ଛ ଜଳ କଳ କଳ କଳା ବିନୋଦିନୀ, କଳ କଲ୍ଲୋଳିନୀ, ଦିଗନ୍ତ ବିସ୍ତାରୀ ଶୋଭା ସୌନ୍ଦର୍ଯ୍ୟର ପ୍ରଦର୍ଶନୀ ଘନ ବନାନୀର ନେତ୍ରୋତ୍ସବମୟୀ ଶ୍ୟାମ ସବୁଜିମା । ପୁଷ୍ପ ଉଦ୍ୟାନର ରଙ୍ଗ ବେରଙ୍ଗର ସୁରଭିତ ସୁମନ ସମ୍ଭାର । ଶାରଦୀୟ ଉତ୍ସବରେ ସ୍ୱର୍ଣ୍ଣ ରଶ୍ମିରେ ସ୍ୱର୍ଣ୍ଣାଭି ସୂର୍ଯ୍ୟଙ୍କର ସୁନେଲି କିରଣ ଜାଳ । ବର୍ଣ୍ଣ ବିଭାରେ ସୁଭ୍ରତା ଚାରୁ ଚାନ୍ଦିନୀର ଶୀତଳ ଜ୍ୟୋତ୍ସ୍ନା ବେଳେ ଶାରଦୀୟ ଧରା ସ୍ୱର୍ଗ ସର୍ବ ସୁଗନ୍ଧରେ ସୁକୋମଳ ସୌଖୀନ ଶୁଭଧାରା ।

କିଏ ସେ ସମ୍ଭ୍ରାନ୍ତ ଆଗନ୍ତୁକ ? କାହାର ଭବ୍ୟ ସମ୍ବର୍ଦ୍ଧନା ଉତ୍ସବରେ ଏ ମହାଡମ୍ବର, ସାଡମ୍ବର, ନୈସର୍ଗିକ ଆୟୋଜନ ଚତୁଃର୍ଦ୍ଦିଗରେ ଜନଜୀବନ ଅସମ୍ଭାଳ ଚଳଚଂଚଳ ସମଗ୍ର ବସୁଧା । ସର୍ବତ୍ର ଆଡମ୍ବରପୂର୍ଣ୍ଣ ପରିବେଶ । ଗଗନ ପବନ ମୁଖରିତ କରି ଉଭା ହେଉଛି । ଶୋଭା ପାଉଛି ଉତ୍ତୁଙ୍ଗ ତୋରଣରାଜି, ମନୋଜ୍ଞ ମଂଚ ମଣ୍ଡପରେ ବୈଜୟନ୍ତୀ ପ୍ରତିଯୋଗିତା । ବିଚିତ୍ର ବର୍ଣ୍ଣର ବୈଜ୍ଞାନିକ କାରିଗରୀ କୌଶଳରେ ବୈଦ୍ୟୁତିକ କଳା କୋଣାର୍କର ଝିଲିମିଲି ମୁଖଶାଳା । ମାଟିରୁ ଆକାଶ ଲମ୍ବିଛି ଆଖି ଝଲସା ବର୍ଣ୍ଣାଢ୍ୟ ବିଜ୍ଞାପନ । ବିସ୍ମୟ ବିସ୍ଫୋରିତ ନୟନରେ ଚାହିଁ ରହିଛନ୍ତି ଜନ ସମୁଦ୍ର । ଶ୍ରୀଦେବୀ, ମହାଦେବୀ, ମହାଶକ୍ତି ସ୍ୱରୂପିଣୀ ମା' ଶ୍ରୀଦୁର୍ଗା ଶାରଦା ସିଦ୍ଧ ରୂପୀ ଆସୁଛନ୍ତି । ସବୁ ମହଲରେ ରହସ୍ୟ ରୋମାଂଚଭରା ମୃଦୁ ଚାଂଚଲ୍ୟ । ପୁଣ୍ୟ ପରମ୍ପରା

ଆଦର୍ଶର ଯୁଗେ ଯୁଗେ ଭାରତୀୟ ସନାତନୀ ସଭ୍ୟତା ସଂସ୍କୃତି ଓ ସମାଜରେ ବିଦ୍ୟା ବିଭବ ବୀରତ୍ୱର ଶ୍ରୀଦେବୀ ବରେଣ୍ୟା, ସୁରେଣ୍ୟା, ସୁରେମ୍ୟା, ଶକ୍ତି, ସ୍ନେହ, ସୌହାର୍ଦ୍ଦ୍ୟ, ସୌଜନ୍ୟ ଓ ସମ୍ବେଦନର ସାକାର ପ୍ରତିମା, ସର୍ବମାନ୍ୟା, ସର୍ବାର୍ଥ ସାଧିକା, ଶୌର୍ଯ୍ୟ, ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ ଓ ସୌଭାଗ୍ୟର ବିଚିତ୍ର ନାୟିକା, କୋଟି କୋଟି ବ୍ରହ୍ମାଣ୍ଡ ନାୟିକା ଶ୍ରୀଦୁର୍ଗା ଭଗବତ କ୍ରିୟାଶକ୍ତି ବିଜ୍ଞାନ ଶକ୍ତିର ସ୍ପନ୍ଦନ । ସେ ଭାବରୂପା ସ୍ୱରୂପା ଓ ବହୁରୂପା ।

ସମଗ୍ର ଭାରତବର୍ଷରେ ଦେବୀ ବନ୍ଦନାର ଏକ ବିଚିତ୍ରଧାରା ସର୍ବ ଶାସ୍ତ୍ରରେ ଜଳଗଙ୍ଗା ପରି ସର୍ବଦା ଛଳଛଳ । ଶ୍ରୀଦୁର୍ଗା ଏକ ବୌଦ୍ଧିକ ବ୍ୟବଚ୍ଛେଦ । ମହାଶକ୍ତିମୟୀ ମହାମାୟାଙ୍କ ମାୟାମୟ ଲୀଳା ଧର୍ମ ସଂସ୍କୃତିର ତପୋବନକୁ ଯୁଗେ ଯୁଗେ ଯାଦୁକରୀ ଆକର୍ଷଣରେ ବିମୋହିତ କରିଛି । ଶକ୍ତି ବିନା ଶିବ ଶବ । ବୈଚିତ୍ର୍ୟମୟ ସୃଷ୍ଟିର ଆଦି ଆଉ ଅନ୍ତ ଏହି ଦୈବୀ ଶକ୍ତି । ଏହି ମହାଶକ୍ତି ଚତୁର୍ଦ୍ଦଶ ଇନ୍ଦ୍ରିୟର ଅଧିଷ୍ଠାତ୍ରୀ ଦେବୀ । ଶକ୍ତି ହିଁ ସାମର୍ଥ୍ୟ । 'ଯା' ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା' ସଂସାରର ସର୍ବଶ୍ରେଷ୍ଠ ଭୂଷଣ । ଶକ୍ତି ହିଁ ବିଶ୍ୱରୂପ । ଅନ୍ୟାୟ ଅତ୍ୟାଚାର ଦୁର୍ଗ ନାଶନ ପାଇଁ ସେ ଦୁର୍ଗା ରୂପରେ ପ୍ରକାଶ । ସମ୍ପ୍ରତି ଭାରତବର୍ଷର ଦୁର୍ଗାପୂଜା ଆଲୋକ ଓ ବୈଦ୍ୟୁତିକ ସ୍ୱର୍ଣ୍ଣରଶ୍ମିର ଝଲକ ପ୍ରଦର୍ଶନରେ ସୀମିତ ନ ରହି ସ୍ୱଜନଶୀଳତା ଓ ଅଭିନବ ଆତ୍ମିକ ସ୍ୱର୍ଗୀୟ ସୁଗନ୍ଧରେ ଦୀପ୍ତିମାନ । ମହିଷମର୍ଦ୍ଦିନୀ ଦୁର୍ଗା କେବଳ ମହିଷାସୁରକୁ ବଧ କରି ନାହାନ୍ତି । ଅସୁରୀୟ ପ୍ରକୃତିର ନିଧନ କରିବା ପାଇଁ ସେ ଉଦ୍ଦିଷ୍ଟ ।

ବିଭିନ୍ନ ଧର୍ମ ଶାସ୍ତ୍ରରେ ଶ୍ରୀଦୁର୍ଗା ସମସ୍ତ ଅଧର୍ମ ଦୁର୍ଗର ଅଧିଷ୍ଠାତ୍ରୀ ଦେବୀ । ହିନ୍ଦୁ ମୁସଲମାନ ସଂସ୍କୃତିର ଅପୂର୍ବ ମିଳନ ଦଶହରା ପର୍ବ । ଆଜି ସାମ୍ପ୍ରଦାୟିକ ବିଶ୍ୱରେ ଭେଦଭାବ ଜନଜୀବନକୁ ଭାରାକ୍ରାନ୍ତ କରିଥିବା ବେଳେ ଶତାବ୍ଦୀ ଶତାବ୍ଦୀ ଧରି ପ୍ରଚଳିତ ଐତିହାସିକ ଦଶହରା ପର୍ବ ଏକ ନୈସର୍ଗିକ ଆଲୋକବର୍ତ୍ତିକା ସଦୃଶ ବୈଜ୍ଞାନିକ ଦିଗ୍‌ଦର୍ଶନ ପ୍ରଦାନ କରି ସମାଜକୁ ସାଂସ୍କୃତିକ ମହାମିଳନର ମଧୁ ପାର୍ବଣ ହେବା ସଙ୍ଗେ ସଙ୍ଗେ ଭାରତବର୍ଷର ବୈଚିତ୍ର୍ୟମୟ ପରମ୍ପରାରେ ବିଭିନ୍ନତା ମଧ୍ୟରେ ତା'ର ଏକ ସୁନେଲି ବୈଚିତ୍ର । ମାନବ ସଭ୍ୟତା ଓ ସଂସ୍କୃତିକୁ ସରସ ସୁନ୍ଦର ଓ ମଧୁମୟ ଏବଂ ଶୋଭନୀୟ କରିବା ପାଇଁ ପୁରୁଷର ଜ୍ୟୋତିରେ ନାରୀ ଚନ୍ଦ୍ରିକାରେ ଝିଲିମିଲି ସୁନେଲି ପଣତ ପ୍ରୀତିର ଚନ୍ଦନ ବାସ୍ନାରେ ମନୋଜ୍ଞ ମହକିତ ପ୍ରକମ୍ପିତ ହେଉ ଦଶହରା ମହୋତ୍ସବ । ସଂସାରକୁ ସୁସ୍ଥ, ଶାନ୍ତ ଓ କୁସୁମିତ କରିବା ପାଇଁ ନାରୀ ଶକ୍ତି ଉଜ୍ଜୀବିତ ହେଉ । ଶାରଦୀୟ ଧରାଶ୍ରୀକୁ ଅପୂର୍ବ ଉତ୍ସାହରେ ସର୍ବଶକ୍ତି ସମ୍ପନ୍ନିତା, ସୁରାସୁର ବନ୍ଦିତା ବିଶ୍ୱମାତା ଶ୍ରୀଦୁର୍ଗାଙ୍କ ଅଭୁଲା ସ୍ମୃତି ଓ ଅକ୍ଷୟ କୀର୍ତ୍ତି ସ୍ୱର୍ଗୀୟ ସୁଷମାରେ ନବ ଜାଗୃତି ସୃଷ୍ଟି କରୁ । ଦୁର୍ଗାପୂଜା ଶାନ୍ତି ସଦ୍‌ଭାବନାର ଉଜ୍ଜ୍ୱଳ ସ୍ମାରକୀ । ମାନବିକ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ଏହା ଏକ ବିଶେଷ ବିସ୍ମୟ । ବିଶ୍ୱ ସନାତନ ଧର୍ମଦଣ୍ଡ ଧରି ପ୍ରକୃତି ପ୍ରଳୟଙ୍କରୀ ସାଜିଲା । ଦୁର୍ଗାପୂଜା ଆସିଲେ ମନ ଟାଣେ କଲିକତାକୁ, କଟକକୁ ଓ ଭୁବନେଶ୍ୱରକୁ । ଦୁର୍ଗାପୂଜା ଏକ ସର୍ବଦଳୀୟ ପର୍ବ । ପିଢି ପରେ ପିଢି ବଂଶ ପରେ ବଂଶ ମଣିଷ ରକ୍ତରେ ବହିଚାଲିଛି ଶକ୍ତିପୂଜା ପରମ୍ପରାର ମହାସ୍ରୋତ ।

ଜନ କଲ୍ଲୋଳ ମୁଖରିତ ଆଲୋକମାଳା ଦୀପ୍ତି ସମୁଜ୍ଜ୍ୱଳ ଆନନ୍ଦ ଉଲ୍ଲାସରେ ବ୍ୟସ୍ତତାର ଅନାହତ ସ୍ୱର ଝଙ୍କାର ବାୟୁ ତରଙ୍ଗରେ ବିସ୍ମୃତ ଆଭିଜାତ୍ୟର ସ୍ମୃତିକୁ ଆଣିଥାଏ ତଡିତ ଓ ତରଙ୍ଗ ଗତିରେ । ଐଶ୍ୱର ଶକ୍ତିକୁ କ୍ଲାନ୍ତ କରି ମୁଗ୍ଧ କରି ମନ୍ମୟ ତନ୍ମୟ ଆଲେଖ୍ୟରେ ଶ୍ରୀଦୁର୍ଗା ଅତୀତର ସେହି ଝରାଫୁଲର ସାମ୍ରାଜ୍ୟକୁ ଝୁରୁଛି । ଶୂନ୍ୟ ଉପତ୍ୟକାରୁ ମହାମୁକ୍ତିର ମଧୁସ୍ୱନ କାନରେ ବାଜେ । ମା' ପୂଜାରେ ମାଟିର ସର୍ବାଙ୍ଗ ଥରିଯାଏ । ପ୍ରାଣରେ ଉତ୍ତାଳ ତରଙ୍ଗ ଉଠେ । ଅଶିଣ ରାତିରେ ଆକାଶ ଛାତିରୁ ସ୍ନେହ ଶ୍ରଦ୍ଧାର ଟପ୍ ଟପ୍ ରକ୍ତ ଝରେ । ମହାମନ୍ତ୍ରର ଦକ୍ଷିଣା ପବନରେ ପହଁରି ଆସେ ଭାବ ସମୁଦ୍ରର ଐତିହାସିକ ଲହଡି ।



ଦେହ ଦେବାଳୟରେ ଧକ୍କା ମାରେ ତାରୁଣ୍ୟର କରୁଣ କୁହୁଡି । ଆଜି ଯେତେବେଳେ ଉତ୍ସବମୁଖର ସଫେଦ ଆଇନାରେ ମୁହଁ ଦେଖେ ସେତେବେଳେ ଅତୀତର ବହୁ ମହିଷାସୁରଙ୍କର ବିସ୍ମୟକର ସ୍ମାରକୀ ଆଖି ସାମନାରେ ବାରମ୍ବାର ନାଚିଯାଏ । ପୁରାଣ ପଂଜରାରେ ପ୍ରାଣ ସଂଚାର ହୁଏ । ଶତାବ୍ଦୀର ଗୋଧୂଳିରେ ମହକିତ ପରମ୍ପରା ନୈସର୍ଗିକ ମୃଦୁ ହିଲ୍ଲୋଳରେ ଶ୍ରୀଦୁର୍ଗାଙ୍କ ଅଭିଯାନ ଭୀଷଣ ସୌନ୍ଦର୍ଯ୍ୟରେ ଐଶ୍ୱର୍ଯ୍ୟ ପାଲଟିଯାଏ । ଉତ୍ସବର ଛାତି ତଳେ ଉଚ୍ଛଳ ତାରୁଣ୍ୟ ଚନ୍ଦନ ବାଷ୍ପାରେ ଚହଟିଯାଏ । ଶ୍ରୀଦୁର୍ଗାଙ୍କ ଆଗମନରେ ଶରତ ଶିଶିରବିନ୍ଦୁ ମଧୁମଳୟର ମୁକ୍ତା ପାଲଟେ । ସୌନ୍ଦର୍ଯ୍ୟର ରିମ୍ ଝିମ୍ ବର୍ଷାରେ ଧରାଶ୍ରୀ ମୁଖଶ୍ରୀରେ ପାରିଜାତ ଲାସ୍ୟ ପୁଷ୍ପ ହୋଇ ଫୁଟେ । ଚାହାଣୀରେ କୋଇଲିର କୁହୁ ଛୁଟେ । ଦୁଷ୍ଟ ପ୍ରାଣରେ ବାଜିଉଠେ ରୁଦ୍ର ବୀଣା । ମାଟିରୁ ଆକାଶ ବହେ ତପ୍ତ ଝଂକାର ଝରଣା । ପ୍ରଳୟ ପ୍ରେରଣାରେ ମରଣ ବରଣ କରି ଯୌବନରେ ରକ୍ତ ଅଶ୍ୱ ହିନହିନେଇ ଉଠେ । ଅଗ୍ନିପଥରେ ବହ୍ନିମାନ ଚେତନାର ସ୍ଫୁଲିଙ୍ଗ ଚୂର୍ଣି ହୋଇଯାଏ । ଫାଲ୍‌ଗୁନିର ବୃକ୍ଷ ସ୍ପନ୍ଦନ ଅଗ୍ନି ତୃଣୀର ଟଙ୍କାରି ଉଠେ । ଦୁର୍ଗା ମହୋତ୍ସବରେ ମୁକୁଳିତ ହୁଏ ଢଳ ଢଳ ସହସ୍ର କଳିକା । ମାଟି, ପାଣି, ପବନରେ ଆକାଶରେ ବତାସରେ ସଂଚରି ଯାଏ ଫୁଲଫୁଟା ଜୀବନରେ ଅନିନ୍ଦ୍ୟ ଗହନ ବନପ୍ରଭା ମୁଗ୍ଧ ମନୋରମା ।

ହେ ସୁନ୍ଦରୀ ଶରତ ଚନ୍ଦ୍ରିକା
ଝୀନ ସୁନାର ବସନେ ହୋଇ ଆଚ୍ଛାଦିତ
ମାନମୟୀ ଷୋଡଶୀଟି ହୋଇ
ହସି ହସି ଆସ ଅବତରି ଏଇ ଭୂସ୍ୱର୍ଗ ଭୁବନେ ।
ବ୍ୟାପ୍ତକରି ନିର୍ମଳ ସୁଷମା
ଅବନୀକୁ କରୁ ତୁ ମଂଜୁଳା ।
ତୋ ନାମରେ ବାଷ୍ପାମୟ ହେଇଯାଏ ବାସ ।
ପୁଣ୍ୟ ମାଟିରେ ଚହଲିଯାଏ ମହକ ।

ମଣିଷ ଭିତରେ ଉତୁରିଯାଏ ଚେତନା । ସ୍ନିଗ୍ଧ ସୁଲଳିତ ସୁମଂଜୁଳ ମଧୁସ୍ୱନ ଗୁଞ୍ଜରଣରେ ଅନାବିଳ ଅନୁଭୂତି ଅନ୍ୱେଷଣ ଅଭିବୃଦ୍ଧି ଶ୍ରୀଦେବୀଙ୍କ ରୋମାଞ୍ଚକର ଇତିହାସ । ବଡ ରହସ୍ୟମୟ ଏହାର ସୁବର୍ଣ୍ଣ ଝଲକ । ଏହି ମହୋତ୍ସବ ଆଣିଦିଏ ଦିବ୍ୟ ଜୀବନ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ



# ପୁରୁଷୋତ୍ତମେ ରହିଲୁ ମା' ବିମଳା ବୋଲାଇ

**ପଣ୍ଡିତ ରଶ୍ମି ରଞ୍ଜନ ଦାଶ**

ପ୍ରକାଶ୍ୟମାନ ଜୀବନ ଓ ଅଚେତନ ଜଡ଼ ଉଭୟରେ ସୃଷ୍ଟିର କାରଣ ''ଶକ୍ତି'' ।

ଶକ୍ତିକୁ ସାଧାରଣତଃ ଆମେ ମା' ବୋଲି ଜାଣୁ । ଯେଉଁଭଳି ମା'ଠାରୁ ହିଁ ଜୀବନ ସତ୍ତାର ଉତ୍ପତ୍ତି, ତା'ବିନା ସୃଷ୍ଟି ଅସମ୍ଭବ । ଠିକ୍ ସେହିପରି ଏ ଜଗତର ମଧ୍ୟ କେହି ଉଦ୍ଭବର କାରଣ ଥିବେ । ତାହାଙ୍କୁ ଶାସ୍ତ୍ର କହେ ଆଦି ଜନନୀ ବା ଜଗନ୍ମାତା । ଛୋଟବେଳେ ଆମେ ସମସ୍ତେ ପଢ଼ିଛେ -

''କାହାର ଆଦେଶେ କରିଛୁ ମା'ଏତେ<br>ଜୀବ ପାଇଁ ଆୟୋଜନ<br>ସେ 'ଆଦି ଜନନୀ' ଦରଶନ ପାଇଁ<br>ବ୍ୟାକୁଳ ସଦା ମୋ ମନ ।''

ହେ ବସୁନ୍ଧରେ ! ମା' ପୃଥ୍ୱୀ ତୁ କାହାର ଆଦେଶରେ ଏତେ ଫୁଲଫଳ ଘରଦ୍ୱାର ଇତ୍ୟାଦି ଯାବତୀୟ ଆୟୋଜନ କରିଛୁ ମୋତେ ଟିକେ ସେ ଆଦିମାତା ଜଗଜ୍ଜନନୀଙ୍କ ଦର୍ଶନ ପାଇଁ ଭାରି ଇଚ୍ଛା ହେଉଛି ଏବଂ ମା'କୁ ପଚାରିଲେ ସେ ପିତାଙ୍କ ପରିଚୟ କରିଦେଲା ଭଳି ସେ ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ଦେଖାଇ ଦିଅନ୍ତି । ଶ୍ରୀଜଗନ୍ନାଥଙ୍କ ମାତୃ ରୂପ ହିଁ ମା' । ''ସେ ଏକ ଓ ଅଭିନ୍ନ ।'' ଶାସ୍ତ୍ର ବିଭିନ୍ନ ଭାବରେ ଏହି ଭାବକୁ ହିଁ ଆମ ନିକଟକୁ ସନ୍ଦେଶ ଦିଏ । ପୂର୍ବରୁ ଉତ୍କଳକୁ ''ଉଡ୍ରଦେଶ'' କୁହାଯାଇଥିଲା ଏବଂ ଉଡ୍ରେଶ୍ୱର ଶ୍ରୀଜଗନ୍ନାଥ ଥିବାବେଳେ ''ଉଡ୍ରେଶ୍ୱରୀ ମା'ବିମଳାଙ୍କୁ'' କୁହାଯାଏ । ଏହି ପ୍ରସିଦ୍ଧ ଉଡ୍ଡୀୟାନ୍ ପୀଠର ଅଧିଶ୍ୱରୀ ହେଉଛନ୍ତି ଶ୍ରୀ ରାଜରାଜେଶ୍ୱରୀ ମା' ବିମଳା । ଏହା ମା'ଙ୍କର ପାଇଁ ପ୍ରସିଦ୍ଧି ଲାଭ କରିଥିବା ସ୍ଥଳେ ''ପାଦପୀଠ'' ବୋଲି ଶକ୍ତିପୀଠ ତଥା ତନ୍ତ୍ର କ୍ଷେତ୍ରମାନଙ୍କ ମଧ୍ୟରେ ସାର ଅଟେ ।

ଏହି ଦେବୀଙ୍କର ଉତ୍ପତ୍ତି ବିଷୟରେ ଥିବା କିମ୍ବଦନ୍ତୀକୁ ଅବଲୋକନ କଲେ ଜଣାଯାଏ- ଥରେ ମହାମୁନି ନାରଦ ପହଞ୍ଚିଲେ ବିଷ୍ଣୁପୁରୀ ବୈକୁଣ୍ଠରେ । ମନରେ ଇଚ୍ଛା ମହାପ୍ରଭୁଙ୍କ ମହାପ୍ରସାଦ ପାଇବା କିନ୍ତୁ ଗଲାବେଳକୁ ଠାକୁର ଶ୍ରୀବିଷ୍ଣୁ ଲକ୍ଷ୍ମୀଙ୍କ ସହିତ ଭୋଜନ ପରେ ବିଶ୍ରାମରେ ଅଛନ୍ତି । ଦେଖିଲେ ଉଚ୍ଛିଷ୍ଟ ପ୍ରସାଦ କିଛି ଅଛି ତାହାକୁ ମହାଆନନ୍ଦରେ ଗ୍ରହଣ କଲେ ଓ ଆନନ୍ଦରେ ବୀଣା ବାଦନ ପୂର୍ବକ ନାଚିନାଚି ପହଞ୍ଚିଲେ କୈଳାସରେ । ମହାଦେବ ନାରଦଙ୍କ ଏତାଦୃଶ ଅବସ୍ଥା ଦେଖି ଜାଣିଲେ ଏହା ମହାପ୍ରସାଦ ହେତୁ ହିଁ ସମ୍ଭବ ହୋଇଛି । ତା'ପରେ ସେ ନାରଦଙ୍କ ମୁଖରେ ଲାଗିଥିବା କଣିକାଏ ମହାର୍ଦ୍ଧକୁ ପାଇଲେ ଓ ତାଙ୍କର ମଧ୍ୟ ଆନନ୍ଦର ସୀମା ରହିଲା ନାହିଁ । ଏତିକି ଭିତରେ ମା' ପାର୍ବତୀ ଆସି ମହାଦେବ ଓ ନାରଦଙ୍କ ଅବସ୍ଥାର କାରଣ ଖୋଜି ଜାଣିଲେ ଯେ ଏହା ''ମହାନନ୍ଦପ୍ରଦ ମହାପ୍ରସାଦ'' ହେତୁ ସମ୍ଭବ ତେଣୁ ସେ ମଧ୍ୟ ମହାପ୍ରସାଦ ପାଇବାକୁ ଇଚ୍ଛା କରନ୍ତେ ନ ପାଇ ମନ ବ୍ୟସ୍ତ କରି ମହାବିଷ୍ଣୁଙ୍କୁ ତପସ୍ୟା କଲେ । ଶ୍ରୀବିଷ୍ଣୁ ଦେବୀଙ୍କର ତପସ୍ୟାରେ ଅତ୍ୟନ୍ତ ମୁଗ୍ଧ ହୋଇ କହିଲେ ତୁମ୍ଭେ ଶ୍ରୀକ୍ଷେତ୍ରରେ ମୋର ଯେଉଁ ନୀଳ ପର୍ବତ ତା'ପରେ ବିମଳା ନାମରେ ପୂଜିତ ହୋଇ ମୋର ନିତ୍ୟ

କୈବଲ୍ୟର ଅଧିକାରିଣୀ ବୋଲାଇ 'କୈବଲ୍ୟ ଲୋଲୁପିନୀ' ନାମକୁ ସାର୍ଥକ କରିବ । ଯାହା ବିମଳାଷ୍ଟକଂରେ ବର୍ଣ୍ଣିତ-

ଆର୍ତ୍ତତ୍ରାଣ କରୀ ସଦାଶିବ କରୀ
''କୈବଲ୍ୟ ଲୋଲୁପିନୀ''
ନାନାଚିତ୍ର ବିଚିତ୍ର ଭୂଷଣକରୀ କାରୁଣ୍ୟ ପୂର୍ଣ୍ଣେଶ୍ୱରୀ
କୈମାରୀ କରୁଣାମୟୀ ତ୍ରିଲହରୀ ନୀଳାଦ୍ରି ଗୁହେଶ୍ୱରୀ
ତ୍ରାହିମାଂ ବିମଳ ସଦା ସୁଖକରୀ ଶ୍ରୀକ୍ଷେତ୍ର ରାଜେଶ୍ୱରୀ ।

ପୁନଶ୍ଚ ଶାସ୍ତ୍ର କହେ, ମା'ବିମଳା ହେଉଛନ୍ତି ହରି କୈବଲ୍ୟ ମୋଦିତା ପରମ ବୈଷ୍ଣବୀ ମହାମାୟା ଯେ ଏହି କଳିଯୁଗରେ ବିଷ୍ଣୁ ମହାଶକ୍ତି ରୂପରେ ଖ୍ୟାତ ହେବେ । ଶାସ୍ତ୍ର ମତେ-

''ବିମଳା ଭବତି ନାମ୍ନୀ ହରି କୈବଲ୍ୟମୋଦିତା
ବୈଷ୍ଣବୀ ପରମାମାୟା କଳୌଖ୍ୟାତା ଭବିଷ୍ୟତି ।''

ତେଣୁ କରି ମା'ବିମଳା ହେଲେ ଦାରବୀ ତନୁ । ଶ୍ରୀବିଗ୍ରହଙ୍କ ପୂର୍ବରୁ ନୀଳକନ୍ଦରରେ ବିରାଜିତା 'ଆଦ୍ୟାଶକ୍ତି' । କୁହାଯାଏ ଯେ ଯେହେତୁ ସ୍ୱୟଂ ଶ୍ରୀଜଗନ୍ନାଥ ଓ ମା' ବିମଳା ଶ୍ରୀଚକ୍ର ବା ଶ୍ରୀଯନ୍ତ୍ର ଉପରେ ବିରାଜିତା ସେ ହେତୁ ଏ କ୍ଷେତ୍ରର ନାମ ''ଶ୍ରୀକ୍ଷେତ୍ର'' ଅର୍ଥାତ୍ ''ମହାଲକ୍ଷ୍ମୀ''ଙ୍କ କ୍ଷେତ୍ର ଅଟେ । ବେଦବର ବ୍ରହ୍ମା ଯେତେବେଳେ ଆସିଲେ ଉତ୍କଳଭୂମିକୁ ସେ ଦ୍ୱାଦଶ ପୀଠର ନାମ ଦେବାର ପଞ୍ଚସଖା ସାହିତ୍ୟର ଅନନ୍ୟ ସାଧକ ଜ୍ୟେଷ୍ଠ ଶ୍ରୀବଳରାମ ଦାସ ଉଲ୍ଲେଖ କରିଛନ୍ତି । ସେ ଦ୍ୱାଦଶ ପୀଠମାନେ ହେଲେ -

ଝଙ୍କଡ଼େ ରହିଲୁ ନାମ ଶାରଳା ବୋଲାଇ
କାକଟ ପୁରେ ରହିଲୁ ମଙ୍ଗଳା ଯେ ତୁହି
କୋଣାରକେ ରହିଲୁ ମା' ଅଭୟା ରାମଚଣ୍ଡୀ
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ
ବାଙ୍କିରେ ରହିଲୁ ନାମ ଚର୍ଚ୍ଚିକାଇ
ସମ୍ବଲପୁରେ ରହିଲୁ ନାମ ସମଲାଇ
ଯାଜପୁରେ ରହିଲୁ ମା' ବିରଜା ବୋଲାଇ
ପଶ୍ଚିମେ ରହିଲୁ ମା' ତୁ ନାମ ହିଙ୍ଗୁଳାଇ
ଭୁବନେଶ୍ୱରେ ରହିଲୁ ଗୌରୀ ବୋଲାଇ
ବାଣପୁରେ ରହିଲୁ ମା' ନାମ ଭଗବତୀ
ସକଳ ଅମର ତୋତେ କରନ୍ତି ମା' ସ୍ତୁତି
ଉତ୍ତର ଦିଗେ ରହିଲୁ ଚଣ୍ଡୀନାମ କହି
ଏମନ୍ତ ଦ୍ୱାଦଶ ନାମ ବ୍ରହ୍ମାଗଲେ ଦେଇ ।

ପୁନଶ୍ଚ ଶୂଦ୍ରମୁନି ଆଦିକବି ସାରଳା ଦାସ ଚଣ୍ଡୀପୁରାଣରେ ଅଷ୍ଟଚଣ୍ଡୀଙ୍କ ନାମ ନିମ୍ନମତେ ଦେଇଛନ୍ତି- ଝଙ୍କଡ଼େ ରହିଲୁ ମାଗୋ ଶାରଳା ନାମ ବହି/କାକୁଟପୁରେ ରହିଲୁ ମାଗୋ ମଙ୍ଗଳା ବୋଲାଇ/କୋଣାରକେ ରହିଲୁ ମାଗୋ ଅଭୟା ରାମଚଣ୍ଡୀ/ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ/ବାଙ୍କୀରେ ରହିଲୁ ମାଗୋ ଚର୍ଚ୍ଚିକା ନାମ ବହି/ ଯାଜପୁରେ ରହିଲୁ ମାଗୋ ବିରଜା ବୋଲାଇ/ ପଶ୍ଚିମ ଦିଗେ ରହିଲୁ ବୋଲାଇ ହିଙ୍ଗୁଳା/ଭୁବନେଶ୍ୱରେ ରହିଲୁ ନାମ ତୋ ଗଉରୀ । (ରାଜ୍ୟ ସଂଗ୍ରହାଳୟରେ ଥିବା ପୋଥି ଅନୁସାରେ)

ଅର୍ଥାତ୍ ଏ ଦେବୀଗଣ ହେଉଛନ୍ତି ଅଷ୍ଟତନ୍ତ୍ର ପୀଠରେ ଉଡ୍ରଦେଶର ଅଷ୍ଟଦେବୀ । ଏ ଦେବୀମାନେ ଉତ୍କଳୀୟ ସଂସ୍କୃତିରେ ମୁଖ୍ୟ ସ୍ତମ୍ଭ ଭାବରେ ଗଣ୍ୟ କାରଣ ଏମାନେ ଶ୍ରୀକ୍ଷେତ୍ର ମହାପ୍ରଭୁଙ୍କୁ ବଳୟାକାର ହୋଇ ସୁରକ୍ଷା ଦେବା ହେତୁ ରହିଛନ୍ତି । ଶାରଦୀୟ ଦୁର୍ଗୋତ୍ସବ ଷୋଳପୂଜାମାନଙ୍କରେ ଯେତେବେଳେ ଶ୍ରୀ ଗଜପତି ମହାରାଜ ମା' ବିମଳାଙ୍କ ପୂଜା ପାଇଁ ସଂକଳ୍ପ କରିଥାନ୍ତି ସେହି ସମୟରେ ମଧ ଏ ଅଷ୍ଟଚଣ୍ଡୀମାନଙ୍କର ପାଇଁ ମଧ ବ୍ରାହ୍ମଣ ବରଣ କରି ସେଠାକୁ ପ୍ରେରଣ ପୂର୍ବକ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ସେଠାରେ ମା'ଙ୍କ ଯଥାନୀତି ମାଜଣା, ଚଣ୍ଡୀପାଠ ଷୋଡ଼ଶ ଉପଚାରାଦି କରାଯାଏ । ଓଡ଼ିଶାର ଅଧିକାଂଶ ରାଜାଙ୍କର କୁଳଧର୍ମ ବୈଷ୍ଣବ, ଗୌଡ଼ୀୟ କିମ୍ବା ବିଶିଷ୍ଟା ଦ୍ୱୈତ ହେଲେ ସୁଦ୍ଧା ଇଷ୍ଟ ଦେବୀରୂପେ କୌଣସି କୌଣସି ଶକ୍ତିକୁ ଗ୍ରହଣ କରିଥିଲେ । ଯଥା- ଖଲ୍ଲିକୋଟ- ବାଉତି, ଘୁମୁସର-ବ୍ୟାଘ୍ରଦେବୀ, ଧରାକୋଟ-କୁଠାରୀ, ବଡ଼ଖେମୁଣ୍ଡୀ-ମାଣିକେଶ୍ୱରୀ, ପାରଳାଖେମୁଣ୍ଡି- ମାଣିକେଶ୍ୱରୀ, ଆଠଗଡ଼-ଭାରମୁଣ୍ଡୀ, ମହୁରୀ-କାଳୁଆ, ବରଗଡ଼-ବାରାହୀ, ସୁରଙ୍ଗୀ-କୁରେଇଶୁଣୀ, ଜଳନ୍ତର- ନିମ୍ବେଶ୍ୱରୀ, ମଂଜୁଷା-ଖିଲିମଣ୍ଡା, ଜରଡ଼ା-ଫୁଲକେଶ୍ୱରୀ,



ଚିକିଟି-କନକଦୁର୍ଗା, ତରଳା-ଅଲ୍ଲାଦେବୀ, ଚିକିଲି-କନକଦୁର୍ଗା ଓ ଭାରମୁଣ୍ଡି, ସୋନପୁର-ଭଗବତୀ, ସମ୍ବଲପୁର-ସମଲେଶ୍ୱରୀ, ପାଟଣା-ପାଟଣେଶ୍ୱରୀ, କଳାହାଣ୍ଡି-ମାଣିକେଶ୍ୱରୀ, ଶୀତଳା ଓ ନୟାଗଡ଼-ବାଉତି ଓ ବାଉରାଣୀ ।

ପଶ୍ଚିମ ଓଡ଼ିଶାର ଗ୍ରାମେ ଗ୍ରାମେ ଶକ୍ତି ଆରାଧନା କରାଯାଏ । ସମଲେଇ ବା ସମଲେଶ୍ୱରୀ ମୁଖ୍ୟ ଦେବୀ । ଏହାବ୍ୟତୀତ ପାଟଣେଶ୍ୱରୀ, କଇଁଲେଇ ବା କୋଳକେଶ୍ୱରୀ, ମାଣିକେଶ୍ୱରୀ, ସୁରେଶ୍ୱରୀ, ମାହେଶ୍ୱରୀ, ରାମଚଣ୍ଡୀ, ପିତାବଲୀ, ମାଉଲୀ, ଘଁସିଏନ, ଦ୍ୱାରସେନୀ, ଗମକେଇ, ଗଙ୍ଗାଦେଈ, କମଗେଇ ଦେବୀଙ୍କୁ ଆରାଧନା କରାଯାଏ । ପଶ୍ଚିମ ଓଡ଼ିଶାର ସର୍ବପ୍ରାଚୀନ ଦେବୀ ହେଉଛନ୍ତି ସ୍ତମ୍ଭେଶ୍ୱରୀ ଓ ଖମ୍ଭେଶ୍ୱରୀ ।

ଏହି ଧ୍ୟାନରେ ଉଡ୍ଡୀଦ୍ୟାଶକ୍ତି ବିମଳା ବାଗେଶ୍ୱରୀ ଏକ ସାତ୍ତ୍ୱିକ ବିଗ୍ରହ ରୂପେ ବିରାଜିତା ମାତ୍ର 'ଦ୍ରାକ୍ଷାସୁଧା କୁଣ୍ଡିକା' ଶବ୍ଦ ଉଗ୍ରବୀର ଭାବର ପ୍ରତୀକ ଅଟେ । ମା' ବିମଳା ଏଠାରେ ଯୋଗମାୟା ରୂପେ ପୂଜିତା । ସେ ଏକାଧାରରେ ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ସ୍ୱରୂପା ଅଟନ୍ତି । ତତ୍ତ୍ୱ ଦୃଷ୍ଟିରୁ ଦେଖିବାକୁ ଗଲେ ସେ ଗୋଟିଏ ହସ୍ତରେ ନାଗଧାରଣ କରିଥିବାରୁ ମହାକାଳୀ, ଏକ ହସ୍ତରେ ଅକ୍ଷମାଳା ଧାରଣ କରିଥିବାରୁ ସେ ମହାସରସ୍ୱତୀ ସ୍ୱରୂପା ଓ ଏକ ହସ୍ତରେ ଅମୃତ କଳସ ଧାରଣ କରିଥିବାରୁ ସେ ମହାଲକ୍ଷ୍ମୀ ସ୍ୱରୂପା ଅଟନ୍ତି ଓ ଅନ୍ୟ ହସ୍ତ ଅଭୟମୁଦ୍ରା ଦ୍ୱାରା ସୁଶୋଭିତ । ମା'ଙ୍କ ବାମ ପାର୍ଶ୍ୱରେ ''ଛାୟା'' ଓ ଦକ୍ଷିଣ ପାର୍ଶ୍ୱରେ ''ମାୟା'' ପାର୍ଶ୍ୱଦେବୀ ବା ଯୋଗ୍ନୀ ରୂପେ ବିରାଜିତା । ନାନାଳଙ୍କାର ଓ ପୁଷ୍ପମାଳାଙ୍କରଯୁକ୍ତ ବେଶମାନଙ୍କରେ ମା' ସର୍ବଦା ସୁଶୋଭିତା ଓ ଭକ୍ତ ମୋହନକାରିଣୀ ଅଟନ୍ତି । ଅନ୍ୟ କେତେକଙ୍କ ମତରେ ବହୁ ପ୍ରାଚୀନ ବିଗ୍ରହ ହେତୁ ଏହାଙ୍କ ଆୟୁଧ ଠିକ୍ ରୂପେ ଜାଣିହୁଏ ନାହିଁ । ମା'ଙ୍କର ଏକ ଧ୍ୟାନ ମୁକ୍ତିଚିନ୍ତାମଣି ଗ୍ରନ୍ଥାନୁସାରେ-

ଧ୍ୟାୟେତ୍ ବିଦ୍ୟୁତ୍ ସମପ୍ରଭାଂ ଉଡ୍ଡୀୟାନ୍ ପୁରେଶ୍ୱରୀମ୍
ନୃମୁଣ୍ଡ କୁଣ୍ଡଳୀକୁମ୍ଭାନ୍ ଦଧାନାଂ ପରମେଶ୍ୱରୀମ୍
ଅକ୍ଷମାଳାଂ ଧରାଂଦେବୀଂ ସର୍ବଶକ୍ତି ପ୍ରଦାୟିନୀମ୍
ପଦ୍ମପାଦାମହଂ ବନ୍ଦେ ବିମଳାଂ ବିମଳପ୍ରଦାମ୍ ॥
(ମୁକ୍ତି ଚିନ୍ତାମଣି)

ଅର୍ଥାତ୍ - ହେ ବିମଳେ ! ଉଜ୍ଜ୍ୱଳ ବିଦ୍ୟୁତମାଳାର ଜ୍ୟୋତି ତୁମଠାରେ ପ୍ରକାଶିତ । ତୁମେ ଉଡ୍ଡୀୟାନ୍ ତନ୍ତ୍ରର ଅଧିଶ୍ୱରୀ, ତୁମେ ନୃମୁଣ୍ଡମାଳିନୀ, ପରମେଶ୍ୱରୀ, ଅକ୍ଷମାଳା ଧାରଣକାରିଣୀ ଓ ସମସ୍ତ ଶକ୍ତି ପ୍ରଦାନକାରିଣୀ ମା' ମହାନାରାୟଣୀ ଅଟ । ତୁମେ ପଦ୍ମ ଉପରେ ବିରାଜମାନ କରିଅଛ । ହେ ବିମଳ ପ୍ରଦାନକାରିଣୀ । ମୁଁ ତୁମକୁ ପ୍ରଣାମ କରୁଅଛି ।

'ବିମଳା ସପର୍ଯ୍ୟା'ର ଧ୍ୟାନ ଓ ଆୟୁଧ ରହସ୍ୟରୁ ବିମଳାଙ୍କର ପ୍ରାଚୀନତ୍ତ୍ୱ ମଧ୍ୟ ଅନୁମେୟ । ଏହି ବିମଳା ସପର୍ଯ୍ୟାର ପଦ୍ୟାବଳୀମାନ ଅତ୍ୟନ୍ତ ବିଲୁପ୍ତ ସଂଗ୍ରହ ଅଟନ୍ତି । ଏହା ପାଠକ ଓ ସାଧକମାନଙ୍କ ପାଇଁ ଅତ୍ୟନ୍ତ ଜରୁରୀ-

ରଜତଗିରି ପ୍ରକାଶଂ ଚନ୍ଦ୍ରମୌଳୀ ପରେଶୀ
ମଣିମୟ ମୁକୁଟଢ଼୍ୟାଂ ସ୍ମିତହାସୀ ସୁକେଶୀ ।
କନକ ଖଚିତ ବାସ ରତ୍ନଗୈବେୟ ହାରମ୍
ପରିହିତ ଗଳଦେଶେ ଦୀପ୍ତ ନକ୍ଷତ୍ରମାଳା ।
ଧୃତକର ମନୁଜୈକ ବ୍ୟାଳଛନ୍ଦଂ ଦଧାନମ୍
ପୀୟୁଷ କଳସଦିବ୍ୟଂ ମାଳିକାଦ୍ୟ କରାବ୍ଜେ ।
ଧବଳ କମଳ ପୀଠା ରୂଢ଼ା ''କୈବଲ୍ୟଦାତ୍ରୀ''
ପଦସରସିଜଂ ବନ୍ଦେ ବିମଳେତ୍ୱାଂ ନମାମି ।
ପଦଯୁଗ ବିମଳାମ୍ବାଂ ସନ୍ତତଂ ଚିନ୍ତୟାମି ।

(ଏହି ଧ୍ୟାନରେ ଥିବା ମା'ଙ୍କ ବର୍ଣ୍ଣନା ଦେଖିଲେ ପ୍ରତ୍ୟକ୍ଷ ବିଗ୍ରହ ଭଳି ବ୍ରହ୍ମଶକ୍ତି ଧାରିଣୀ ଲାଗେ ।) ଏଠାରେ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ମା ମହାଲକ୍ଷ୍ମୀଙ୍କ ପରିବର୍ତ୍ତେ ବିମଳାଙ୍କୁ କାହିଁକି ସମର୍ପଣ କରାଯାଏ । ଏ ଉତ୍ତର ପୂର୍ବରୁ 'କାଳିକା ପୁରାଣ'ରେ ବର୍ଣ୍ଣିତ ।

ପୂଜୟେତ୍ କର୍ଣ୍ଣିକା ମଧ୍ୟେ ବାସୁଦେବଂ ତୁ ନାୟକ
ବିମଳା ନାୟିକା ତସ୍ୟ ବାସୁଦେବସ୍ୟ କୀର୍ତ୍ତିତା ।

ଅର୍ଥାତ୍ - ବିମଳା ବାସୁଦେବଙ୍କର ନାୟିକା ବୈଷ୍ଣବୀୟ ଚିନ୍ତା ଓ ଚେତନାରେ ଶାକ୍ତ ବିଚାରଧାରାରେ



ଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀ ରୂପେ ବହୁ ପୂର୍ବରୁ ଶାସ୍ତ୍ରୋକ୍ତ କରିଛି ।

**ମା' ବିମଳାଙ୍କ ପୂଜା ରହସ୍ୟ**

ଜଗନ୍ନାଥଙ୍କର ନିତ୍ୟ ପୂଜାରେ ଶକ୍ତିମାନଙ୍କୁ ଉପାସନା କରାଯାଏ । ଏହାକୁ ନବଶକ୍ତି କୁହାଯାଏ । ଅବକାଶ ଓ ସମସ୍ତ ପୂଜାରେ ବିମଳାଙ୍କର ଓ ଉତ୍କର୍ଷଣୀ, କ୍ରିୟାଯୋଗାଦି ତତ୍ତ୍ୱ ଶକ୍ତିଙ୍କର ପୂଜା ହୋଇଥାଏ ।

ସ୍ୱର୍ଣ୍ଣାଭ ଅଷ୍ଟଧାପଦ୍ମଂ ତନ୍ମଧ୍ୟେ କେଶରୋଜ୍ଜ୍ୱଳଂ
ବିମଳା ମଧ୍ୟ ଦେଶେତୁ ପୂଜୟେତ୍ ମନ୍ତ୍ରୀ ଭକ୍ତିତଃ
ଉତ୍କର୍ଷିଣୀ କ୍ରିୟା ଯୋଗାଜ୍ଞାନସତ୍ୟା ନାଥା କ୍ରମାତ୍
ପଦ୍ମାନୁଗ୍ରହ ଇଶାନୈ ଦଳାଷ୍ଟ ଶକ୍ତିଭିଃ ତଥା ॥

ଓଡ଼ିଆ ଶ୍ରୀମଦ୍ ଭାଗବତ୍‌ର ରଚୟିତା ଅତିବଡ଼ୀ ଜଗନ୍ନାଥ ଦାସ ଦ୍ୱାଦଶ ସ୍କନ୍ଦର ୧୧ ଅଧ୍ୟାୟରେ ଶ୍ରୀପୁରୁଷୋତ୍ତମ ମାର୍ଚ୍ଚନ ବିଧିପ୍ରକାଶରେ କରିଛନ୍ତି ।

ନାରାୟଣ କଳାରୂପିଣୀ
ଜ୍ଞାନ କ୍ରିୟାଏ ଇଚ୍ଛା ତିନି
ବିମଳାଦି ନବଶକ୍ତିନୀ
ଏ ମଧ୍ୟେ ରାମ ବିଳାସିନୀ ।

ବିମଳାଷ୍ଟକରେ ଏହାଙ୍କୁ ଗୋବିନ୍ଦାଙ୍ଗବିହାରିଣୀ ମଧ୍ୟ କୁହାଯାଉଥିଲା ବେଳେ ମହେଶଗୃହିଣୀ ମଧ୍ୟ ବର୍ଣ୍ଣନା କରାଯାଇଛି । ଯାହା ତତ୍ତ୍ୱ ଦୃଷ୍ଟିରୁ ସେ ଏକ, ଭିନ୍ନ ନୁହେଁ ।

ବିମଳାଙ୍କୁ ଜଗନ୍ନାଥଙ୍କର ମାୟାଶକ୍ତି, ବଳଭଦ୍ରଙ୍କ କ୍ରିୟାଶକ୍ତି ଓ ସୁଭଦ୍ରାଙ୍କର ଇଚ୍ଛାଶକ୍ତି ବୋଲି କୁହାଯାଇଛି ଏବଂ ରାମ ବିଳାସିନୀ ବା ମହେଶଗୃହିଣୀ ମଧ୍ୟ କୁହାଯାଇଛି । ଏ ଦେବୀ ସମ୍ପୂର୍ଣ୍ଣ ସାତ୍ତ୍ୱିକଗୁଣା ମହାଦେବୀ ପରମେ ବୈଷ୍ଣବୀ ଅଟନ୍ତି । 'ଦେବୀ ଭାଗବତ'ରେ ଏହା ବର୍ଣ୍ଣିତ ।

ଏହାଙ୍କର 'ମନ୍ତ୍ରଦ୍ରଷ୍ଟା' ହେଲେ 'ଶକ୍ତିରଷିଃ' ଏବଂ ଅନଙ୍ଗକୁସୁମା, ଅନଙ୍ଗବେଗା, ଅନଙ୍ଗମଦନାତୁରାବି, ଅଷ୍ଟଶକ୍ତି ପରିସମାନ ବେଷ୍ଟିତ ଅଟନ୍ତି ।

ମହାବିଦ୍ୟା ମହାମାୟା ପୂର୍ଣ୍ଣ ପ୍ରକୃତି ରବ୍ୟୟା ।
ଅଦୃଷ୍ଟ ପୂର୍ବା ସା ଦୃଷ୍ଟ୍ୱା ସୁନ୍ଦରୀ ସ୍ମିତଭୂଷଣା ।

ଦେବୀ ଭାଗବତ ଦ୍ୱାଦଶ ସ୍କନ୍ଦ ୨ୟ ଅଧ୍ୟାୟରେ ଶ୍ରୀମାନ୍ ନାରାୟଣଙ୍କର ଶକ୍ତିମାନଙ୍କ ମଧ୍ୟରେ ବିମଳା ଅନ୍ୟତମା ଅଟନ୍ତି ବୋଲି ବର୍ଣ୍ଣିତ ହୋଇଛି ।

''ପ୍ରଭାବତୀ ଦୟା ଶାନ୍ତା କାନ୍ତା ଦୁର୍ଗା ସରସ୍ୱତୀ
ବିଦ୍ୟମାତଃ ବିକାଳେଶୀ ବ୍ୟାପିନୀ ବିମଳା ତଥା ।''

**ମା' ବିମଳାଙ୍କ ଶାରଦୀୟ ପୂଜା**

ମା' ବିମଳାଙ୍କର ଶାରଦୀୟ ଅର୍ଚ୍ଚନ ଷୋଡ଼ଶ ଦିନାତ୍ମିକା ଅଟନ୍ତି । ମା' ବିମଳା ଭଗବତୀଙ୍କର ଏହି ଯାତ୍ରାକୁ ''ମହାପୂଜାର'' ଆଖ୍ୟା ଦିଆଯାଇଛି । ଏହାକୁ ମଧ୍ୟ 'ଷୋଳପୂଜା' କହନ୍ତି । ମାତ୍ର ଯେଉଁ ବର୍ଷ ମଳମାସ ପଡ଼େ ତାହା ୩୦ ଦିନ 'ପ୍ରାୟତଃ ଅଧିକ ହୋଇପଡ଼େ । ଗତବର୍ଷ ଅର୍ଥାତ୍ ୨୦୨୦ରେ ଏହା ୪୨ ଦିନ ପର୍ଯ୍ୟନ୍ତ ପଡ଼ିବାର ନଜିର ଅଛି । ଏହାକୁ ଅତ୍ୟନ୍ତ ନିଷ୍ଠାର ସହିତ ବିଦ୍ୱାନ୍ ବ୍ରାହ୍ମଣମାନେ ମା'ଙ୍କର ତନ୍ତ୍ରୋପଚାର ପୂଜା କରିଥାନ୍ତି । ଏହି ଯାତ୍ରାଟି ମହାପ୍ରଭୁଙ୍କର ତ୍ରୟୋଦଶ ଯାତ୍ରା ମଧ୍ୟରେ ଅନ୍ତର୍ଭୁକ୍ତ ନ ହେଲେ ମଧ୍ୟ ଏହା ''ଶାକ୍ତ ଗୁଣ୍ଡିଚା'' ବା ''ଗୁପ୍ତ ଗୁଣ୍ଡିଚା'' ଭାବରେ ଲୋକ ବିଦିତ । ଭାଦ୍ରବ ଶୁକ୍ଳ (ରାଧା) ଅଷ୍ଟମୀ ତିଥିରେ ଦୁର୍ଗାଙ୍କର ଶୟନୋତ୍ସବ ପାଳିତ ହୁଏ । ଭାଦ୍ରବ ଶୁକ୍ଳ (ଅନନ୍ତ) ଚତୁର୍ଦ୍ଦଶୀରେ ଦେବୀଙ୍କ ପାର୍ଶ୍ୱ ପରିବର୍ତ୍ତନ କରନ୍ତି । ଆଶ୍ୱିନ କୃଷ୍ଣ ଅଷ୍ଟମୀ (ମୂଳାଷ୍ଟମୀ)ରେ ଦେବୀଙ୍କର ଉତ୍ଥାପନ ନୀତି ଅନୁଷ୍ଠିତ ହୁଏ ।

ଉପରୋକ୍ତ ବିଧି ହିଁ ଶ୍ରୀମନ୍ଦିର ଶାକ୍ତ ଗୁଣ୍ଡିଚାର ବିଧି । ଦେବୀ ଉତ୍ଥାପନ ନୀତି ପରେ ଆଶ୍ୱିନ ମାସର ଶୁକ୍ଳ ଅଷ୍ଟମୀଠାରୁ ଆଶ୍ୱିନ ମାସର କୃଷ୍ଣନବମୀ ପର୍ଯ୍ୟନ୍ତ ଷୋହଳ ଦିନ ବ୍ୟାପୀ 'ଷୋଳପୂଜା' ବା 'ଷୋଡ଼ଶ ଦିନାତ୍ମକ ପୂଜା' ପାଳିତ ହୋଇଥାଏ । ଏହି ଶାରଦୀୟ ଦୁର୍ଗୋତ୍ସବକୁ ଶ୍ରୀମନ୍ଦିରରେ ଶାକ୍ତଗୁଣ୍ଡିଚା ବା ଶାରଦୀୟ ରଥଯାତ୍ରା ଭାବରେ ନାମିତ କରାଯାଏ । ଏହାକୁ 'ଦୁର୍ଗାମାଧବ'



ଉପାସନା ଭାବରେ ସ୍ୱତନ୍ତ୍ର ଉତ୍କଳୀୟ ପରମ୍ପରା ଧାରାରେ ଅନୁଷ୍ଠିତ ହୁଏ ।

ଆଶ୍ୱିନ ମାସ ଶୁକ୍ଳ ଅଷ୍ଟମୀ ଦିନ ଶାରଦୀୟ ପୂଜା ପାଇଁ ମା' ସୁଭଦ୍ରାଙ୍କୁ ପ୍ରାର୍ଥନା କରାଯାଏ । ସକାଳ ଧୂପ ବଢ଼ିବା ପରେ ମା' ସୁଭଦ୍ରିକାଙ୍କର ଆଜ୍ଞାମାଳ ଆସେ ଏବଂ ଦକ୍ଷିଣ ଘରୁ କନକଦୁର୍ଗାଙ୍କ ପ୍ରତିମା ରତ୍ନ ସିଂହାସନରେ ବିଜେ ହୁଅନ୍ତି । ଯାହାଙ୍କୁ ମା' ବିମଳାଙ୍କର ଚଳନ୍ତି ବିଗ୍ରହ କୁହାଯାଏ । ଦେବୀଙ୍କ ଆଜ୍ଞାମାଳ ପାଇବା ପରେ ମାଜଣା ମଣ୍ଡପକୁ ନେଇ ସେଠାରେ ଖଟରେ ବିଜେ କରାଯାଏ ଏବଂ ପରେ ପଣ୍ଡା, ପତି, ମୁଦିରସ୍ତ ଓ ଆଚାର୍ଯ୍ୟ (ବୀରନରସିଂହପୁର ରଥ ସାମନ୍ତମାନେ ବରଣ ହୋଇ ଆସିଥାନ୍ତି) ବ୍ରହ୍ମାବରଣ ହୋଇ ଦେବୀଙ୍କୁ ବନଦୁର୍ଗା ମନ୍ତ୍ରରେ ଅଭିମନ୍ତ୍ରିତ ୧୦୮ ଗରା ଜଳରେ ଅଭିଷେକ କରାଯାଏ । ଏହାକୁ 'ସହସ୍ର କୁମ୍ଭାଭିଷେକ' କୁହାଯାଏ । ଶ୍ରୀଅଙ୍ଗ ପୋଛା, ବସ୍ତ୍ର ଓ ବେଶ ଲାଗି ପରେ ପ୍ରସାଦ ଓ ଶୀତଳ ଭୋଗ ହୁଏ । 'ମୁଦିରସ୍ତ' ପ୍ରସାଦ ଲାଗି କରନ୍ତି । (ସୂଚନା: ମୁଦିରସ୍ତ କିଏ? ଏହାଙ୍କୁ ମଦ୍ରାହସ୍ତ ବୋଲି କୁହାଯାଏ । ଶ୍ରୀ ଗଜପତି ମହାରାଜ ଏକ ମୁଦ୍ରା ଏହାଙ୍କୁ ଦେଇଥାନ୍ତି । ସେ ୧୮ ବର୍ଷ ବୟସରୁ କମ୍ ହୋଇଥାନ୍ତି । ଶ୍ରୀଗଜପତିଙ୍କ ଅନୁପସ୍ଥିତିରେ ସେ ମହାପ୍ରଭୁଙ୍କ ସେବା କରିବା ପାଇଁ ଅଧିକାରପ୍ରାପ୍ତ ହୁଅନ୍ତି ଓ ମହାରାଣୀ କେବେ ଯଦି ଶ୍ରୀମନ୍ଦିର ବିଜେ କରନ୍ତି ସେ ତାଙ୍କ ହାତଧରି ନେଇଯାନ୍ତି ମନ୍ଦିର ଭିତରକୁ ।) ପଞ୍ଚୋପଚାର ଭୋଗ ପରେ ବନ୍ଦାପନା ହୋଇ ମହାଦେବୀଙ୍କୁ ଭଣ୍ଡାର ଘର ଦ୍ୱାର ନିକଟକୁ ନିଆଯାଏ । ରତ୍ନ ସିଂହାସନସ୍ଥ ଦାରୁବିଗ୍ରହ ମାଧବ (ବାଳ ପୁରୁଷୋତ୍ତମ) ଆଜ୍ଞାମାଳ ପାଇ ଭଦ୍ରାସନରେ ମା' ଦୁର୍ଗାଙ୍କ ସହ ଏକତ୍ର ରୁନ୍ଧା ଅର୍ଥାତ୍: (ମିଳିତ) ହୁଅନ୍ତି । ଏହାପରେ ଦୁର୍ଗାମାଧବଙ୍କୁ ରତ୍ନ ସିଂହାସନ ପାଖକୁ ନିଆଯାଇ ମା' ଭୁବନେଶ୍ୱରୀ ସ୍ୱରୂପିଣୀ ସୁଭଦ୍ରାଙ୍କଠାରୁ ମା' ଦୁର୍ଗା ଓ ଜଗନ୍ନାଥଙ୍କଠାରୁ ମାଧବ ଆଜ୍ଞାମାଳ ପାଇବା ପରେ ଦେବ ପ୍ରତିମା ଜୟବିଜୟ ଦ୍ୱାର ଦେଇ ଝୁଲଣ ମଣ୍ଡପ ତଳେ ସୁନ୍ଦର ଭାବରେ ସଜ୍ଜା ହୋଇଥିବା ପାଲିଙ୍କିରେ ବିଜେ ହୁଅନ୍ତି । (ସୂଚନା:- ଏଠି ବିମାନ ଓ ପାଲିଙ୍କି ଭିତରେ ପାର୍ଥକ୍ୟ ହେଲେ ପାଲିଙ୍କିରେ ଗୋଟିଏ କାଠ ସିଧା ହୋଇ ଆଗରେ ଓ ପଛରେ କାନ୍ଧେଇବାକୁ ଥାଏ ଏବଂ ଏହାର ମଧ୍ୟଭାଗରେ ଦେବବିଗ୍ରହ ରହିବାକୁ ସ୍ଥାନ ବି ଥାଏ । ଦୁଇ ପାଖରୁ ବିମାନ ବଡୁ ସେବକମାନେ ଏହାକୁ ଧରି ସୁନ୍ଦର ଭାବରେ ପହୁଣ୍ଡ ପକେଇ ପକେଇ ଯା'ନ୍ତି । ଏହା ଦେଖିବାକୁ ବହୁତ ସୁନ୍ଦର ଲାଗେ କିନ୍ତୁ ବିମାନର ଆଗରେ ଦୁଇ ଓ ପଛରେ ଦୁଇ ସିଧା କାଷ୍ଠ ଥାଏ ଓ ବିମାନରେ ଏକ କ୍ଷୁଦ୍ର ମନ୍ଦିର ପ୍ରାୟ ଥାଏ ଯେଉଁଠି ବିଗ୍ରହମାନେ ସ୍ଥାନିତ ହୋଇଥାନ୍ତି । ଏହାକୁ ନିହାତି ୪ଜଣ ଧରିବାକୁ ହୁଏ ।) ଗବେଷକମାନଙ୍କ ମତକୁ ଦେଖିଲେ ଜଣାଯାଏ ପ୍ରାୟ ୧୩ଶ ଶତାବ୍ଦୀ ବେଳକୁ ମା' ବିମଳା ଓ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଦୁର୍ଗାମାଧବ ସ୍ୱରୂପରେ ଉପଲବ୍ଧି କରିବା ପାଇଁ ବିମଳାଙ୍କ ମନ୍ଦିରରେ ଦୁର୍ଗାମାଧବଙ୍କ ସମ୍ମିଳିତ ଉପାସନାର ବ୍ୟବସ୍ଥା କରାଗଲା । ଏହି ପାଲିଙ୍କି ବିମଳା ମନ୍ଦିରରେ ପହଞ୍ଚିଲା ପରେ ବିମଳା ମନ୍ଦିରରେ ଜଗମୋହନରେ ଥିବା ଏକ ସୁସଜ୍ଜିତ ପଲଙ୍କରେ ସେ ବିଜେ ହୁଅନ୍ତି । ସେଠାରେ ଶୀତଳ ମଣୋହି ଓ ବନ୍ଦାପନା ଅନୁଷ୍ଠିତ ହୁଏ । ତା'ପରେ ବିଶେଷ ବିଧି ଅନୁଯାୟୀ ପୂଜାନୁଷ୍ଠାନ କରାଯାଏ ଏବଂ ରାତିରେ ଦୁର୍ଗାମାଧବଙ୍କୁ ଭଣ୍ଡାର ଘରକୁ ଫେରାଇ ଅଣାଯାଏ । ଏହିପରି ଅମାବାସ୍ୟା ପର୍ଯ୍ୟନ୍ତ କରାଯାଏ । ଏହାପରେ ଆଶ୍ୱିନ ଶୁକ୍ଳ ପ୍ରତିପଦାରୁ ଦୁର୍ଗାମାଧବଙ୍କୁ (ରଥରେ) ପାଲିଙ୍କିରେ ଆରୋହଣ କରି ଦୋଳମଣ୍ଡପସ୍ଥିତ ନାରାୟଣୀ ମନ୍ଦିରକୁ ନିଆଯାଏ । ଦୁର୍ଗାମାଧବ ଶାରଦୀୟ ଷୋଳପୂଜାର ପ୍ରଥମ ଆଠଦିନ ବିମଳା ମନ୍ଦିରକୁ ବିଜେ କରୁଥିବା ବେଳେ ପର ଆଠ ଦିନ ନାରାୟଣୀ ମନ୍ଦିରକୁ ଗମନ କରନ୍ତି । ଏହି ଶେଷ ଆଠ ଦିନକୁ 'ଶାକ୍ତଗୁଣ୍ଡିଚା' କୁହାଯାଏ । ଗଜପତି ପ୍ରଥମ ରାମଚନ୍ଦ୍ର ଦେବଙ୍କ ସମୟରେ ରାଜଗୁରୁ ବର୍ଦ୍ଧନ ମହାପାତ୍ର 'ଦୁର୍ଗୋତ୍ସବ ଚନ୍ଦ୍ରିକା' ରଚନା କରି ଦୁର୍ଗାପୂଜାକୁ ସାର୍ବଜନୀନ ଉତ୍ସବରେ ପରିଣତ କରିଥିଲେ ଏବଂ ଏହାପରେ ଗାଁ ଗହଳିରେ ତଥା ସହରମାନଙ୍କରେ ମୃଣ୍ମୟୀ ଦେବୀ ପୂଜା ଆରମ୍ଭ ହେଲା । ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳନବମୀ ପର୍ଯ୍ୟନ୍ତ ବିମଳା ପୀଠରେ ଷୋଳପୂଜା ଉତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ସମୟରେ ପୁରୀ ବୀରନରସିଂହପୁର ଶାସନରେ ରଥ

ସାମନ୍ତ ବ୍ରାହ୍ମଣମାନେ ମା' ବିମଳାଙ୍କୁ ଭୁବନେଶ୍ୱରୀଙ୍କ ବୀଜମନ୍ତ୍ର, ପୂଜା ପଦ୍ଧତିରେ ଉପଚାର ଓ ନୈବେଦ୍ୟ ପ୍ରଦାନ କରନ୍ତି । ମା'ଙ୍କ ପାଖରେ ମନ୍ଦିର ପ୍ରଶାସନ ପକ୍ଷରୁ ଆୟୋଜିତ କୋଠଭୋଗରେ ଶାରଦୀୟ ମହୋତ୍ସବ ପାଇଁ ରୋଷରେ ସ୍ୱତନ୍ତ୍ର ଦ୍ରବ୍ୟମାନ ହୋଇଥାଏ । ଯଥା- ବିମଳେଇ ପିଠା, ଗଜାମଣ୍ଡା ମୁଆଁ ଓ ଥାଳି ଖେଚେଡ଼ି ମଣୋହିରେ ବଢ଼ାଯାଇ ଷୋଡ଼ଶ ଉପଚାରରେ ପୂଜା କରାଯାଏ ଓ ଆଳତି ବନ୍ଦାପନା ପରେ ବିମଳାଙ୍କ ଜଗମୋହନର ପଲଙ୍କ ଉପରେ 'ଦୁର୍ଗାମାଧବ' ବିଜେ କରନ୍ତି । ସେଠାରେ ଶୀତଳ ଭୋଗ ଓ ବନ୍ଦାପନା ହୋଇ ମହାପ୍ରଭୁଙ୍କ ପାଖରେ ଭୋଗ ଲାଗେ ଏବଂ ମା'ଙ୍କୁ ଆସି ପୁନଶ୍ଚ ବେଲପତ୍ର ପଡ଼ି ନୈବେଦ୍ୟ ହୁଏ । ଏପରି ତିନିଧୂପ ଶେଷ କରାଯାଇ ଶ୍ରୀଜୀଉଙ୍କ ଭିତର ଚନ୍ଦନ (ରାତ୍ରିରେ) ଲାଗି ହୁଏ । ସେ ତ ରାଜାଧିରାଜ ଠାକୁର ନା ଚନ୍ଦନ ଥଣ୍ଡା ଲାଗିଲେ ମଣିମା ନିଦ ପହୁଡ଼ ଯା'ନ୍ତି । ଏହା ପରେ ବିମାନବଡୁ ସେବକ ପାଲିଙ୍କିରେ ଦୁର୍ଗାମାଧବଙ୍କୁ ନେଇଥାନ୍ତି । ମହାଜନ ଭଣ୍ଡାର ଘରେ ଦୁର୍ଗାମଧବଙ୍କୁ ବିଜେ କରାନ୍ତି । ଆଶ୍ୱିନ ଶୁକ୍ଳ ପ୍ରତିପଦାରୁ ନବମୀ ପର୍ଯ୍ୟନ୍ତ ବିଧିକୁ ''ନବରାତ୍ର'' କୁହାଯାଏ । ଏହି ଦିନମାନଙ୍କରେ ନବଦୁର୍ଗା ଉପାସନା ମନ୍ଦିରରେ ତଥା ଗୃହମାନଙ୍କରେ ଦେବୀଭକ୍ତମାନେ ନିଷ୍ଠାର ସହିତ କରିଥାନ୍ତି । ମା' ବିମଳାଙ୍କ ମନ୍ଦିରରେ ମୁଖ୍ୟତଃ ସପ୍ତମୀ, ଅଷ୍ଟମୀ ଓ ନବମୀ ଦିନ ସ୍ୱତନ୍ତ୍ର ପୂଜାର ବ୍ୟବସ୍ଥା ଅଛି । ଏହି ଦିନମାନଙ୍କରେ ବୈଷ୍ଣବୀ ଓ ଶାକ୍ତ ପରମ୍ପରାର ମହାମିଳନ ଉତ୍ସବ ପାଳିତ ହୁଏ । ଏହା କେବଳ ଉତ୍କଳୀୟ ପରମ୍ପରାର ଅନନ୍ୟ ନିଦର୍ଶନ । ମା'ଙ୍କର ଏହି ଷୋଡ଼ଶ ଦିନମାନଙ୍କରେ ବିଭିନ୍ନ ବେଶ କରାଯାଏ । ପ୍ରଥମ ଓ ଶେଷ ଚାରିଦିନ ବେଶ ହୁଏନି । ୨ୟ ଦିବସରୁ କ୍ରମାନୁସାରେ - ଭୁବନେଶ୍ୱରୀ, ବନଦୁର୍ଗା, ରାଜରାଜେଶ୍ୱରୀ, ଉଗ୍ରତାରା, ମାତଙ୍ଗିନୀ, ବଗଳା, ନାରାୟଣୀ, ସିଂହବାହିନୀ, ଜୟଦୁର୍ଗା, ଶୂଳଦୁର୍ଗା, ହରଚଣ୍ଡୀ ବିଜୟା ଦଶମୀରେ ଶାନ୍ତିବେଶରେ ମା'ଙ୍କୁ ସୁସଜ୍ଜିତ କରାଯାଏ ।

ଏଠାରେ ମୁକ୍ତିକାମୀ ଭକ୍ତ ଶୁଦ୍ଧ ଭକ୍ତି ଲାଭ କରେ ସାତ୍ତ୍ୱିକୀ ଭାବରେ, ରାଜସୀଭକ୍ତ, ଯଶ, ଜ୍ଞାନ, ଧନ, ବଳ ଲାଭ କରେ ଏବଂ ତାମସୀ ଭକ୍ତ ମଧ୍ୟ ନିମ୍ନ କାମନାକୁ ଲାଭ କରେ । ମାତ୍ର ଏ ସମସ୍ତ କେବଳ ମା'ପ୍ରତି ଭକ୍ତି ନିଷ୍ଠାରେ ହିଁ ପ୍ରାପ୍ତ ହୁଏ ।

ତେଣୁ ବିମଳା ସପର୍ଯ୍ୟା କହନ୍ତି-

ମୋକ୍ଷକାମୀ ଲଭେତ୍‌ଭକ୍ତିଂ ଦର୍ଶନାତ୍ ବିମଳେଶ୍ୱରୀମ୍
ଯଶ ଜ୍ଞାନ ଫଳାକାଂକ୍ଷୀ ଲଭନ୍ତେ ସିଦ୍ଧି ନିଶ୍ଚିତମ୍
ଉଗ୍ରସିଦ୍ଧିଂ ଲଭତେ କାମୀ ସର୍ବେଷାଂ ସିଦ୍ଧି ଦାୟିକା
ଯଥା ଭକ୍ତି ତଥା ସିଦ୍ଧି ଜାୟତେ ନାତ୍ର ସଂଶୟ ।

ଏହି ଶେଷ ଧାଡ଼ିଟି ଅତ୍ୟନ୍ତ ଚିତ୍ତାକର୍ଷକ । ''ଯେଉଁପରି ଭକ୍ତି ଠିକ୍ ସିଦ୍ଧି ମଧ୍ୟ ସେହିଭଳି'', ଏଥିରେ କୌଣସି ସନ୍ଦେହ ନାହିଁ ।

ଏ ପୀଠର ଦିବ୍ୟତା ଯେ ଏହା ଯେଉଁ ଯନ୍ତ୍ରକାରିକାରେ ମାହାତ୍ମ୍ୟ ପ୍ରକାଶ କରେ, ତାହା ସାକ୍ଷାତ୍ ନାରାୟଣଙ୍କର ପୀଠ ସହ ଏହାକୁ ସମକକ୍ଷ କରାଇ ଦେଇଛି । ମା' ପ୍ରାଣଶକ୍ତିର ଆଧାର ବା ପରମା ଶକ୍ତିମୟୀ ଅଟନ୍ତି । ସେ ଧ୍ୟାନ, ଧାରଣା, ସମାଧିର ଶ୍ରେଷ୍ଠ ସିଦ୍ଧି ଏବଂ ସିଦ୍ଧିଦାତ୍ରୀ ଅଟନ୍ତି ଏବଂ ଶଙ୍ଖକ୍ଷେତ୍ରର ଆରାଧ୍ୟ ପରମେଶ୍ୱର ଶ୍ରୀଜଗନ୍ନାଥଙ୍କର ପରମେଶ୍ୱରୀ ଅଟନ୍ତି । ପ୍ରାଚୀନ ତନ୍ତ୍ରରେ 'ବିମଳା ସହସ୍ରନାମ' ଅଛି ମାତ୍ର ଏହା ବିଲୁପ୍ତ ପ୍ରାୟ ତେଣୁ ବିମଳାଷ୍ଟକ ସହିତ ମା'ଙ୍କର ପଦବନ୍ଦନ କରୁଅଛୁ । ବିମଳା ପୀଠ ଉତ୍କଳର ଶାକ୍ତଭୂମି ମହାପୀଠ ସିଦ୍ଧଦାୟକ ତଥା ଭଗବତ୍ ଭକ୍ତି ପ୍ରଦାୟକ । ଉଡ୍ଡୀୟାନ ପୀଠେଶ୍ୱରୀ ଉଡ୍ରେଶୀ ମା' ବିମଳା ଓ ଉଡ୍ରେଶ୍ୱର ଶ୍ରୀଜଗନ୍ନାଥଙ୍କର ପାଦରେ ସମର୍ପଣ କରୁଅଛୁ । ସେ ସ୍କନ୍ଦପୁରାଣର ୪ର୍ଥ ସ୍କନ୍ଦରେ କୁହାଯାଇଛି ଯେ, ଯିଏ ଏହି ଅଷ୍ଟଶକ୍ତି ମଧ୍ୟରେ ପ୍ରଥମା ଶକ୍ତି ବିମଳାଙ୍କୁ ଦର୍ଶନ ଓ ବନ୍ଦନ କରେ, ସେ ସମସ୍ତ ପାପନାଶ ହୋଇ ଅଶ୍ୱମେଧ ଯଜ୍ଞ ଫଳ ପ୍ରାପ୍ତି କରେ ।

---

ଶ୍ରୀଜଗନ୍ନାଥ ସଂସ୍କୃତି ଗବେଷକ
ଜ୍ୟୋତିଷ ପ୍ରଜ୍ଞାନ
ସୁନ୍ଦରଗ୍ରାମ, କଟକ



# ସତ୍ୟ ଶାନ୍ତିର ସେ ଯୁଗପୁରୁଷ

**ରାଜକିଶୋର ସ୍ୱାଇଁ**

ଆମ ଦେଶ ଦେବଭୂମି ଭାରତ
ବାପୁ ହୋଇଥିଲେ ତା'କୋଳେ ଜାତ ।
ମୁକ୍ତ କରିବାକୁ ଜନମ ଭୂଇଁ
ଆସିଥିଲେ ସେ ଦେବଦୂତ ହୋଇ ।
ତପ ରୂପେ ବରିନେଲେ ମୁକ୍ତିକୁ
ଜପ କରିଥିଲେ ସଦା ସତ୍ୟକୁ ।
ଅହିଂସାକୁ କରିଥିଲେ ଭୂଷଣ
ଜାତ କଲା ଯା' ଜନ ଜାଗରଣ ।
କାମ ଦେଇଥିଲା ତାଙ୍କ କିମିଆଁ
ଜଳିଥିଲା 'ଭାରତଛାଡ଼' ନିଆଁ ।
ସବୁ ପ୍ରତୀକ୍ଷାର ଅନ୍ତ ଘଟାଇ
ବିଦେଶୀଙ୍କୁ ଦେଇଥିଲେ ହଟାଇ ।
ବୁହାଇଲେ ଭଗୀରଥ ବେଶରେ
ମୁକତିର ଗଙ୍ଗା ଆମ ଦେଶରେ ।
ଆନ ପାଇଁ ବଞ୍ଚି ଏ ଦୁନିଆଁରେ
ରହିଗଲେ ସେ ଜନମାନସରେ ।



ତାଙ୍କ ଦରଶନ ବିଚାରଧାରା
ଆଦୃତ ହୁଅଇ ଜଗତ ସାରା ।
ତାଙ୍କ ଲାଗି ଆର୍ଯ୍ୟ ଭୂମି ଭାରତ
ସାରା ବିଶ୍ୱରେ ହୋଇଛି ବିଦିତ ।
ଭୁଲିଗଲେ ଆମେ ତାଙ୍କର ନୀତି
ସମାଜର ହେବ ଯେ ଅଧୋଗତି ।
ତାଙ୍କ ନୀତିକୁ କରିଲେ ପାଳନ
ଦେବା ତାଙ୍କୁ ଆମେ ଶ୍ରେଷ୍ଠ ସମ୍ମାନ ।
ସତ୍ୟ ଶାନ୍ତିର ସେ ଯୁଗପୁରୁଷ
ସଭିଏଁ କରିବା ତାଙ୍କୁ ଆଦର୍ଶ ।
ପୃଥିବୀରେ ଶାନ୍ତି ପ୍ରତିଷ୍ଠା ପାଇଁ
'ଗାନ୍ଧୀବାଦ'କୁ ଛାଡ଼ି ପନ୍ଥା ନାହିଁ ।

ଅବସରପ୍ରାପ୍ତ ଉପ ଆରକ୍ଷୀ ଅଧୀକ୍ଷକ
ନୂଆପଡ଼ା, ନୂଆବଜାର, କଟକ-୭୫୩୦୦୪

# ପୁଣ୍ୟାତ୍ମା ଗୋପବନ୍ଧୁ

**ଅଜିତ କୁମାର ତ୍ରିପାଠୀ**

ପୁଣ୍ୟାତ୍ମା,ଉତ୍କଳ ମଣି ଆହେ ଗୋପବନ୍ଧୁ
ପବିତ୍ର ମାଟିର ଦାୟାଦ ଦରଦୀର ବନ୍ଧୁ
ଦୁଃଖୀ, ରଙ୍କୀ, ଦୀନ, ହୀନ ଦରିଦ୍ରର ଇନ୍ଦୁ
ଦୟାର୍ଦ୍ର, ହୃଦୟ, ଅପାର କରୁଣାର ସିନ୍ଧୁ ।
ଅଜାଡି ଦେଇଛ ଅଯାଚିତ ସ୍ନେହ କେତେ
ଅଲୋଡା ଅଖୋଜା ଅଭାବୀ ଜନତା ଯେତେ
ଜନ୍ମ ତୁମର ପୁରୀ ଜିଲ୍ଲାର ସୁଆଣ୍ଡୋ ଗ୍ରାମରେ
କୁଳୀନ ବ୍ରାହ୍ମଣ, ଶ୍ରେଷ୍ଠ, ଭଦ୍ର ପରିବାରେ ।



ଅଠରଶହ ସତସ୍ତରୀ ଅକ୍ଟୋବର ନଅ
ପିତା ଦଇତାରି, ମାତା ସ୍ୱର୍ଣ୍ଣମୟୀ ପୁଅ
ଆଜନ୍ମ ଦୁଃଖ, କଷ୍ଟ, ଯନ୍ତ୍ରଣା ଭୋଗ ଯା'ର
ମାତାଙ୍କ ବିୟୋଗେ ପିଉସୀ କମଳାଙ୍କର ।
ଶ୍ରଦ୍ଧା, ସ୍ନେହ, ପ୍ରେମ, ପ୍ରୀତି ପାଳି, ସେବା ପାଇ
ସଂସ୍କୃତି, ସଭ୍ୟତା, ଶିଷ୍ଟାଚାର ଶିକ୍ଷା ଦେଇ
ମହାନ୍ ବ୍ୟକ୍ତିତ୍ୱ, ନିଃସ୍ୱାର୍ଥ ସେବକ ପରି
ମର୍ତ୍ତ୍ୟରେ, ମନୁଷ୍ୟ, ଦେବଦୂତ ଅବତରି ।



ଉତ୍କଳ ମାଟିର ଗଉରବ ରକ୍ଷା କରି
ସ୍ୱାଭିମାନ, ସ୍ୱାଧୀନତା ପାଇଁ କାରା ବରି
ଶିକ୍ଷା, ସଂସ୍କାର, ସଂସ୍କୃତି, ନିଃସ୍ୱାର୍ଥ ସେବକ
ସାହିତ୍ୟ ସାଧକ, ପୁଣି ଆଦର୍ଶ ଶିକ୍ଷକ ।
ସତ୍ୟବାଦୀ ବନ ବିଦ୍ୟାଳୟ କରିଲେ ନିର୍ମାଣ
'ସମାଜ ପତ୍ରିକା' ହେଲା ମାନବ କଲ୍ୟାଣ
ସୃଜିଲ ଅନେକ ଗଳ୍ପ, ନିବନ୍ଧ, କବିତା
ସାବଲୀଳ ଭାଷା, ଓଡିଆ ଯା'ର ମମତା ।
ଧର୍ମପଦ, ଗୋମାହାତ୍ମ୍ୟ, କାରା କବିତା
ବନ୍ଦୀର ଆତ୍ମକଥା, ପୁଣି ଅବକାଶ ଚିନ୍ତା
ନଚିକେତା ଉପାଖ୍ୟାନ ବିବିଧ ରଚନା
ଶାନ୍ତି, ସଂହତି, ସମୃଦ୍ଧି, ସ୍ୱତନ୍ତ୍ର ଭାବନା ।
ସଂସାର ମଙ୍ଗଳ ପାଇଁ ତନ, ମନ, ଧନ ସହି
ନାନା ଦୁଃଖ,କଷ୍ଟ,ଯନ୍ତ୍ରଣା ଯେସନ

କୋଟିଏ ସନ୍ତାନ ସେବା,ପ୍ରତି ଚିନ୍ତା କରି
ଗୋଟିଏ ସନ୍ତାନ, ପତ୍ନୀ, ପ୍ରେମ ତ୍ୟାଗ କରି ।
ଉଣାଇଶ ଅଠାଇଶ ସତର ଜୁନ୍
ତିରୋଧାନ ତମସାରେ ଗଲ ମିଶି
ଶାନ୍ତିରେ ଶୋଇଲ ତୁମେ ଚିର ନିଦ୍ରା ବରି
ଶ୍ମଶାନ ଗ୍ରାସିଲା ନଶ୍ୱର ଶରୀର ଧରି ।
ସ୍ୱାର୍ଥ,ସୁଖ,ଶାନ୍ତି,ଲୋଭ କେବେ ଜାଗି ନାହିଁ
ସମସ୍ତ ଜୀବନ ସମର୍ପିଲ ଜାତି ପାଇଁ
ଆହେ ! ଗୋପବନ୍ଧୁ, ତୁମେ ଦରିଦ୍ରର ବନ୍ଧୁ
ତବ ଯଶ,କୀର୍ତ୍ତି ଅବିସ୍ମର ପୂର୍ଣ୍ଣ ଇନ୍ଦୁ ।

ଗ୍ରାମ/ପୋଷ୍ଟ - କୁଲାଡ଼, ଭଞ୍ଜଭୂମି
ଭଞ୍ଜନଗର, ଗଞ୍ଜାମ - ୭୬୧୧୩୧

# ମାଆ ନବଦୁର୍ଗେ ଅମ୍ବିକେ

ଉର୍ମିଳା ମିଶ୍ର

ମହିଷ ମର୍ଦ୍ଦିନୀ ପାପ ବିନାଶିନୀ
ଶକ୍ତି ପ୍ରଦାୟିନୀ ମାଆ
ଯିଏ ଯେଉଁଭାବେ ଡାକିଦେଲେ ମାଆ
ସେହି ଭାବେ ହେଉ ସାହା ।
ଭକତର ଦୁଃଖ ନ ସହି ପାରି ମା'
କୃପା ବାରି ଢାଳି ଦେଉ
ବିପଦେ ଆପଦେ ଜୀବନେ ମରଣେ
ପାଶେ ପାଶେ ରହିଥାଉ ।
ଜଗଦମ୍ବା ଯୋଗେଶ୍ୱରୀ ଯୋଗମାୟା
ପୂର୍ଣ୍ଣେଶ୍ୱରୀ ମହାମାୟୀ
ମହିଷାସୁରକୁ ବଧି ସ୍ୱର୍ଗେ ମର୍ତ୍ତ୍ୟେ
ଶାନ୍ତି ଦେଲ ଲୀଳାମୟୀ ।
ସିଂହବାହିନୀ କଳୁଷ ବିନାଶିନୀ
ନବଦୁର୍ଗା ତ୍ରିନୟନୀ
ପ୍ରଥମରେ ତୋର ନାମ ଶୈଳ ପୁତ୍ରୀ
ଦ୍ୱିତୀୟେ ବ୍ରହ୍ମଚାରିଣୀ ।



ତୃତୀୟରେ ତୋର ନାମ ଚନ୍ଦ୍ରଘଣ୍ଟା
ଚତୁର୍ଥେ ନାମ କୁଷ୍ମାଣ୍ଡା
ପଞ୍ଚମ ଦିନରେ ପୂଜା ପାଉ ମାଆ
ନାମ ତୋର ସ୍କନ୍ଦମାତା ।
ଷଷ୍ଠ ଦିନେ ତୋର ନାମ କାତ୍ୟାୟନୀ
ସପ୍ତମରେ କାଳରାତ୍ରୀ
ଅଷ୍ଟମରେ ତୋର ନାମ ମହାଗୌରୀ
ଅପରୂପ ତୋର ସୃଷ୍ଟି ।
ନବମରେ ତୋର ନାମ ସିଦ୍ଧିଦାତ୍ରୀ
ସର୍ବ ଅସ୍ତ୍ରେ ବିଭୂଷିତା
ଆସ ଆସ ନବଦୁର୍ଗେ ମା' ଅମ୍ବିକେ
ସର୍ବାର୍ଥେ ସର୍ବ ପୂଜିତା ।

ଆରାଧନା ପ୍ୟାଲେସ୍, ବି -୪୦୩
ନନ୍ଦନ ବିହାର, ପୋଷ୍ଟ - କିଟ୍ ସ୍କୋୟାର
ଥାନା - ଇନ୍‌ଫୋସିଟି, ଭୁବନେଶ୍ୱର - ୭୫୧୦୨୪



# ଶକ୍ତି ସ୍ୱରୂପିଣୀ ଜଗଜ୍ଜନନୀ

**ଜୟଶ୍ରୀ ପଟ୍ଟନାୟକ**

ଆମ ସଂସ୍କୃତିରେ ଶକ୍ତିପୂଜା ଖୁବ୍ ପ୍ରାଚୀନ । ଜୀବ ଓ ଜଡ ଜଗତର ପ୍ରତ୍ୟକ୍ଷ ଓ ପରୋକ୍ଷ ବିକାଶର ମୂଳଉତ୍ସ ହେଉଛି ଶକ୍ତି । ଶରତ ସମ୍ଭାର ନେଇ ଶାରଦୀୟ ଉତ୍ସବରେ, କାଶତଣ୍ଡିର ଚଅଁର ମଧ୍ୟରେ ଆକାଶର ଶୁଭ୍ର ମେଘମାଳାର ପଟୁଆରରେ, ଗଙ୍ଗଶିଉଳି ଫୁଲର ମହକରେ, ପ୍ରକୃତିର



ଶ୍ୟାମଳିମାରେ ପୃଥିବୀ ପୃଷ୍ଠକୁ ଓହ୍ଲାଇ ଆସନ୍ତି ମା' ଦୁର୍ଗା । ଭାରତରେ ଦୁର୍ଗାପୂଜା ଖୁବ୍ ପ୍ରାଚୀନ । ଭାରତୀୟ ଦର୍ଶନରେ ଆଦ୍ୟାଶକ୍ତି ପ୍ରକୃତି ରୂପିଣୀ । ମା' କହିଲେ ଜନ୍ମଦାତ୍ରୀ ଯିଏ ଜନ୍ମ ଦିଏ, ଲାଳନ ପାଳନ କରେ ଏବଂ ଆଉ ଜଣେ ମା' ହେଲେ ପରମ କଲ୍ୟାଣମୟୀ ମା' । ଯିଏ ଅମକୁ ବିପଦ ଆପଦରୁ ରକ୍ଷା କରନ୍ତି ତାଙ୍କର ଅପାର ଶକ୍ତି ବଳରେ । ମଣିଷ ଭିତରେ ଅଛି ଜୀବନୀ ଶକ୍ତି ମାନସିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଶକ୍ତି । ମଣିଷର ମାନସିକ ଶକ୍ତିର ମୂଳ ହେଲା ଇଚ୍ଛା ଶକ୍ତି । ଏହି ମାନସିକ ଶକ୍ତିରୁ ଆସେ ମଣିଷର କଳ୍ପନା, ଉଦ୍ଭାବନା ଓ ସୃଜନ ଶକ୍ତି । ଆଦ୍ୟାଶକ୍ତି ହିଁ ସବୁ ଶକ୍ତିର ଆଧାର । ସେ ସର୍ବଂସହା, ସର୍ବ ଶକ୍ତିମୟୀ, ସତ୍ ଚିତ ଆନନ୍ଦ ମୟୀ । ଆମ ସଂସ୍କୃତିରେ ଶକ୍ତି ଉପାସନାର ମହନୀୟ ପରମ୍ପରା ମାନବ ଜାତିର କ୍ରମ ବିକାଶର ପରିଚାୟକ । ନିଖିଳ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ପ୍ରଳୟର ମୂଳ ଉତ୍ସ ହେଉଛନ୍ତି ମାତୃରୂପୀ ଶକ୍ତି । ନାରୀ ଯେ ଏହି ତ୍ରିଶକ୍ତିର ଅଧିକାରିଣୀ ଏହା ଅତିମାନବ ଅନୁଭବ କରିଥିଲା । ତେଣୁ କୁହାଯାଏ ପ୍ରାଗୈତିହାସିକ ଯୁଗରୁ ଭାରତବର୍ଷରେ ମହାଦେବୀଙ୍କ ପୂଜାର ଅୟମାରମ୍ଭ । ଶିବଙ୍କୁ ପଶୁପତି ରୂପେ ଆଖ୍ୟା ଦେଇ ତାଙ୍କ ସହ ଆଦିମାତାଙ୍କ ପୂଜାର ଅୟମାରମ୍ଭ । ଭାରତୀୟ ସଂସ୍କୃତିରେ ମାତୃପୂଜାର ପରମ୍ପରା ଯୁଗ ଯୁଗ ଧରି ପ୍ରଚଳିତ । ମା' ହେଉଛନ୍ତି ବିଷ୍ଣୁଙ୍କର ମାୟା ଶକ୍ତି । ଭାରତୀୟ ସଂସ୍କୃତିରେ ଦେବ ପୂଜାଠାରୁ ଦେବୀ ପୂଜାର ପ୍ରାଧାନ୍ୟ ଅଧିକ । ପ୍ରାଚୀନ କାଳରୁ ଆମ ମୁନିଋଷିମାନେ ଆଦ୍ୟାଶକ୍ତି ପରଂବ୍ରହ୍ମ




ସ୍ୱରୂପିଣୀ ମହାମାୟା ଜଗଜ୍ଜନନୀଙ୍କ ଗୁରୁତ୍ୱ ଉପଲବଧି କରି ଶକ୍ତି ତତ୍ତ୍ୱର ଚିନ୍ତନ-ମନନ-ପୂଜନର ପରମ୍ପରା ପ୍ରତିଷ୍ଠିତ କରିଯାଇଛନ୍ତି ।

ଭାରତୀୟ ସଂସ୍କୃତିରେ ଶକ୍ତି ତିନି ଗୁଣ ଯଥା ସତ୍ତ୍ୱ, ରଜ ଓ ତମ । ରଜ ଗୁଣରେ ସୃଷ୍ଟି କରନ୍ତି, ସତ୍ୱ ଗୁଣରେ ସ୍ଥିତି କରନ୍ତି, ତମ ଗୁଣରେ ସଂହାର କରନ୍ତି । ଭାରତୀୟ ସଂସ୍କୃତିରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏ ତିନି ଦେବତା ଯଥାକ୍ରମେ ତିନିଶକ୍ତିର ବୀଜ ସ୍ୱରୂପ । ତେଣୁ ଶକ୍ତି କହିଲେ ଏହି ତ୍ରିଶକ୍ତିଙ୍କ ସମ୍ମିଳିତ ରୂପ ଦୁର୍ଗାଙ୍କୁ ହିଁ ବୁଝାଏ । ଶକ୍ତି ଅର୍ଥ ବଳ । ଦୁର୍ଗା ଶବ୍ଦ ଦୁଇଟି ବିଶିଷ୍ଟ । 'ଦୁ' କହିଲେ ପ୍ରଥମେ ଆସେ ଦ ଶବ୍ଦ, ଯାହାର ଅର୍ଥ ଦମନ, ଦମ୍ଭ, ଦଣ୍ଡ ଦକ୍ଷିଣା, ଦର୍ଶନ 'ଉ' କାର ଯୁକ୍ତ ହୋଇ ହୋଇଛି 'ଦୁ' ଯାହାର ଅର୍ଥ ଦୁରାଚାର ଦାରିଦ୍ର୍ୟ ଭଞ୍ଜନୀ । 'ର' ଅର୍ଥ ଅଗ୍ନିବୀଜ ଯାହା ଜଳାଇ ଶୁଦ୍ଧ କରେ । 'ଗ' ଅର୍ଥ ଗଙ୍ଗା, ପାପନାଶିନୀ, 'ଅ' ଅର୍ଥ ଅନ୍ୟାୟ, ଅତ୍ୟାଚାର, ଅଧର୍ମ, ସଂହାରକାରିଣୀ ଇତ୍ୟାଦି । ତେଣୁ ମା' ହେଲେ ଦୁର୍ଗତିନାଶିନୀ । ଦୁର୍ଗା ଏକାଧାରରେ ବ୍ରାହ୍ମଣୀ, ବୈଷ୍ଣବୀ ଓ ଶୈବୀ । ତେଣୁ ଦୁର୍ଗା ଉପାସନା ସାର୍ବଜନୀନ । ସେ ସର୍ବତ୍ର ଶକ୍ତି ରୂପରେ ଅଧିଷ୍ଠିତ ଓ ପୂଜିତ । ସେ ସର୍ବବ୍ୟାପୀ । ସେଥିପାଇଁ କୁହାଯାଇଛି-

ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋ ନମଃ ।

ପୁରାଣ, ବେଦ, ଉପନିଷଦମାନଙ୍କରେ ଏହି ମହାଶକ୍ତିଙ୍କ ଆବିର୍ଭାବ ଭିନ୍ନ ଭିନ୍ନ ରୂପ ନେଇଥାଏ । ଶିବ ପୁରାଣ ଅନୁସାରେ ଦକ୍ଷ ପ୍ରଜାପତି ଏକ ମହାଯଜ୍ଞର ଆୟୋଜନ କରି ସେଥିରେ ସମସ୍ତ ଦେବତା ମୁନି ଋଷି ଓ ରାଜା ମହାରାଜାମାନଙ୍କୁ ନିମନ୍ତ୍ରଣ କରିଥିଲେ ମଧ୍ୟ ନିଜର କନ୍ୟା ସତୀ ଓ ଜାମାତା ଦେବ ଦେବ ମହାଦେବଙ୍କୁ ଆମନ୍ତ୍ରଣ କରି ନଥିଲେ । ପିତାଙ୍କର ଏ ପ୍ରକାର କାର୍ଯ୍ୟଦ୍ୱାରା ଦୁଃଖରେ ମ୍ରିୟମାଣା ସତୀ ବିନା ନିମନ୍ତ୍ରଣରେ ଉକ୍ତ ଯଜ୍ଞସ୍ଥଳରେ ପହଂଚି ଶେଷରେ ନିଜ ପିତାଙ୍କ ଦ୍ୱାରା ଅପମାନିତ ହୋଇ ଏବଂ ପତିଙ୍କ ନିନ୍ଦା ଶ୍ରବଣ କରି ଉକ୍ତ ଯଜ୍ଞାନଳରେ ଆତ୍ମ ବିସର୍ଜନ କରିବା ନିମନ୍ତେ ବାଧ୍ୟ ହୋଇଥିଲେ । ସତୀଙ୍କର ଅର୍ଦ୍ଧଦଗ୍ଧ ଶରୀରକୁ ଧାରଣ କରି ଶିବ ପ୍ରଳୟ କାଳୀନ ତାଣ୍ଡବ ନୃତ୍ୟାରମ୍ଭ କରିଥିଲେ । ଶିବଙ୍କର ଏଭଳି ଉଦ୍ଦଣ୍ଡ ନୃତ୍ୟ ଦେଖି ଦେବତାମାନେ ପ୍ରମାଦ ଗଣିବା ସହିତ ସତୀଙ୍କ ପ୍ରତି ଶିବଙ୍କର ଆସକ୍ତି ମୋଚନ ନିମିତ୍ତ ବୈକୁଣ୍ଠ ନିବାସୀ ବିଷ୍ଣୁଙ୍କୁ ଆକୁଳ ନିବେଦନ କରିଥିଲେ । ସ୍ୱୟଂ ବିଷ୍ଣୁ ନିଜର ସୁଦର୍ଶନ ଚକ୍ର ଦ୍ୱାରା ସତୀଙ୍କ ଅଙ୍ଗକୁ ଖଣ୍ଡ ଖଣ୍ଡ କରିବା ଦ୍ୱାରା ୫୧ଟି ସ୍ଥାନରେ ସତୀଙ୍କ ଶରୀରାଂଶ ପଡ଼ିଥିଲା । ଯେଉଁ ଯେଉଁ ସ୍ଥାନରେ ପତିତ ହୋଇଥିଲା ତାହା ପରବର୍ତ୍ତୀ ସମୟରେ ଗୋଟିଏ ଗୋଟିଏ ଶାକ୍ତପୀଠ ରୂପେ ପରିଗଣିତ ହେଲା ।

ଏହିସବୁ ପୀଠରେ କେଉଁଠି ଦେବୀ ଦ୍ୱିଭୁଜା ତ କେଉଁଠି ଷଡ଼ଭୁଜା କେଉଁଠି ଦଶଭୁଜା ତ କେଉଁଠି ବାରଭୁଜ । କେଉଁଠି ଠାକୁରାଣୀ ପରମ ବୈଷ୍ଣବୀ ତ କେଉଁଠି କାତ୍ୟାୟନୀ । କେଉଁଠି ନରମୁଣ୍ଡ ମାଳିନୀ ଓ ଶବରୁଢ଼ା କେଉଁଠି ଷୋଡଶୀ ତ କେଉଁଠି ତ୍ରିପୁରା ସୁନ୍ଦରୀ । ନିରାକାର ପରଂବ୍ରହ୍ମ ଭଗବାନ ସୃଷ୍ଟି ସର୍ଜନା ପାଇଁ ଯୋଗଦ୍ୱାରା ନିଜକୁ ଏକ ସୁନ୍ଦର ଅର୍ଦ୍ଧ ନାରୀଶ୍ୱର କଲେ ଯା'ର ଦକ୍ଷିଣ ଅଙ୍ଗରେ ପୁରୁଷ ଓ ବାମାଙ୍ଗରେ ନାରୀ । ଏହି ପ୍ରକୃତି ହେଉଛନ୍ତି ମହାମାୟା, ସନାତନ ଶକ୍ତି ଜଗଜ୍ଜନନୀ ବା ସମଗ୍ର ସୃଷ୍ଟିର ମାତୃଶକ୍ତି । ଶ୍ରୀଜଗନ୍ନାଥଙ୍କୁ ଯେପରି ଆମେ ଦାରୁବ୍ରହ୍ମ କହୁ ସେହିପରି ଆଦିମାତା ମାହେଶ୍ୱରୀ ଉମାଦେବୀଙ୍କୁ ବ୍ରହ୍ମ ଭାବରେ ଉପାସନା କରାଯାଏ । ମାତୃକାୟା ଓ ମହାବିଦ୍ୟା ଶକ୍ତି ବ୍ରହ୍ମ ସହ ଯୁକ୍ତ ହୋଇ ସରସ୍ୱତୀ, ଶିବ ସହ ଯୁକ୍ତ ହୋଇ ଶିବ ଶକ୍ତି, ବିଷ୍ଣୁ ସହ ଲକ୍ଷ୍ମୀ ଭାବରେ ପରିଚିତ । ମାତୃଶକ୍ତି ସ୍ୱରୂପ ଦୃଷ୍ଟିରୁ ୪ ଭାଗରେ ବିଭକ୍ତ କରାଯାଇଛି । ୧) ମାହେଶ୍ୱରୀ ୨) ମହାକାଳୀ ୩) ମହାଲକ୍ଷ୍ମୀ ୪) ମହାସରସ୍ୱତୀ । ମାହେଶ୍ୱରୀ ଅନନ୍ତ ଶକ୍ତିର ପ୍ରତୀକ ଶିବଙ୍କର ଅସ୍ତିତ୍ୱ । ମହାକାଳୀ- ପୃଥିବୀ ଉପରେ ଯେମିତି ଅନ୍ଧାର, ଆଲୁଅ, ସୁଖ, ଦୁଃଖ, ଭଲ, ମନ୍ଦ ରହିଛି । ଆସୁରିକ ଶକ୍ତି ପ୍ରଭାବରେ ଯେତେବେଳେ ସଂସାରରେ ଅନ୍ୟାୟ, ଅନୀତି, ଅତ୍ୟାଚାର, ଭ୍ରଷ୍ଟାଚାର, ଦୁର୍ବଳ ଉପରେ



ସବଳର ଅତ୍ୟାଚାର ବଢ଼େ ସେତେବେଳେ ସଂସାରରେ ଦୁଷ୍କୃତି ବଢ଼ିଥାଏ । ଏହି ଦୁଷ୍କୃତିର ବିନାଶ ପାଇଁ ମହାଶକ୍ତି ମହାକାଳୀ ରୂପ ନେଇଥାନ୍ତି । ମହାଲକ୍ଷ୍ମୀ– ମହାଲକ୍ଷ୍ମୀ ସମଗ୍ର ପୃଥିବୀର ଧନ, ରୂପ, ବିଭବ, ଆନନ୍ଦର ଅଧିକାରିଣୀ ମହାଲକ୍ଷ୍ମୀ ସାତ୍ତ୍ୱିକ ଗୁଣ ସମ୍ପନ୍ନା । ମହା ସରସ୍ୱତୀ– ସମସ୍ତ କଳା, ସଙ୍ଗୀତ, ସାହିତ୍ୟ ଭିତରେ ମହା ସରସ୍ୱତୀ ହିଁ ବାକ୍‌ଦେବୀ ବା ଜ୍ଞାନର ଦେବୀ । ତେଣୁ ସଂସାରରେ ବିଶ୍ୱ ଜନନୀ ପ୍ରକୃତି ରୂପା ମାତୃଶକ୍ତିଙ୍କ ବ୍ୟତୀତ ଅନ୍ୟ କିଛି ନାହିଁ । ଜଗତଜନନୀ ମା' ସୃଷ୍ଟି, ସ୍ଥିତି, ଧ୍ୱଂସର କେନ୍ଦ୍ରବିନ୍ଦୁ । ସୃଷ୍ଟିର ଆଦ୍ୟକାଳରୁ ସେ କଲ୍ୟାଣମୟୀ, ବୀଣାଧାରିଣୀ ତାମସୀ ରୂପରେ ସର୍ବତ୍ର ଉପାସିତା ।

ମାର୍କଣ୍ଡେୟ ପୁରାଣ ଅନୁସାରେ ଦୁର୍ଗା ଶୁଦ୍ଧଚିତ୍ତ । ସେ ଶିବଙ୍କର ଶକ୍ତି, ବିଷ୍ଣୁଙ୍କର ମାୟା । ସେ ବୈଷ୍ଣବୀ, ସେ ଶଙ୍କରୀ । ସେ ସୃଷ୍ଟି, ସେ ପ୍ରଳୟକାରିଣୀ । ଉପନିଷଦ ଅନୁଯାୟୀ ସେ ବ୍ରହ୍ମ ସ୍ୱରୂପିଣୀ ଜଗତ ସୃଷ୍ଟିର ମୂଳ କାରଣ । ମାର୍କଣ୍ଡେୟ ପୁରାଣ ଅନୁସାରେ ଚେଦି ରାଜବଂଶର ରାଜା ସୁରଥ ଦୁର୍ଗାପୂଜା ଆରମ୍ଭ କରିଥିଲେ । ରାଜା ସୁରଥ ଓ ସମାଧି ବୈଶ୍ୟ ନିଜ ପରିବାରର ସଦସ୍ୟମାନଙ୍କ ଦ୍ୱାରା ବିତାଡିତ ହୋଇ ଅରଣ୍ୟଗାମୀ ହେଲେ । ଅରଣ୍ୟରେ ମେଧା ଋଷିଙ୍କ ପରାମର୍ଶ ଅନୁଯାୟୀ ମା' ଙ୍କ ଶରଣାପନ୍ନ ହୋଇ ଦୁର୍ଗାପୂଜା ଆରମ୍ଭ କଲେ । ଲଙ୍କାଧିପତି ତ୍ରି-ଭୁବନ ବିଜୟୀ ମହାପ୍ରତାପୀ ରାବଣଙ୍କୁ ବଧ କରିବା ପାଇଁ ରଘୁକୁଳ ତିଳକ ଭଗବାନ ଶ୍ରୀରାମଚନ୍ଦ୍ର ଶରତ କାଳରେ ଏହି ପୂଜା ଉତ୍ସବର ଆୟୋଜନ କରିଥିଲେ ବୋଲି ପୌରାଣିକ ଆଖ୍ୟାନ ରହିଛି । ସେ ମାତୃଶକ୍ତି କନକଦୁର୍ଗାଙ୍କ ସ୍ତୁତି କରି ରାବଣର ନିଧନ ଉଦ୍ଦେଶ୍ୟରେ ଲଙ୍କା ଅଭିମୁଖେ ଯାତ୍ରା କରିଥିବାରୁ ଏହି ବିଧିକୁ ଅକାଳବୋଧନୀ ବା ବିଜୟାଦଶମୀ କୁହାଯାଏ । ମହାଭାରତର ଭୀଷ୍ମ ପର୍ବରେ ଅର୍ଜ୍ଜୁନ ତାଙ୍କର ପ୍ରତିପକ୍ଷକୁ ପରାସ୍ତ କରିବା ପାଇଁ ଶକ୍ତିରୂପିଣୀ ମା' ଦୁର୍ଗାଙ୍କର ପୂଜା ଆରମ୍ଭ କରିଥିଲେ । ଦେବାସୁର ସମରରେ ମହିଷାସୁର ବିଜୟୀ ହବା ଫଳରେ ସମଗ୍ର ଅମରାବତୀ ମହିଷାର ଆୟତ୍ତାଧୀନ ହୋଇଥିଲା । ସମସ୍ତ ଦେବଗଣ ସ୍ୱର୍ଗପୁରୀରୁ ବିତାଡିତ ହୋଇ ଦେବ ଦେବ ମହାଦେବ ଓ ବିଷ୍ଣୁ ସମୀପରେ ଉପଗତ ହୁଅନ୍ତି । ମହିଷାସୁରର ଏତାଦୃଶ କାର୍ଯ୍ୟକଳାପ ଶ୍ରବଣ କରି ଯୋଗାଧିରାଜ ଶିବ ଓ ବିଷ୍ଣୁ ଏବଂ ମହେଶ୍ୱରଙ୍କ ପବିତ୍ର ଶରୀରରୁ ଉଗ୍ର ତେଜ ନିଃସୃତ ହୁଏ । ସମସ୍ତ ତେଜ ରଶ୍ମୀର ଏକୀଭୂତ ସତ୍ତା ହିଁ ମହୀୟସୀ ଦେବୀ ମା' ଦୁର୍ଗା । ତାଙ୍କ ଦ୍ୱାରା ମହିଷାସୁର ବିନାଶ ହେଲା । ତାହା ଥିଲା ଦୁର୍ଗା ବା ସମନ୍ୱିତ ଶକ୍ତି । କୌଣସି ଶତ୍ରୁର ମୁକାବଲା ପାଇଁ ୪ଟି ବୃହତ୍ ଶକ୍ତିକୁ ଏକତ୍ରିତ କରିବାକୁ ହୁଏ । ଗଣଶକ୍ତି, ଜ୍ଞାନଶକ୍ତି, କ୍ଷାତ୍ରଶକ୍ତି ଓ ଧନଶକ୍ତି । ସେମାନେ ହେଲେ ଗଣପତି, ସରସ୍ୱତୀ, ମହାଲକ୍ଷ୍ମୀ, କାର୍ତ୍ତିକେୟ ।

ଦେବୀ ଦୁର୍ଗମ ନାମକ ଅସୁରକୁ ବିନାଶ କରି ଦୁର୍ଗା ନାମ ଧାରଣ କରିଥିଲେ । ମହିଷାସୁରକୁ ମର୍ଦ୍ଦନ କରିଥିବାରୁ ମହିଷମର୍ଦ୍ଦିନୀ । ମାତୃ ରୂପେ ଜଗଦମ୍ବା, ବୃଦ୍ଧା ରୂପରେ ଜଗଦ୍ଧାତ୍ରୀ ସେ ଲୀଳାମୟୀ, ଚିନ୍ମୟୀ, ସଦ୍‌ଜନମୟୀ, ସଂହାରମୟୀ । ମହାଶକ୍ତି ଦୁର୍ଗା ସକଳ ସୃଷ୍ଟିର କର୍ତ୍ତ୍ରୀ । ସେ ଜ୍ଞାନଦାୟିନୀ ମହାସରସ୍ୱତୀ, ସେ ଐଶ୍ୱର୍ଯ୍ୟ ପ୍ରଦାୟିନୀ ମହାଲକ୍ଷ୍ମୀ, ସେ ଧ୍ୱଂସକାରିଣୀ ମହାକାଳୀ । ଏହି ତ୍ରିବିଧ ସଂରଚନାକୁ ଏକତ୍ର କରି ମହାଶକ୍ତି ସମଗ୍ର ବିଶ୍ୱରେ ବିଦ୍ୟମାନ । ଦୁର୍ଗାପୂଜା କେବଳ ଶକ୍ତିର ଉଦ୍‌ବୋଧନ ନୁହେଁ ନିଜ ଭିତରେ ନିହିତ ଥିବା ପରମ ଶକ୍ତିର ଆବାହନ ।

ଉପାସନାର ପ୍ରକୃତ ଅର୍ଥ ଅନ୍ତର୍ଚେତନାକୁ ବିକଶିତ କରିବା । ମାନବିକତା, ପାଶବିକତା ଦୁଇଟି ପ୍ରବୃତ୍ତି ମଣିଷର ଅନ୍ତରାଜ୍ୟରେ ବିରାଜମାନ । ମା' ଯୁଗେ ଯୁଗେ ହସ୍ତରେ ଚକ୍ର, ଗଦା, ଖଡ୍ଗ, ଢାଲ, ବାଣ ଓ ଧନୁ ଇତ୍ୟାଦି ଅସ୍ତ୍ର ଏବଂ ମୁକୁଟରେ ଚନ୍ଦ୍ରମାକୁ ଧାରଣ କରି ମଣିଷର ପାଶବିକତାକୁ ଦମନ କରି ଦିବ୍ୟ ରୂପରେ ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ଦେବୀଙ୍କ ଆବିର୍ଭାବ ଯୋଗୁଁ ଦୁଷ୍ଟଜନମାନେ ବିନାଶ ହେବା ସହ ସଚ୍ଛଜନମାନେ ସୃଷ୍ଟିରେ ବିହରଣ କରିବାକୁ ସମର୍ଥ ହୋଇଥାନ୍ତି । ଦୁର୍ଗାପୂଜା ବର୍ଷରେ ଦୁଇଟି ସମୟରେ ହୁଏ । ଗୋଟିଏ ବସନ୍ତ ଋତୁରେ ବାସନ୍ତିକ ଦୁର୍ଗାପୂଜା ଓ ଶରତରେ ହେଉଥିବା ପୂଜା ଶାରଦୀୟ । ଏହି ପୂଜା ଆଶ୍ୱିନ





କୃଷ୍ଣ ମୂଳାଷ୍ଟମୀରୁ ଆଶ୍ୱିନ ଶୁକ୍ଳ ମହାଷ୍ଟମୀ ପର୍ଯ୍ୟନ୍ତ ଷୋହଳ ଦିବସ ବ୍ୟାପୀ ପୂଜା ହୁଏ । ଏହାକୁ ମହାପାର୍ବଣ କୁହାଯାଏ । ଶ୍ରୀରାମଚନ୍ଦ୍ର ଶରତକାଳୀନ ଦୁର୍ଗାଦେବୀଙ୍କୁ ଉପାସନା କରିଥିବାର ଉଲ୍ଲେଖ ରହିଥିବାରୁ ଏହାକୁ ଅକାଳବୋଧନ ବା ବିଜୟା ଦଶମୀ କୁହାଯାଇଛି । ଶାରଦୀୟ ମହାପୂଜା ଅବସରରେ ମୃଣ୍ମୟୀ ମହିଷମର୍ଦ୍ଦିନୀ ଦୁର୍ଗା ବିଗ୍ରହଙ୍କ ପୂଜା ଉତ୍ସବ ସବୁଠାରେ ଆଶ୍ୱିନ ମାସ ଶୁକ୍ଳ ଷଷ୍ଠୀଠାରୁ ଦଶହରା ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ମାତ୍ର ପୀଠମାନଙ୍କରେ ଆର୍ଦ୍ରା ନକ୍ଷତ୍ରଯୁକ୍ତା ଆଶ୍ୱିନ କୃଷ୍ଣାଷ୍ଟମୀଠାରୁ ପୀଠ ଦେବୀଙ୍କର ମହାପୂଜା ଆରମ୍ଭ ହୋଇ ପୂର୍ବାଷାଢ଼ା ନକ୍ଷତ୍ର ଯୁକ୍ତା ଆଶ୍ୱିନ ଶୁକ୍ଳ ବିଜୟା ଦଶମୀରେ ବିଜୟୋତ୍ସବ ସଂପାଦିତ ହୋଇ ଦେବୀଙ୍କର ବିସର୍ଜନ ପ୍ରକ୍ରିୟା ମାଧ୍ୟମରେ ଷୋଡଷାହ ଦିବସ ବ୍ୟାପିନୀ ମହାପୂଜା ଉଦ୍‌ଯାପିତ ହୋଇଥାଏ । ହିନ୍ଦୁଧର୍ମରେ ଶକ୍ତିପୂଜାର ଆରାଧନା, ଉପାସନା ସଂସ୍କୃତିର ପ୍ରାରମ୍ଭରୁ ପ୍ରଚଳିତ । ଶାରଦୀୟ ଦୁର୍ଗାପୂଜା ଆମ ସଂସ୍କୃତିର ପ୍ରାଣ, ଭକ୍ତି ଓ ଶକ୍ତିର ଅପୂର୍ବ ଐକ୍ୟତାନ । ଭାରତର ଚତୁର୍ଦ୍ଦିଗରେ ଦେବୀଙ୍କର ପୀଠ ବିଦ୍ୟମାନ । ଉତ୍ତର ଭାରତରେ(ଜମ୍ମୁ କାଶ୍ମୀର), ବୈଷ୍ଣବୀ, ବୈଷ୍ଣୋଦେବୀ, ପୂର୍ବରେ ସର୍ବକାମ ବରପ୍ରଦା କାମାକ୍ଷା ଦେବୀ (ଆସାମ), ପଶ୍ଚିମରେ ଅମ୍ବାମାତା ଅମ୍ବିକା(ଗୁଜୁରାଟ), ଦକ୍ଷିଣରେ କନ୍ୟକା (କନ୍ୟାକୁମାରୀ) ପୀଠ ରହିଛି । ଶକ୍ତିକୁ ତ୍ୟାଗ କଲେ ଶିବ ଶବରେ ପରିଣତ ହୁଅନ୍ତି । ଶକ୍ତିଙ୍କ ଇଚ୍ଛାରେ ଏହି ଚରାଚର ବ୍ରହ୍ମାଣ୍ଡର ସୃଷ୍ଟି ସଂହାର ଓ ପାଳନ କାର୍ଯ୍ୟ ହୋଇଥାଏ । ବ୍ରହ୍ମ, ରୁଦ୍ର, ବିଷ୍ଣୁ, ଇନ୍ଦ୍ର, ଅଗ୍ନି, ସୂର୍ଯ୍ୟ, ବରୁଣ ଶକ୍ତିଯୁକ୍ତ ହୋଇ କାର୍ଯ୍ୟ କରନ୍ତି । ମହାଶକ୍ତିଙ୍କ ଯୋଗୁଁ ଜଗତ ତିଷ୍ଠି ରହିଛି । ଶକ୍ତିଙ୍କ ସାମାନ୍ୟ ବ୍ୟତିକ୍ରମରେ ସୁନାମୀ ବା ମହାବାତ୍ୟାର ତାଣ୍ଡବ, ଭୂକମ୍ପ, ଭୂସ୍ଖଳନ, ପ୍ରକୋପ, ଅଗ୍ନିର ଲେଲିହାନ ତେଜରେ ଜଳିଉଠେ ସଂସାର । ଦେବୀଙ୍କୁ ଯିଏ ଯାହା ପ୍ରାର୍ଥନା କରେ, ମାତା ରୂପରେ ଦେବୀ ଧର୍ମ, ଅର୍ଥ, କାମ, ମୋକ୍ଷାଦି ପ୍ରଦାନ କରିଥାନ୍ତି । ମନୁଷ୍ୟ ମନରେ ସତ୍ତ୍ୱ, ରଜ, ତମ, ଗୁଣକୁ ଆଶ୍ରୟ କରି ବିଭିନ୍ନ ପ୍ରକାର ବିକାର ସୃଷ୍ଟି ହୋଇଥାଏ । ସତ୍ତ୍ୱ ଗୁଣର ପ୍ରାଧାନ୍ୟରେ ଭଗବତ୍ ପ୍ରାପ୍ତିର ତୃଷ୍ଣା ବଢ଼େ । ରଜ ଗୁଣର ପ୍ରାଧାନ୍ୟରେ ଭଗବତ୍ ପ୍ରାପ୍ତିର ତୃଷ୍ଣା ବଢ଼େ ଏବଂ ତାମସିକ ଗୁଣର ପ୍ରାବଲ୍ୟରେ ଗର୍ବ, ହିଂସା, କାମ କ୍ରୋଧ, ବିଦ୍ୱେଷ ମନୁଷ୍ୟକୁ ଆସୁରୀ ପ୍ରକୃତି ପ୍ରବଣ କରିଦିଅନ୍ତି । ସେଗୁଡିକର ପ୍ରଭାବରେ ବିବେକ, ବୁଦ୍ଧି, ବିଚାର ଶକ୍ତି ପରାଜିତ ହୋଇ ପଶୁ ପ୍ରକୃତିର ଅଭିବୃଦ୍ଧି ଘଟେ । ଏହି ଆସୁରୀ ଗୁଣଗୁଡିକ ହିଁ ଶୁମ୍ଭ, ନିଶୁମ୍ଭ, ରକ୍ତବୀଜ, ମହିଷାସୁର ପରି ଜୀବନକୁ ଧ୍ୱସ୍ତ ବିଧ୍ୱସ୍ତ କରିଦିଅନ୍ତି । ତେଣୁ ପୂଜା ଉପାସନା ମାଧ୍ୟମରେ ମନକୁ ଏକାଗ୍ରତାରେ ରଖି ଏହିସବୁ କୁ ପ୍ରବୃତ୍ତିକୁ ମନରୁ ଦୂରେଇ ଦେବା ବିଧେୟ ।

ମାର୍ଫତ୍ - ଅରକ୍ଷିତ ପାଣିଗ୍ରାହୀ
୨୯୩/୬୦୦, ଆକ୍ସିସ ବ୍ୟାଙ୍କ୍ ଏଟିଏମ ପାଖ
ପୋଷ୍ଟ- ସୂର୍ଯ୍ୟନଗର
ଗଙ୍ଗନଗର ସ୍କୋୟାର, ୟୁନିଟ୍ - ୭
ଭୁବନେଶ୍ୱର- ୭୫୧୦୦୩







# ଧାମରାର ଅଧିଷ୍ଠାତ୍ରୀ ଦେବୀ ଧାମରାଈ

**ଶ୍ରୀନିବାସ ଆଚାର୍ଯ୍ୟ**

ବହୁ ପ୍ରାଚୀନ କାଳରୁ ଉତ୍କଳର ନଦୀ ଓ ସମୁଦ୍ରର ସଂଗମସ୍ଥଳୀରେ ଶକ୍ତିମାନେ (ଠାକୁରାଣୀ) ଭିନ୍ନ ଭିନ୍ନ ରୂପ, ଆକାର, ଆକୃତି ଓ ନାମ ଧାରଣ କରି ବୈଦିକ ରୀତିନୀତିରେ ଉପାସିତା । ପୁରୀର ଚିଲିକା ଓ ବଙ୍ଗୋପସାଗରର ସଂଗମସ୍ଥଳୀରେ ମା' ବାଲିହରଚଣ୍ଡୀ, ଚନ୍ଦ୍ରଭାଗାର କୁଶଭଦ୍ରା ଓ ବଙ୍ଗୋପସାଗର ସଂଗମସ୍ଥଳୀରେ ମା' ରାମଚଣ୍ଡୀ ପରି ବୈତରଣୀ ଓ ବଙ୍ଗୋପସାଗରର ସଂଗମସ୍ଥଳୀରେ ମା' ଧାମରାଈ ବିରାଜିତା । ଉତ୍କଳ ଶାକ୍ତ ପରମ୍ପରାରେ ଆଧାରିତ ମା' ଧାମରାଈ ଅଶେଷ ମାହାତ୍ମ୍ୟରେ ମହିମା ମଣ୍ଡିତ ହୋଇ ଓଡ଼ିଶା କାହିଁକି ସମଗ୍ର ଭାରତୀୟ ଆଧାତ୍ମିକ ଜଗତରେ ପ୍ରସିଦ୍ଧି ଲାଭ କରିଛନ୍ତି । ସେ ଯେ କେବଳ ଧାମରା ଅଧିବାସୀଙ୍କର ଦୁଃଖନାଶିନୀ ଅଧିଷ୍ଠାତ୍ରୀ ଦେବୀ ତାହା ନୁହେଁ, ସେ ଅଟନ୍ତି ସର୍ବଜନଙ୍କର ମଙ୍ଗଳଦାୟିନୀ । ଏପରି ପବିତ୍ର ପୀଠରେ ପ୍ରଚଣ୍ଡ ଶକ୍ତି ଅଧିକାରିଣୀ ମା' ଧାମରାଈ ଅନ୍ୟ କୌଣସି ପୀଠରେ ଦେଖିବା ବିରଳ ମାତ୍ର ।

ଏହି ଧାର୍ମିକ ପୀଠଟି ଅବିଭକ୍ତ ବାଲେଶ୍ୱର ଜିଲ୍ଲା ତଥା ଅଧୁନା ଭଦ୍ରକ ଜିଲ୍ଲାର ବନ୍ଦର ନଗରୀ ଚାନ୍ଦବାଲିଠାରୁ ଲଞ୍ଚ କିମ୍ବା ନୌକାରେ ଦକ୍ଷିଣ ଦିଗକୁ ୨୦ କି.ମି. ଗଲେ ପଡ଼ିଥାଏ । ଏହାର ପୂର୍ବ ଦିଗରେ ବଙ୍ଗୋପସାଗରର ଦିଗନ୍ତ ବିସ୍ତାରୀ ନୀଳ ଜଳରାଶି ଓ ପଶ୍ଚିମ ଦିଗରେ ଧାମରା ଓ ନରସିଂହପୁର ଗ୍ରାମର ଜନବସତି । ଅତୀତରେ ଏହା ବାଣିଜ୍ୟ



ବନ୍ଦର ଓ ମସ୍‌ନଗରୀଭାବେ ପ୍ରଶସ୍ତି ଲାଭ କରିଥିଲା । ଏହି ପୀଠକୁ ସଂଲଗ୍ନ କରି ରହିଅଛି ଚିରସ୍ରୋତା ଓ ପୁଣ୍ୟତୋୟା ବୈତରଣୀ ନଦୀ । ଯାହାର ଅନ୍ୟ ନାମ ''ଉତ୍କଳ ଗଙ୍ଗା'' । ଏହାଛଡ଼ା ଚିରହରିତ ସବୁଜବନାନୀ ''ଭିତର କନିକା''





ଓ ୨ କି.ମି. ବିଶିଷ୍ଟ ସୁବିସ୍ତୀର୍ଣ୍ଣ ତଳମାଳ ଗହୀର ପାଟବିଲ, ଯାହାର ଅନ୍ୟନାମ ''ସୀମାନ୍ତ ଉପକୂଳ'' । ଏହିସବୁ ପ୍ରାକୃତିକ ବିଭବ ମଝିରେ ରହିଅଛି ସୁଦୀର୍ଘ ନଦୀମୁହାଣ, ଯାହାର ନାମ ''କଳିଙ୍ଗ ପ୍ରବେଶ ପଥ'' । ଏହିପରି ଅପାସୋରା ପ୍ରାକୃତିକ ପରିବେଶ ମଧ୍ୟରେ କେଉଁ କାଳରୁ ଅଶେଷ ମହିମାଧାରୀ ମା' ଧାମରାଇ ଦେବୀ ବିରାଜିତା ହୋଇ, ମେଲାଇ ଦେଇଛି ତା'ର ଆଶୀର୍ବାଦ ପସରା ଶତ ଶତ ଶ୍ରଦ୍ଧାଳୁ ଭକ୍ତଜନଙ୍କର ଦର୍ଶନାଭିଳାଷରେ ।

ମା' ଧାମରାଈଙ୍କର ଆଦ୍ୟ ଆବିର୍ଭାବର ସମୟକାଳ ସଠିକ୍ ଜଣା ନଥିଲେ ମଧ୍ୟ ଲୋକାଚାରରେ ଜଣାଯାଏ ଯେ ଏକଦା ଜଣେ କେଉଟ ସମୁଦ୍ରରୁ ମାଛ ଧରିବା ଅବସରରେ ତା' ଜାଲରେ ୩/୪ ଫୁଟ ଲମ୍ବର ଦିବ୍ୟ ପ୍ରସ୍ତରରେ ନିର୍ମିତ ଏକ ଦେବୀ ମୂର୍ତ୍ତି ପଡ଼ିଥିଲା । ତାହାକୁ ଦେଖି କେଉଟର ମନରେ ଅତ୍ୟନ୍ତ ଆନନ୍ଦ ସହିତ ଆଶଙ୍କା ଓ ଉଦ୍‌ବେଗ ସୃଷ୍ଟି ହୋଇଥିଲା । ତାହାକୁ ସେ ଆଗ୍ରହ ସହିତ ଘରକୁ ଆଣିଥିଲା । ଘରେ କେଉଟୁଣୀ ତାହାକୁ ଦେଖି ଅତ୍ୟନ୍ତ ଖୁସି ହୋଇ ଗୃହଦେବୀରୂପେ ପୂଜା କରିଥିଲେ । ବିଧିର ବିଧାନ ପରି ଯାହାର କରୁଣା ଅଗଣିତ ଭକ୍ତଙ୍କ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ, ତାହା କିପରି ଜଣଙ୍କର ଗୃହଦେବୀ ରୂପେ ରହିଥାନ୍ତେ ? ତତ୍କାଳୀନ କନିକାର ରାଜାଙ୍କୁ ଦେବୀ ସ୍ୱପ୍ନାଦେଶ ମାଧ୍ୟମରେ କହିଲେ, ସମସ୍ତଙ୍କ ପାଇଁ ମୁଁ ଧରାପୃଷ୍ଠରେ ଆବିର୍ଭାବ ହୋଇଅଛି । ତେଣୁ ମତେ ସର୍ବସାଧାରଣଙ୍କ ଦର୍ଶନ ପାଇଁ ଏକ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରି ପୂଜା ଅର୍ଚ୍ଚନାର ବ୍ୟବସ୍ଥା କର । କିନ୍ତୁ ମୋର ଦୈନନ୍ଦିନ ପୂଜା ରୀତିନୀତି ସେହି କେଉଟୁଣୀ କରିବ । ରାଜା ତାଙ୍କ ପାଇଁ ଧାମରା ମୁହାଣଠାରେ ଏକ ମନ୍ଦିର ନିର୍ମାଣ କରି ତାଙ୍କର ସମସ୍ତ ପ୍ରକାର ପୂଜାର ବ୍ୟବସ୍ଥା ଖଞ୍ଜି ଥିଲେ ।

ଅନ୍ୟ ଏକ ଐତିହାସିକ କିମ୍ବଦନ୍ତୀରୁ ଜଣାଯାଏ ଧନେଶ୍ୱର ବଣିକ ପାଟଣମଙ୍ଗଳାଙ୍କୁ ସିଂହଳରୁ ଆଣିବା ଅବସରରେ ବୈତରଣୀ ନଦୀ ଗର୍ଭରୁ ପଥରରେ ନିର୍ମିତ ଏକ ଦେବୀ ମୂର୍ତ୍ତି ପାଇଥିଲେ । ସେହି ମୂର୍ତ୍ତିକୁ ସେ ବୈତରଣୀ ନଦୀ ମୁହାଣ ବା ଧାମରାଠାରେ ପ୍ରତିଷ୍ଠା କରିଥିଲେ । କାଳକ୍ରମେ ସେହି ମୂର୍ତ୍ତି ଧାମରାଈ ରୂପେ ପରିଚିତା ହେଲେ । ତାହାଙ୍କୁ ପୂଜା କରିବା ପାଇଁ ଜଣେ କେଉଟୁଣୀଙ୍କୁ ଖଞ୍ଜା କରିଥିଲେ । ଏଥିସହ ସେ ସେହି କେଉଟୁଣୀଙ୍କୁ କିଛି ସୁନା ଦେଇଥିଲେ । ସେ ଯେଉଁ ସ୍ଥାନରେ କେଉଟୁଣୀଙ୍କୁ ସୁନା ଅର୍ପଣ କରିଥିଲେ, ସେହି ସ୍ଥାନଟି ''ସୁନା ଦରିଆ'' ନାମରେ ସୁବିଦିତ । ଆଜି ପର୍ଯ୍ୟନ୍ତ ସେହି ସ୍ଥାନକୁ ସୁନା ଦରିଆ ରୂପେ ଲୋକମାନେ ଡାକୁଛନ୍ତି । ତତ୍ପରେ ନାବିକ ଧନେଶ୍ୱର ମନ୍ତେଇ ନଦୀରେ ଆସି ନରସିଂହପୁରଠାରେ ପାଟଣମଙ୍ଗଳାଙ୍କୁ ବା ଲଙ୍କେଶ୍ୱରୀଙ୍କୁ ପ୍ରତିଷ୍ଠା କରିଥିଲେ ।

ଅନ୍ୟଗୋଟିଏ ଲୋକାଚାରରୁ ଜଣାଯାଏ ବହୁବର୍ଷ ଧରି ଦେବୀ ଧାମରାଈ ବୈତରଣୀ ନଦୀ ଗର୍ଭରେ ଲୁଚି ରହିଥିଲେ । କେତେକାଳ ପରେ ସେ ଜଣେ ଧୀବରଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ ସମସ୍ତ ବିଷୟ କହିବାରୁ ଧୀବରଟି ତାଙ୍କୁ ପାଣି ଭିତରୁ ଆଣି ଧାମରା ଗ୍ରାମ ମୁଣ୍ଡରେ ଏକ ଚାଳଘରେ ବିରାଜିତା କରାଇ ସମସ୍ତ ପୂଜା ପଦ୍ଧତି ବ୍ୟବସ୍ଥା କରିଥିଲେ । ଅନ୍ୟ କେହି କେହ କୁହନ୍ତି ଏକଦା ଗୋଟିଏ ନିଖୋଜ ଧୀବରକୁ ଖୋଜିବା ପାଇଁ ଅନ୍ୟ ସବୁ ଧୀବର ଭାଇମାନେ ସମୁଦ୍ର ଗର୍ଭରେ ଖୋଜିବା ଅବସରରେ ପଥରରେ ନିର୍ମିତ ଗୋଟିଏ ଦିବ୍ୟ ମୂର୍ତ୍ତିଟିଏ ପାଇଲେ । ତାହାକୁ ଧାମରା ଗ୍ରାମରେ ପ୍ରତିଷ୍ଠା କରାଇ ଗ୍ରାମ୍ୟଦେବୀ ରୂପେ ପୂଜା କରିଥିଲେ । କିନ୍ତୁ ଦେବୀ ସ୍ୱପ୍ନାଦେଶ ମାଧ୍ୟମରେ ସୂଚନା ଦେଲେ ମୋତେ ନିଖୋଜ ଥିବା ଧୀବରର ବିଧବା ପତ୍ନୀ ପୂଜା କରିବେ । ସେହି ଦିନଠାରୁ ମା'ଦେବୀଙ୍କୁ ବିଧବା ସ୍ତ୍ରୀଲୋକମାନେ ପୂଜା ଅର୍ଚ୍ଚନା କରିଆସୁଛନ୍ତି । ଧାମରାଈଙ୍କ ପରି ଓଡ଼ିଶାର ଅନ୍ୟ କେତୋଟି ମନ୍ଦିରରେ ଅନ୍ୟ ସମ୍ପ୍ରଦାୟର ସେବକମାନେ ପୂଜା ଅର୍ଚ୍ଚନା କରିଆସୁଛନ୍ତି । ଯଥା ରାଜନଗରର ମାଟିଆ ମଙ୍ଗଳାଙ୍କୁ ରାଉଳ, ସାତଭାୟାର ପଞ୍ଚବରାହୀଙ୍କୁ କୈବର୍ତ୍ତ, ବାସୁଦେବପୁରର ଆଙ୍କୁଡ଼ାଶୁଣୀଙ୍କୁ ଭଣ୍ଡାରୀ, କେଉଁ ପୀଠରେ ଶବର ତ କେଉଁ ପୀଠରେ ଆଦିବାସୀ ସମ୍ପ୍ରଦାୟର ସେବକମାନେ ପୂଜା କାର୍ଯ୍ୟ କରିଥାନ୍ତି । ଏହିସବୁ ସମ୍ପ୍ରଦାୟ ତା'ର ସମନ୍ୱୟ ଏକ ଅଭିନବ ଲୋକ ସଂସ୍କୃତି ।



ପ୍ରଥମେ ଦେବୀ ଏକ ଛୋଟ ମାଟିଘରେ ପୂଜା ପାଉଥିଲେ । କନିକା ରାଜାଙ୍କ ଦ୍ୱାରା ନିର୍ମିତ ଏକ କୋଠାଘରେ ବହୁଦିନ ଧରି ପୂଜା ପାଉଥିଲେ । ସମୟଚକ୍ରରେ ସେହି ମନ୍ଦିରଟି ସମୁଦ୍ରର ଜଳରାଶିରେ ଲୀନ ହୋଇଗଲା । ୧୯୭୫ ମସିହାରେ ଭକ୍ତ ଓ ସ୍ଥାନୀୟ ବାସିନ୍ଦାଙ୍କ ସହଯୋଗରେ ଗୋଟିଏ ମନୋରମ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ନିର୍ମିତ ହୋଇ ଦେବୀ ପୂଜା ପାଉଛନ୍ତି । ଶକ୍ତିସ୍ୱରୂପା ମା' ଧାମରାଈଙ୍କର ଅତୀତର ସେହି ପରମ୍ପରା ଏବେ ମଧ୍ୟ ଲିଭି ନାହିଁ । ସେହି ଶବରୀ ସଂସ୍କୃତିରେ ଚତୁର୍ଭୁଜା ମା' ଧାମରାଈ ନିତ୍ୟ ଉପାସିତ ହେଉଛନ୍ତି ।

ଓଡ଼ିଶାର ଶାକ୍ତ ପରମ୍ପରା ରୀତିନୀତି ଅନୁସାରେ ମା' ଧାମରାଈଙ୍କ ନିକଟରେ ଦୈନିକ ଏବଂ ବାର୍ଷିକ ପୂଜା ଓ ଭୋଗ ହୋଇଥାଏ । ମା'ଙ୍କର ଦୈନନ୍ଦିନ ପ୍ରଧାନ ଭୋଗ ହେଉଛି ଉଖୁଡ଼ା । ତେଣୁ ଧାମରାଈ ଉଖୁଡ଼ା କହିଲେ ସାଧାରଣତଃ ମା' ଧାମରାଈଙ୍କ ଭୋଗ ବୋଲି ଜଣାଶୁଣା । ମକର ପର୍ବ ଧାମରାଈଙ୍କର ବଡ଼ ପର୍ବ । ମକର ପର୍ବ ଏକ କୃଷି ପର୍ବ । ଏହି ପର୍ବଟି ଫସଲ ଅମଳ ସମୟରେ ପଡୁଥିବାରୁ ନୂତନ ଫସଲର ଚାଉଳ ''ମକର ଚାଉଳ'' ରୂପେ ଏଠାରେ ଭୋଗ ହୋଇଥାଏ । ମକର ସଂକ୍ରାନ୍ତି ଦିନ ଏଠାରେ ସୂର୍ଯ୍ୟ ଉପାସନା କରାଯାଇଥାଏ । ଆଉ ମଧ୍ୟ କୌଣସି ନୂତନ କାର୍ଯ୍ୟର ଶୁଭାରମ୍ଭ ଏହି ଦିବସରେ କରାଯାଇଥାଏ । ତେଣୁ ଏହି ପବିତ୍ର ଦିନରେ ଶହ ଶହ କୃଷକ, ନାବିକ, ଧୀବର, ଛାତ୍ର ଓ ବ୍ୟବସାୟୀମାନେ ସମାଗମ ହୋଇ ଯେ ଯାହାର ଶୁଭଫଳ କାମନା କରିଥାନ୍ତି । ଏହି ପର୍ବ ଦୀର୍ଘ ୭ ଦିନ ଧରି ମହା ଆଡ଼ମ୍ବରପୂର୍ଣ୍ଣ ସମାରୋହରେ ପାଳିତ ହୋଇଥାଏ । ଧାମରାଈଙ୍କର ପ୍ରଧାନ ବିଶେଷତ୍ୱ ହେଲା- ସମସ୍ତ ଭକ୍ତ ନିଜ ନିଜର ମନସ୍କାମନା ପୂରଣ ପାଇଁ ଦେବୀଙ୍କ ମସ୍ତକରେ ଫୁଲ ଚଢ଼ାଇ ଓ ଗୁଆ ଥୋଇଥାନ୍ତି । ଯେଉଁ ଭକ୍ତର ଫୁଲଟି ମା'ଙ୍କ ମସ୍ତକରୁ ଖସିପଡ଼େ, ସେହି ଭକ୍ତର କାମନା ପୂର୍ଣ୍ଣ ହୁଏ ବୋଲି ବିଶ୍ୱାସ ରହିଅଛି । ଯାହାକି ବହୁତ କ୍ଷେତ୍ରରେ ଏହା ପ୍ରମାଣିତ ହୋଇଅଛି । କଳା ଶାଢି ଓ ସିନ୍ଦୂର ଧାମରାଈଙ୍କର ପ୍ରିୟ । ଏହି ଅଞ୍ଚଳର ଅଧିବାସୀମାନେ ନୂତନ ପନିପରିବା ଓ ଫଳ ଆଦି ଅମଳ ପରେ ଆଗ ଦେବୀଙ୍କୁ ଅର୍ପଣ କରିଥାନ୍ତି ।

ଏହି ପବିତ୍ର ସ୍ଥାନଟି ଖାଲି ଯେ ଶକ୍ତିପୀଠରୂପେ ପ୍ରସିଦ୍ଧି ଲାଭ କରିଛି ତାହା ନୁହେଁ, ଏହା ଗୋଟିଏ ବନ୍ଦର, ବାଣିଜ୍ୟସ୍ଥଳୀ, ମତ୍ସ୍ୟନଗରୀ ଓ ପର୍ଯ୍ୟଟନସ୍ଥଳୀରୂପେ ଓଡ଼ିଶା କାହିଁକି ସମଗ୍ର ଭାରତରେ ଖ୍ୟାତି ଅର୍ଜନ କରିଛି ଓ କରୁଥିବ ମଧ୍ୟ । ବହୁ ପ୍ରାଚୀନ କାଳରୁ ଏହା ଏକ ବାଣିଜ୍ୟ ବନ୍ଦର ରୂପେ ମୁଣ୍ଡ ଟେକିଅଛି । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରେ ଗ୍ରୀକ୍ ପର୍ଯ୍ୟଟକ ଟୋଲେମି କଳିଙ୍ଗର ୧୨ଟି ବନ୍ଦରର ନାମ ତାଙ୍କ ବିବରଣୀରେ ଉଲ୍ଲେଖ କରିଛନ୍ତି । ସେଥିମଧ୍ୟରୁ ଧାମରା ବନ୍ଦର ଅନ୍ୟତମ । ଆଉ ମଧ୍ୟ ସେ ''ଆଦାମସ୍'' ନାମକ ଏକ ବନ୍ଦର ଉଲ୍ଲେଖ କରିଛନ୍ତି । କେହି କେହି ଐତିହାସିକ, କବି, ଲେଖକ ଏହାକୁ ଧାମରା ବନ୍ଦର ବୋଲି କହିଛନ୍ତି । ଧାମରା ମୁହାଣ ପ୍ରାଚୀନ କଳିଙ୍ଗର ଦ୍ୱାର ଥିଲା ବୋଲି କୁହାଯାଏ । ଦିନ ଥିଲା, ଏହା କନିକା ରାଜ୍ୟର ମୁହାଣରୂପେ ଖ୍ୟାତି ଅର୍ଜନ କରିଥିଲା । ଗୋଟିଏ ସ୍ଥାନର ନାମ ସହିତ ସେହି ସ୍ଥାନର ପାରିପାର୍ଶ୍ୱର ପରିବେଶ ପ୍ରାୟ ଜଡ଼ିତ ଥାଏ । ଧାମରା ଶବ୍ଦଟି ଧାମ ଶବ୍ଦରୁ ଆସିଅଛି । ଯଥା ଧାମରୁ ଧାମରା ଓ ଧାମରାରୁ ଧାମରାଈ । ଧାମ ଶବ୍ଦର ଆକ୍ଷରିକ ଅର୍ଥ ବାସସ୍ଥାନ, ଦେବଭୂମି ବା ତୀର୍ଥସ୍ଥାନ । ପୁଣ୍ୟତୋୟା ବୈତରଣୀ ନଦୀ ''ଉତ୍କଳ ଗଙ୍ଗା''ରୂପେ ଖ୍ୟାତ । ଯେପରି ଗଙ୍ଗା ନଦୀର ତଟକୁ ଗଙ୍ଗାଧାମ ସେପରି ବୈତରଣୀ ନଦୀର ତଟକୁ ଏକ ଧାମ କୁହାଯାଏ । ସମ୍ଭବତଃ ବିରଜା ପୀଠକୁ ବିରଜା ଧାମ ଓ ଆରଡ଼ି ପୀଠକୁ ଆରଡ଼ି ଧାମ କୁହାଯାଉଥିବା ବେଳେ ଧାମରାଈ ପୀଠକୁ ଧାମରା ଧାମ କୁହାଯାଏ ।

ଅଷ୍ଟାଦଶ ଶତାବ୍ଦୀରେ ବାଲେଶ୍ୱର ଜିଲ୍ଲାରେ ଯେଉଁ କେତୋଟି ବନ୍ଦର ଗଢି ଉଠିଥିଲା ସେଥିମଧ୍ୟରୁ ଧାମରା ଥିଲା ମୁଖ୍ୟ ବନ୍ଦର । ପ୍ରାଚୀନ ଉତ୍କଳର ଏହି ବନ୍ଦର ଥିଲା ସମସ୍ତ ବନ୍ଦରର କେନ୍ଦ୍ରସ୍ଥଳୀ । ଉତ୍କଳର ବଣିକମାନେ ଏହି



ବନ୍ଦର ଦେଇ ପାଲଟଣା ବୋଇତ ମାଧ୍ୟମରେ ଦୂର ଦେଶ ଯଥା- ସିଂହଳ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି ଆଦି ଦେଶ ସହ ବାଣିଜ୍ୟ କରି ଦେଶକୁ ବିଭବଶାଳୀ କରି ପାରିଥିଲା । ଏଥିସହ କଳିଙ୍ଗର ବୀର ବଣିକମାନଙ୍କର ଦୁଃସାହସିକ ଜଳଯାତ୍ରା କଳିଙ୍ଗର ଗର୍ବ ଓ ଗୌରବର ଧ୍ୱଜା ବିଶ୍ୱ ଦରବାରରେ ଉତ୍ତୋଳନ କରିଥିଲା । ଦେବୀଙ୍କର ପ୍ରଧାନ ବିଶେଷତ୍ୱ ହେଉଛି ଜଳଯାତ୍ରା ସମୟରେ ପ୍ରତ୍ୟେକ ବଣିକ ଦେବୀଙ୍କୁ ଉପାସନା କରିଥାନ୍ତି ଓ ବିଦେଶରୁ ପ୍ରତ୍ୟାବର୍ତ୍ତନ କରିବା ଅବସରରେ ଏଠାରେ ଅଟକି ପୁନରାୟ ଉପାସନା କରିଥାନ୍ତି । ସେହିପରି ଶହ ଶହ ଧୀବର ଗଭୀର ସମୁଦ୍ର ଜଳରେ ମାଛ ଧରିବାକୁ ଗଲାବେଳେ ମା'ଙ୍କୁ ତାଙ୍କର ଜୀବନକୁ ସମର୍ପଣ କରି ନିଷ୍ଠାର ସହ ପ୍ରଣିପାତ କରି ଯାଇଥାନ୍ତି । ଦେବୀଙ୍କର ଅନ୍ୟ ଗୋଟିଏ ବିଶେଷତ୍ୱ ହେଲା ଯେଉଁ ନାବିକ ଓ ଧୀବର ସମୁଦ୍ର ମଝିରେ ଘୂର୍ଣ୍ଣିବାତ୍ୟା ଓ ଅନ୍ୟ କୌଣସି ବିପଦର ସମ୍ମୁଖୀନ ହେଲେ, ସେଠାରେ ସେ ଦେବୀଙ୍କୁ ସ୍ମରଣ କଲେ ସେହି ବିପଦରୁ ରକ୍ଷା ପାଇଥାଏ ବୋଲି କଥିତ ଅଛି । ସେ ହେଉଛନ୍ତି ସମୁଦ୍ର ଦୁହିତା । ତେଣୁ ସେ ହେଉଛନ୍ତି ପ୍ରତ୍ୟକ୍ଷ ଠାକୁରାଣୀ । ଆଉ ମଧ୍ୟ ତାଙ୍କୁ ଜଳଯାତ୍ରୀମାନଙ୍କର ରକ୍ଷାକବଚ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ସ୍ଥାନର ଉତ୍ତର ଦିଗରେ ଯେଉଁଠାରେ ବ୍ରାହ୍ମଣୀ ନଦୀ ବୈତରଣୀ ନଦୀରେ ମିଶିଅଛି, ସେଠାରେ ଏକ ଗଭୀର ଗଣ୍ଡ ସୃଷ୍ଟି ହୋଇଅଛି । ସେହି ଗଣ୍ଡର ନାମ ''ନଳିତା ପଟିଆ'' । ସେହିପରି ଯେଉଁଠାରେ ମନ୍ତେଇ ନଦୀ ବୈତରଣୀ ନଦୀରେ ମିଶିଅଛି, ସେଠାରେ ମଧ୍ୟ ଏକ ଗଣ୍ଡ ସୃଷ୍ଟି ହୋଇଅଛି । ସେହି ଗଣ୍ଡର ନାମ ''ସୁନା ଦରିଆ''। ଏହି ଗଣ୍ଡ ସହିତ ବୈତରଣୀ ନଦୀ ମୁହାଣରେ ବିଭିନ୍ନ ଜଳଚର ଜୀବ ଯଥା- କୁମ୍ଭୀର, କଇଞ୍ଛ, ମାଛ ଆଦି ପ୍ରଚୁର ଭାବରେ ଦେଖିବାକୁ ମିଳେ । ଏହି ପୀଠର ଦକ୍ଷିଣ ପଟେ ପଡ଼ିଥାଏ ''କାଳିଭଞ୍ଜଡ଼ିଆ'' ଟାପୁ ଓ ଏହାର ଅନତି ଦୂରରେ ''ଭିତରକନିକା'' ଅରଣ୍ୟ । ଏହା ଏକ ଅଭୟାରଣ୍ୟ ରୂପେ ପରିଚିତ । ଏଠାରେ ବହୁଳ ସଂଖ୍ୟାରେ ହିଂସ୍ରଜନ୍ତୁଠାରୁ ଆରମ୍ଭ କରି ସରୀସୃପ ଓ ପକ୍ଷୀମାନ ଦେଖାଯାଏ । ତେଣୁ ଏହି ସ୍ଥାନ ଯେତିକି ବିପଦସଂକୁଳ ସେତିକି ଆନନ୍ଦଦାୟକ ଓ ମନୋହର । ଧାମରା ଅଞ୍ଚଳର ଭୀମକାନ୍ତ ରୂପ, ନୈସର୍ଗିକ ଗରିମା, ଅପାସୋରା ପ୍ରାକୃତିକ ଦୃଶ୍ୟ ଏବଂ ଅତୀତର କଥା ଓ ଗାଥାକୁ ନେଇ ଓଡ଼ିଶାର ବହୁ କବି, ଲେଖକ ଓ ଭାବୁକ ସେମାନଙ୍କର ଲେଖନୀ ମାଧ୍ୟମରେ ବାସ୍ତବ ରୂପ ଚିତ୍ରଣ କରିଛନ୍ତି ।

ପ୍ରକୃତିରାଣୀର ସମୟଚକ୍ରରେ ଅତୀତର ସେହି ଧାମରା ପୀଠ ନୂତନ ଆଲୋକରେ ନିଜକୁ ସଜାଇବାରେ ସମର୍ଥ ହୋଇପାରିଛି । ଫଳରେ ଆଜି ଶହ ଶହ ଧାମରାଇ ପ୍ରେମୀ, ବଣିକ, ଧୀବର, କୃଷକ, ଛାତ୍ର, ପର୍ଯ୍ୟଟକ, କବି, ଲେଖକ ଓ ଦର୍ଶକମାନଙ୍କର ସମାବେଶ ହେବାର ଦୃଶ୍ୟ ସେହି ପୀଠର ମାହାତ୍ମ୍ୟ ଅଶେଷ ଗୁରୁତ୍ୱ ବହନ କରିପାରିଛି । ଯେଉଁ ସ୍ଥାନଟି ଅତ୍ୟନ୍ତ ଭୟଶଙ୍କୁଳ, ବିପଦଜନକ ଓ ଜନଶୂନ୍ୟ ଥିଲା, ଆଜି ସେଠାରେ ବହୁଳ ବିପଣୀମାଳର ସମାରୋହରେ ଗୋଟିଏ ଛୋଟ ସହରଭାବେ ହସି ଉଠିଛି । ଯାହା ସବୁ ହୋଇଛି ତାହା କେବଳ ମା' ଧାମରାଇ ଦେବୀଙ୍କର କରୁଣା । ସର୍ବଶେଷରେ ଶକ୍ତି ସ୍ୱରୂପିଣୀ ମା'ଧାମରାଇ ସମଗ୍ର ମାନବଜାତିକୁ କରୁଣା ବିତରଣ କରି ସୁଖ, ଶାନ୍ତି ଓ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣରେ ରଖିଥାନ୍ତୁ, ଏତିକି ତାଙ୍କ ଚରଣାରବିନ୍ଦରେ ବିନମ୍ର ପ୍ରାର୍ଥନା ।

ପ୍ଲଟ୍ ନଂ ୭୮୫/୧୨୪୦
ଦୁର୍ଗାମାଧବ ନଗର, ଲେନ୍ ନଂ -୮
ଶ୍ୟାମପୁର, ଭୁବନେଶ୍ୱର





# ଘଟଗାଁ ବାସିନୀ ମା' ତାରିଣୀ

ମଧୁମିତା ମହାନ୍ତି

ଅଜେୟ କାଞ୍ଚି- ଅଭେଦ୍ୟ ଦୁର୍ଗ-କଳା ମୁଗୁନି ପଥରରେ ନିର୍ମିତ ବହୁ ପ୍ରସ୍ଥ ବିଶିଷ୍ଟ କାନ୍ଥ ସବୁ ରାତିର କଜଳ କଳା ଅନ୍ଧାରରେ ସତେଯେମିତି ନିଜର ଅସ୍ତିତ୍ୱ ହଜାଇ ବସିଛନ୍ତି । ଦୁର୍ଗର ଚତୁର୍ଦ୍ଦିଗରେ ପୁଣି ପାଞ୍ଚକୋଶ ବ୍ୟାପୀ ଘଞ୍ଚ ଅରଣ୍ୟ ଘେରି ରହିଛି, ଯାହାକୁ ଅତିକ୍ରମ କରିବା ଶତ୍ରୁ ପାଇଁ ଅସମ୍ଭବ ହୋଇପଡ଼େ । ଦୁର୍ଗ ଚାରିପାର୍ଶ୍ୱରେ ପୁଣି ସୁଗଭୀର ପ୍ରଶସ୍ତ ଗଡ଼ଖାଇ- ଯାହା କୁମ୍ଭୀର, ମଗର ଆଦି ଜଳଚର ପ୍ରାଣୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ରହିଛି । ପାର୍ବତ୍ୟ ଘାଟିଗୁଡ଼ିକରେ କାଞ୍ଚିର ଗରିଲାବାହିନୀ ଲୁଚି ବସିଥାନ୍ତି ଶତ୍ରୁକୁ ସମୂଳେ ବିନାଶ କରିବା ପାଇଁ ।

ଉତ୍କଳର ଗଜପତି ପୁରୁଷୋତ୍ତମ ଦେବ ସିନା କାଞ୍ଚି ଆକ୍ରମଣ କଲେ ହେଲେ ସେନାପତି ଗୋବିନ୍ଦ ଭଞ୍ଜଙ୍କ ସଶସ୍ତ୍ର ସେନା ଯେତେ ଅସ୍ତ୍ର ନିକ୍ଷେପ କରନ୍ତି ସବୁ ଯାଇ ଦୁର୍ଗର ପଥର ବକ୍ଷରେ ବାଜି ଭାଙ୍ଗିରୁଜି ଯାଏ । କାଞ୍ଚିର ଆରାଧ୍ୟ ଦେବତା ଶ୍ରୀ ଗଣପତି- ଏ ପଟରେ ଗଜପତିଙ୍କୁ ସାହାଯ୍ୟ କରିବା ପାଇଁ ଶ୍ରୀବଳଦେବ ଏବଂ ଶ୍ରୀଜଗନ୍ନାଥ ରାଉତ ରୂପରେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ।

ଭୟଙ୍କର ଯୁଦ୍ଧକ୍ଷେତ୍ର- ମୁମୂର୍ଷୁ ଯୋଦ୍ଧାମାନଙ୍କର ଆର୍ତ୍ତ ଚିତ୍କାର - ବିଧବାମାନଙ୍କର କ୍ରନ୍ଦନ ରୋଳ, ଶ୍ୱାନ, ଶୃଗାଳ, ଗଜ, ଅଶ୍ୱମାନଙ୍କର କର୍କଶ ରାବରେ ରାତ୍ରୀ ବି ଆତଙ୍କିତ । ଅର୍ଦ୍ଧରାତ୍ରୀରେ ବି ସେନାପତି ଗୋବିନ୍ଦ ଭଞ୍ଜ ଚିନ୍ତିତ ହେଇ ବୁଲୁଛନ୍ତି - କାଞ୍ଚି ପରାଜୟ କେମିତି ସମ୍ଭବ? ସତରେ ସମ୍ଭବ ହେବ ନା ଅସମ୍ଭବ? କାଞ୍ଚି କ'ଣ ଏମିତି ଅଜେୟ ହୋଇ ରହିଯିବ? ଯଦି ରହିବ ତେବେ ଗଜପତିଙ୍କର ସମ୍ମାନ ତଳିତଳାନ୍ତ ହୋଇ ଯିବନି ?

ହଠାତ୍ ନାରୀ କଣ୍ଠର ଏକ ବିକଳ କ୍ରନ୍ଦନ ଧ୍ୱନି ତାଙ୍କୁ ଦୋହଲାଇ ଦେଲା । ଅତି ନିକଟରୁ ଆସୁଥିଲା ସେ ସ୍ୱର । ଗୋବିନ୍ଦ ଭଞ୍ଜ ତତ୍‌କ୍ଷଣାତ୍ ସେଠି ଉପନୀତ ହେଇ କାନ୍ଦିବାର କାରଣ ପଚାରିଲେ । କ୍ରନ୍ଦନରତା ନାରୀମୂର୍ତ୍ତି ଉତ୍ତର ଦେଲା, ''ମୁଁ କାଞ୍ଚି ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ତାରିଣୀ । ସତ୍ୟ ଯୁଗରେ ଦକ୍ଷଯଜ୍ଞ ସମୟରେ ମୁଁ ଆବିର୍ଭୂତ ହେଇଥିଲି । ସ୍ୱାମୀଙ୍କର ଅପମାନ ସହି ନ ପାରି ଦକ୍ଷ କନ୍ୟା ସତୀ ଯଜ୍ଞକୁଣ୍ଡକୁ ଡେଇଁପଡ଼ି ଆତ୍ମହତ୍ୟା କରିବାର ସମ୍ବାଦ ପାଇ ଭଗବାନ ଆଶୁତୋଷ ଭୟଙ୍କର ରୂପ ଧାରଣ କଲେ । ଯଜ୍ଞସ୍ଥଳରେ ପ୍ରଳୟ କରି ସତୀଙ୍କର ମୃତପିଣ୍ଡ ଧରି ତାଣ୍ଡବ ନୃତ୍ୟ କଲେ । ସୃଷ୍ଟି ଧ୍ୱଂସ ହେବା ଭୟରେ ଦେବଗଣ ଆତଙ୍କିତ ହେଲେ । ବିଷ୍ଣୁ ସୁଦର୍ଶନ ଚକ୍ର ପଠେଇ ସତୀଙ୍କର ଶରୀରକୁ ଖଣ୍ଡ ଖଣ୍ଡ କରି କାଟିଦେଲେ - ତାଙ୍କ ଶରୀରର ସେହି ଖଣ୍ଡ ଖଣ୍ଡ ଅଂଶ ଯେଉଁ ଯେଉଁ ସ୍ଥାନରେ ପଡ଼ିଲା ସେଇ ସ୍ଥାନରେ ଦେବୀପୀଠମାନ ସୃଷ୍ଟି ହେଲା । ବକ୍ଷଦେଶ ପଡ଼ିଥିବା କ୍ଷେତ୍ର ତାରିଣୀ ପୀଠ ଭାବେ ଖ୍ୟାତ ହେଲା । ଦେବୀ ପୁରାଣରେ ଏକଥାର ବର୍ଣ୍ଣନା ଅଛି । ପୁଣ୍ୟତୋୟା ବୈତରଣୀ ନଦୀ କୂଳସ୍ଥ ଘଞ୍ଚ ବନଦେଶ ମୋର ଆଦ୍ୟ ବାସସ୍ଥଳୀ ।

ତ୍ରେତୟା ଯୁଗରେ ମୁଁ ଦେବୀ ଲଙ୍କେଶ୍ୱରୀ ନାମରେ ପ୍ରସିଦ୍ଧ ଥିଲି । ରାବଣ ନିଜେ ମୋତେ ମାତା ରୂପେ ବରଣ କରି ଲଙ୍କାଗଡ଼ର ଅଧିଷ୍ଠାତ୍ରୀ ଦେବୀ ରୂପେ ରଖି ପୂଜା



କରୁଥିଲା । ଦେବୀ ସୀତାଙ୍କ ଠାବ କରିବା ପାଇଁ ହନୁମାନ ଲଙ୍କାଗଡ଼ରେ ପ୍ରବେଶ କରି ଛଦ୍ମ ରୂପରେ ଭ୍ରମଣ କରୁଥିଲେ । ମୁଁ ତାଙ୍କୁ ଚିହ୍ନିପାରି ବାଧା ଦେଲି । କ୍ରୋଧିତ ହେଇ ସେ ମୋତେ ଏକ ବ୍ରହ୍ମଚାପୁଡ଼ା ଦେଲେ । ଭୟ ବଶତଃ ମୁଁ ଲଙ୍କାରୁ ପଳେଇ ଆସିଲି ।

ଦ୍ୱାପର ଯୁଗରେ ମୁଁ ହେଲି ବିଜୁଳି କନ୍ୟା । କଂସ ମୋତେ କଚାଡ଼ି ମାରିବା ବେଳେ ଦୈବୀ ଶକ୍ତି ବଳରେ ତା' ହାତରୁ ଖସି ଆସିଲି । ତା' ପରେ ଏଇ କାଞ୍ଚିରେ ମୁଁ ପୂଜା ପାଉଛି ।

କାଞ୍ଚି ରାଜ୍ୟକୁ ଜୟ କରିବା ଏକ ପ୍ରକାର ଅସମ୍ଭବ । କାରଣ ଏହାର ସୁରକ୍ଷା ଭାର ସ୍ୱୟଂ ନିଜ କାନ୍ଧକୁ ଟେକି ନେଇଛନ୍ତି ପ୍ରଭୁ ଗଣପତି । ଅନ୍ୟ ପକ୍ଷରେ ଗଜପତିଙ୍କର ମାନ ରକ୍ଷା ପାଇଁ କାଳିଆ ଓ ଧଳିଆ ଦୁଇ ଭାଇ ବି ଯୋଦ୍ଧା ବେଶରେ ଏଠି ଉପସ୍ଥିତ । ବିଶ୍ୱବ୍ରହ୍ମାଣ୍ଡର ପାଳନ କର୍ତ୍ତା ଯାହା ସପକ୍ଷରେ ଦଣ୍ଡାୟମାନ - ବିଜୟ ତ ସେଇ ପକ୍ଷରେ ରହିବ, ଏଥିରେ ସନ୍ଦେହ କାହିଁ?

କାଞ୍ଚିର ପତନ ତ ନିଶ୍ଚିତ - ସେ କଥା ଭାବି ମୁଁ ମ୍ରିୟମାଣ - ମୁଁ କେଉଁଠାରେ ଆଶ୍ରୟ ନେବି?'

ଉଦାସ ଦେବୀ ପ୍ରଶ୍ନ କଲେ, ''ଶକ୍ତିଶାଳୀ କେନ୍ଦୁଝର ରାଜ୍ୟର ତୁମେ ଯୁବରାଜ । ମୋତେ ତୁମ ରାଜ୍ୟରେ ଆଶ୍ରୟ ଦେଇ ପାରିବ କି ?''

ନତମସ୍ତକ ନରେଶ ଗୋବିନ୍ଦ ଭଞ୍ଜ, ''ମା', ମା' ଲୋ - ତୋ ସେବାର ସୁଯୋଗ ପାଇଲେ ଏ ଅଧମ ନିଜକୁ ଧନ୍ୟ ମନେ କରିବ ।''

ଦେବୀ ସ୍ମିତହାସ୍ୟ ସହିତ କହିଲେ ''ତଥାସ୍ତୁ ।''

ଦେବୀ କାଞ୍ଚି ରାଜ୍ୟ ପତନର ସୂତ୍ର ବତେଇ ଦେଲେ । ଅତ୍ୟନ୍ତ ଗୋପନ ସେ ରହସ୍ୟ-ଗୋବିନ୍ଦ ଭଞ୍ଜ, ଶିବିରକୁ ଫେରିଲେ ଏବଂ ଯୁଦ୍ଧ ପ୍ରସ୍ତୁତିରେ ଲାଗିପଡ଼ିଲେ ।

କାଞ୍ଚିରାଜ୍ୟର ପତନ ହେଲା ।

ଗଜପତି ପୁରୁଷୋତ୍ତମ ଦେବ ବିଜୟ ପରେ ମା' ତାରିଣୀଙ୍କୁ ପୂଜାରେ ସନ୍ତୁଷ୍ଟ କରି ପୁରୀକୁ ଆଣିଥିଲେ । ପୁରୀରୁ କେନ୍ଦୁଝର ନରେଶ ଗୋବିନ୍ଦ ଭଞ୍ଜ ମା'ଙ୍କୁ ତାଙ୍କ ରାଜ୍ୟକୁ ଆଣିଥିଲେ ।

ଦେବୀଙ୍କ ଆରାଧନା ପରେ ରାଜା ଯୋଡ଼ ହସ୍ତରେ କହିଲେ, ''ମା', ମୋ ରାଜ୍ୟକୁ ଚାଲ ମା' ।''

ଦେବୀ କହିଲେ ''ଚାଲ, ରାସ୍ତା ଦେଖେଇ ଦେଖେଇ ତୁ ମୋ ଆଗେ ଆଗେ ଚାଲ । ମୁଁ ତୋର ଅନୁଗାମିନୀ ହେବି । କିନ୍ତୁ-ଖବରଦାର- ମୋ ନୂପୁରର ଝୁମ୍‌ଝୁମ୍ ଶବ୍ଦ ଶୁଣି ତୁ ଆଗକୁ ଚାଲିବୁ । ଯୋଉଠି ପଛକୁ ଚାହିଁବୁ - ସେଇଠି ମୁଁ ରହିଯିବି ।''

ଅଶ୍ୱାରୋହୀ ରାଜା ଆଗେ ଆଗେ ଚାଲିଲେ । ପଛରେ ରୁଣୁଝୁଣୁ ଶବ୍ଦ ସହିତ ଦେବୀ- ଘଞ୍ଚ ଅରଣ୍ୟ, ଦୁର୍ଗମ ପଥ । ହଠାତ୍ ନୂପୁର ଶବ୍ଦ ଆଉ ଶୁଣାଗଲା ନାହିଁ । ରାଜା କାରଣ ଖୋଜିବା ପାଇଁ ପଛକୁ ଚାହିଁ ଦେଲେ ।

ଦେବୀ ହସିଲେ, କହିଲେ, ''ମୁଁ ଏଇଠି ରହିବି । ଭାରି ସୁନ୍ଦର ଏ ପ୍ରାକୃତିକ ପରିବେଶ ।'' ରାଜା ନତମସ୍ତକ ହେଇ ଏ ଆଦେଶ ଗ୍ରହଣ କଲେ । କୁହାଯାଏ, ଘଞ୍ଚ ପର୍ବତରେ ଗମନ କରୁଥିବା ସମୟରେ ଦେବୀ ରାଶି ତୈଳବୀଜ ପୁଷ୍ପର ଉତ୍କଟ ଗନ୍ଧ ସହି ନ ପାରି ଆଗକୁ ଅଗ୍ରସର ହେଲେ ନାହିଁ । ଦେବୀଙ୍କର ଆଜ୍ଞା ମାନି ରାଜା ଘଟଗାଁଠାରେ ମା'ଙ୍କୁ ସ୍ଥାପନା କଲେ ଏବଂ କନ୍ଧ ପୂଜକ ଦ୍ୱାରା ଶାବରୀ ମନ୍ତ୍ରରେ ପୂଜା ଆରାଧନା କରେଇଲେ । କନ୍ଧ ଦେହୁରୀ କାନ୍ଧରେ ଉପବୀତ ଧାରଣ କରି ଦେବୀଙ୍କର ପୂଜା କଲେ ।

କୁହାଯାଏ ଦେବୀ ଯେଉଁଠାରେ ଜ୍ୟୋତିର୍ମୟୀ ରୂପ ଧାରଣ କରି ସ୍ଥିର ହୋଇ ଯାଇଥିଲେ, ଯେଉଁଠାରୁ ରାଜା ତାଙ୍କର ନୂପୁର ନିକ୍ୱଣ ଶୁଣିପାରି ନ ଥିଲେ - ପୁଣି ଯେଉଁଠି ରାଜାଙ୍କର ଯୋଡ଼ହସ୍ତ ହୋଇ ଆଗକୁ ଯିବାକୁ ଅନୁନୟ ସତ୍ତ୍ୱେ ଦେବୀ କହିଥିଲେ, ''ହେ ରାଜା, ମୁଁ ଏହି ବନପ୍ରଦେଶରେ ରହିବାକୁ ଇଚ୍ଛା କରେ,'' ସେ ସ୍ଥାନ ଘଟଗାଁ ନୁହେଁ ଘଞ୍ଚ ଅରଣ୍ୟ ମଧ୍ୟରେ ସେ ପୀଠ ଏବେ ମଧ୍ୟ ଜନସାଧାରଣଙ୍କ ପାଇଁ ଅଗମ୍ୟ । କେତେକ କୁହନ୍ତି, ଏହା

ରେମାଳ ପ୍ରୋଜେକ୍ଟ ପାଖରେ ଥିବା ଶଗଡ଼ପେଟା ଗ୍ରାମ ମଧ୍ୟରେ ନିଘଞ୍ଚ ଅରଣ୍ୟ ମଧ୍ୟରେ ଥିବା ଦାନ୍ତୁଆଣି ପୀଠ । ସେଠି ଏ ପର୍ଯ୍ୟନ୍ତ ଠାକୁରାଣୀ ଅପୂଜା ହେଇ ରହିଛନ୍ତି । ସେଇଠୁ ଥାଇ ଦେବୀ ଯେଉଁ ଖଣ୍ଡା ଫୋପାଡ଼ି ଥିଲେ, ତାହା ଘଟଗାଁଠାରେ ପଡ଼ିଥିଲା । ତେଣୁ ଦେହୁରୀ ସେଇଠାରେ ଦେବୀଙ୍କର ପୂଜା ଆରମ୍ଭ କଲେ ।

ଦେବୀ ପୁରାଣରେ ସତୀଙ୍କର ସ୍ତନ ଯୁଗଳରୁ ତାରିଣୀ ଜନ୍ମ ହେଲେ ବୋଲି ବର୍ଣ୍ଣନା ହେଇଛି । ତାରାତାରିଣୀ, ସଙ୍କଟ ତାରିଣୀ, ବିପତ୍ତି ତାରିଣୀ, ବିଜୟ ତାରିଣୀ ଇତ୍ୟାଦି ମା'ଙ୍କର ଅନ୍ୟ ନାମ ।

ଦେଶ ସ୍ୱାଧୀନ ହେବା ସମୟରେ କେନ୍ଦୁଝର ରାଜା ସାହେବ ଯେଉଁ ୫୨ ଗୋଟି ଦେବଦେବୀ ମନ୍ଦିର ସରକାରଙ୍କ ହାତରେ ଟେକି ଦେଇଥିଲେ - ତାହା ମଧ୍ୟରେ ତାରିଣୀ ପୀଠ ଅନ୍ତର୍ଭୁକ୍ତ ନୁହେଁ । କାରଣ ଦେବୀ ଭଞ୍ଜବଂଶର ଅଧିଷ୍ଠାତ୍ରୀ ଦେବୀ - ଏଣୁ ରାଜା ଏହାକୁ ନିଜ ତତ୍ତ୍ୱାବଧାନରେ ରଖିଥିଲେ । ଏ ପୀଠର ପରିଚାଳନା ଦାୟିତ୍ୱ କାଞ୍ଚନଗରରୁ ଆସିଥିବା ଖଣ୍ଡାୟତ ପ୍ରବର ତରାଗ୍ରାମ ନିବାସୀ ଶ୍ରୀ ଭୀମସେନ ରାଉତଙ୍କ ବଂଶଧରମାନଙ୍କ ହାତରେ ନ୍ୟସ୍ତ ହେଇଥିଲା । ଓଡ଼ିଶା ସରକାର ଏହାର ପରିଚାଳନା ଦାୟିତ୍ୱ ହାତକୁ ନେଇଛନ୍ତି ।

ଯଦି ଗୋବିନ୍ଦ ଭଞ୍ଜ ଆଖ୍ୟାୟିକା ସତ୍ୟ ହୁଏ ତେବେ ସେଇ ଅନୁସାରେ ପଞ୍ଚଦଶ ଶତାବ୍ଦୀର ତୃତୀୟ ଭାଗରେ ଦେବୀ ତାରିଣୀ ଘଟଗାଁକୁ ଆସିଥିଲେ ବୋଲି ମନେହୁଏ । ମାତ୍ର ଶ୍ରୀ ଦାମୋଦର ଦ୍ୱିଜ ବିରଚିତ ''ବଣେଇ ମାଦଳା''ର ଚତୁର୍ଥ ଅଧ୍ୟାୟରେ ଉଲ୍ଲେଖ ଅଛି ଯେ ୧୦୭୧ ଖ୍ରୀଷ୍ଟାବ୍ଦରେ କାଦମ୍ବ ବଂଶର ରାଜା ଭୀରୁ ପୁରୀଠାରୁ ଯାତ୍ରାରମ୍ଭ କରି ସତର ଦିନ ଯାତ୍ରା କରି ଅଠରଦିନ ପାହାନ୍ତାକୁ ତାରିଣୀ ତୀର୍ଥରେ ପହଞ୍ଚିଲେ - ସାତଗୋଟି ନଡ଼ିଆ ପାଣିରେ ଦେବୀଙ୍କ ଅଭିଷେକ କଲେ - ମାଜଣା ପରେ ଭୋଗରାଗ ଦେଲେ । ଅର୍ଥାତ୍ ସେତେବେଳକୁ ତାରିଣୀ ପୀଠ ରହିଥିଲା ।

କୁହାଯାଏ ଯେ ବହୁ ପ୍ରାଚୀନ କାଳରୁ ତାରିଣୀ ଗୋନାସିକାର ବ୍ରହ୍ମେଶ୍ୱର ମନ୍ଦିର ବେଢ଼ା ଭିତରେ ତଥା କ୍ଷେତ୍ର ପ୍ରାୟ ସର୍ବତ୍ର ଗ୍ରାମଦେବୀ ଭାବରେ ପୂଜା ପାଇ ଆସୁଥିଲେ । ବ୍ରହ୍ମା ବ୍ରହ୍ମେଶ୍ୱର ଲିଙ୍ଗ ସ୍ଥାପନ କରିଥିଲେ ଅର୍ଥାତ୍ ପ୍ରାୟ ସେହି ସମୟରୁ ଦେବୀ ତାରିଣୀ ସେଠାରେ ପୂଜା ପାଇ ଆସୁଛନ୍ତି ।

ବଣେଇ ମାଦଳାର ବକ୍ତବ୍ୟ ଅନୁଯାୟୀ ଏକାଦଶ ଶତାବ୍ଦୀର ତୃତୀୟ ପାଦରେ ତାରିଣୀ ଦେବୀ କେନ୍ଦୁଝରର ଭଞ୍ଜ ବଂଶର ଇଷ୍ଟଦେବୀ ଭାବରେ ବିଖ୍ୟାତ ହେଇସାରିଥିଲେ ଏବଂ ସେତେବେଳେ ରାଜା ଜ୍ୟୋତି ଭଞ୍ଜଙ୍କ ପୁତ୍ର ଉଦୟ ଭଞ୍ଜ (ଖ୍ରୀ.୧୧୫୮ରୁ ଖ୍ରୀ. ୧୧୭୩) କେନ୍ଦୁଝର ଷ୍ଟେଟ୍‌ରେ ରାଜା ହେଇଥିଲେ ।

କିନ୍ତୁ କେନ୍ଦୁଝରର କିମ୍ବଦନ୍ତୀ କୁହେ ୧୪୭୫ ଖ୍ରୀ.ରେ ଗୋବିନ୍ଦ ଭଞ୍ଜ ମା'ଙ୍କୁ କାଞ୍ଚିରୁ ଆଣି ଘଟଗାଁରେ ସ୍ଥାପନ କରିଥିଲେ ।

ଘଟଗାଁଠାରେ ଖଣ୍ଡିଏ ବର୍ତ୍ତୁଳାକାର ପଥର ରୂପରେ ଦେବୀ ପୂଜା ପାଆନ୍ତି । କାରଣ ଶାବରୀ ସଂସ୍କୃତି ହେଉଚି ପ୍ରସ୍ତର ଯୁଗର ସଭ୍ୟତା ।

ଏକଥା ମଧ୍ୟ କୁହାଯାଏ ଯେ ରାଜାଙ୍କ ଦର୍ଶନ ସକାଶେ ଅରଣ୍ୟ ମଧ୍ୟରେ ଭିନ୍ନ ଏକ ମୂର୍ତ୍ତି ଅଛନ୍ତି କିନ୍ତୁ କେବଳ ରାଜା ଏବଂ ଦେହୁରୀ ବ୍ୟତୀତ ଏ ମୂର୍ତ୍ତି ଦର୍ଶନ କରିବାର ଅଧିକାର ଆଉ କାହାକୁ ପ୍ରାପ୍ତ ହୋଇନାହିଁ ।

ଋଷିକେଶ ଆଶ୍ରମର ପ୍ରତିଷ୍ଠାତା ସ୍ୱାମୀ ଶିବାନନ୍ଦ ଏକଦା ଘଟଗାଁ ପାଖ ରାସ୍ତା ଦେଇ ପୁରୀ ଅଭିମୁଖେ ଯାଉଥିଲେ । ସେଠି ମା'ଙ୍କର ପ୍ରତ୍ୟକ୍ଷ ଆବିର୍ଭାବର ପ୍ରମାଣ ପାଇ ସେ ଦେବୀଶାଳକୁ ଯାଇ ଦେବୀଙ୍କର ପୂଜାର୍ଚ୍ଚନା କରିଥିଲେ ।

ଅନନ୍ୟ ସେ ପୀଠ, ଯେଉଁଠି ମା' ପୂଜା ପାଏ କନ୍ଧ ଜାତିର ଦେହୁରୀ ପାଖରୁ । ଏଠି କନ୍ଧ ଦେହୁରୀ ପୂଜା କରେ । ଜାତିଭେଦର ଶିକୁଳି ଏଠି ନାହିଁ ।

**ସହାୟକ ଗ୍ରନ୍ଥ**

ଶ୍ରୀ ଭଞ୍ଜଭୂମି କେନ୍ଦୁଝରୀ- ଶ୍ରୀ ବିପିନ ବିହାରୀ ଦାସ ।

---

ଯୋଡ଼ା ମହିଳା ମହାବିଦ୍ୟାଳୟ
ବନେଇକଳା, ଯୋଡ଼ା, କେନ୍ଦୁଝର-୭୫୮୦୩୮




# ପଶ୍ଚିମ ଓଡ଼ିଶାର ଗଣପର୍ବ : ନୂଆଁଖାଇ

**ଡକ୍ଟର ସମୀର କୁମାର ନନ୍ଦ**

## ପଶ୍ଚିମ ଓଡ଼ିଶା

ଓଡିଶାର ଦଶଟି ଜିଲ୍ଲା ବରଗଡ, ବଲାଙ୍ଗିର, ବୌଦ୍ଧ, ଦେବଗଡ, ଝାରସୁଗୁଡା, କଳାହାଣ୍ଡି, ନୂଆପଡା, ସମ୍ବଲପୁର, ସୁନ୍ଦରଗଡ ଓ ସୋନପୁର ଇତ୍ୟାଦିକୁ ନେଇ ଗଠିତ ପଶ୍ଚିମ ଓଡିଶା । ଏହି ଅଞ୍ଚଳରେ ବସବାସ କରୁଥିବା ଲୋକମାନେ ସାଧାରଣତଃ କୃଷି ଉପରେ ନିର୍ଭର କରିଥାଆନ୍ତି ଏବଂ ଧାନ(ଅନ୍ନ) ହେଉଛି ଏ ଅଞ୍ଚଳର ମୁଖ୍ୟ ଉତ୍ପାଦକ ଦ୍ରବ୍ୟ । ଅନ୍ନକୁ ସମଗ୍ର ବିଶ୍ୱର ଜୀବନ ଧାରଣର ମୁଖ୍ୟ କେନ୍ଦ୍ର ବୋଲି ବିବେଚନା କରାଯାଏ ।

## ଐତିହାସିକ ପୃଷ୍ଠଭୂମି

ଲୋକକଥା ଅନୁସାରେ ତତ୍କାଳୀନ ପାଟଣା ରାଜ୍ୟର ପ୍ରଥମ ଚୌହାନ ରାଜା ରମାଇଦେବ ତାଙ୍କର ରାଜତ୍ୱ କାଳରେ ରାଜ୍ୟର ଏକ ପର୍ବ ହିସାବରେ ନୂଆଁଖାଇ ଆରମ୍ଭ ହୋଇଥିଲା । ଚୌହାନ ସାମ୍ରାଜ୍ୟକୁ ସୁଦୃଢ କରିବାରେ ପଶ୍ଚିମ ଓଡିଶାର କୃଷକ ଓ ଆଦିବାସୀମାନଙ୍କର ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି ରାଜା ରମାଇ ଦେବ ହୃଦୟଙ୍ଗମ କରିଥିଲେ । ତେଣୁ ଜନସାଧାରଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାଙ୍କର ବହୁ ପୁରାତନ ନୂଆଁଖାଇ ପର୍ବକୁ ଏବଂ ସେମାନଙ୍କ ଇଷ୍ଟଦେବୀ ସମଲାଇଙ୍କୁ ନିଜର ସାମ୍ରାଜ୍ୟର ସୁରକ୍ଷା ନିମନ୍ତେ ରାଜା ଗ୍ରହଣ କରି ନେଇଥିଲେ ।

ମଧ୍ୟଯୁଗର ପ୍ରାରମ୍ଭରେ, କୃଷିକାର୍ଯ୍ୟ ସମାପ୍ତ ହୋଇ ଅମଳ ସରିଗଲା ପରେ କୃଷକମାନେ ବର୍ଷର ଅନ୍ୟ ପର୍ବପର୍ବାଣି ସହିତ ନୂଆଁଖାଇକୁ ଏକ ନିର୍ଦ୍ଦିଷ୍ଟ ତିଥିରେ ପାଳନ କରି ନୂତନ ଶସ୍ୟ ସହିତ ଜୀବନର ଆରମ୍ଭ କରୁଥିଲେ । ପରବର୍ତ୍ତୀ ସମୟରେ ଅନେକ ନୂତନ ଗଡଜାତ ରାଜ୍ୟ ସ୍ଥାପନ ହେବା ଫଳରେ ନିଜ ନିଜ ରାଜ୍ୟରେ ରାଜାମାନେ ନିଜର ରାଜ ପୁରୋହିତଙ୍କ ସହିତ ପରାମର୍ଶ କରି ନୂଆଁଖାଇ ପର୍ବ ପାଳନ ନିମନ୍ତେ ଅଲଗା ଅଲଗା ତିଥି ପ୍ରସ୍ତୁତ କଲେ । ତେଣୁ, ଏହି ପର୍ବର କୌଣସି ଏକ ନିର୍ଦ୍ଦିଷ୍ଟ ତାରିଖ ନଥିଲା । ଯାହାହେଉ, ୧୯୯୧ ମସିହାରେ ଓଡିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକ ଏକ ଐତିହାସିକ ଆଦେଶ ପ୍ରଦାନ ପୂର୍ବକ ପ୍ରତ୍ୟେକ ବର୍ଷ ଗଣେଶ ପୂଜା ପରଦିନ ଅର୍ଥାତ୍ ଭାଦ୍ରବ ମାସ ଶୁକ୍ଲ ପକ୍ଷ ପଂଚମୀ ତିଥିକୁ ନୂଆଖାଇ ପର୍ବ ପାଳନ ନିମନ୍ତେ ସରକାରୀ ଛୁଟି ଭାବେ ଘୋଷଣା କଲେ । କେତେକ ଅଂଚଳରେ ଏହା ଦଶମୀ ତିଥିରେ ପାଳନ କରାଯାଏ ।

## ଲଗ୍ନଧାର୍ଯ୍ୟ

ଏହି ପର୍ବ ପାଳନ କରିବା ପାଇଁ ଏବଂ ତିଥି ଓ ଲଗ୍ନ ଧାର୍ଯ୍ୟ କରିବା ପାଇଁ ପ୍ରତ୍ୟେକ ବର୍ଷ ଜନ୍ମାଷ୍ଟମୀ ପର ଦିନ ବ୍ରାହ୍ମଣମାନଙ୍କ ବୈଠକ ବସିଥାଏ । ଚଳିତ ବର୍ଷ ମଧ୍ୟ ସମ୍ବଲପୁରସ୍ଥିତ ଆରଣ୍ୟକ ମଣ୍ଡପରେ ଅନୁଷ୍ଠିତ ବ୍ରହ୍ମ ମଣ୍ଡପ ପଣ୍ଡିତ ମହାସଭାର ବୈଠକରେ ପଶ୍ଚିମ ଓଡିଶାର ଏହି ମହାନ୍ ଗଣପର୍ବ ନୂଆଁଖାଇ ପାଇଁ ମହାଲଗ୍ନ ନିର୍ଦ୍ଧାରିତ ହୋଇଯାଇଛି । ଲଗ୍ନ ନିର୍ଦ୍ଧାରଣ ପରେ ବ୍ରହ୍ମପୁରା ମନ୍ଦିରର ମୁଖ୍ୟ ପୂଜକ ଏବଂ ଟ୍ରଷ୍ଟ କମିଟିର ସଦସ୍ୟଗଣ ମା' ସମଲେଶ୍ୱରୀ ମନ୍ଦିର ଯାଇ ମା'ଙ୍କର ଲଗ୍ନପତ୍ର ଅର୍ପଣ କରିଥିଲେ ।





### ପର୍ବପାଳନ

ଭଗବାନଙ୍କ ଉପସ୍ଥିତିକୁ ମଜଭୁତ କରିବା ଓ ବ୍ୟକ୍ତିବିଶେଷଙ୍କୁ ସମାଜରେ ବାନ୍ଧି ରଖିବାର ମାଧ୍ୟମ ହେଉଛି ପର୍ବପର୍ବାଣି । ଯେତେବେଳେ ପର୍ବପର୍ବାଣି କୃଷିଭିତ୍ତିକ ହୋଇଥାଏ ସେତେବେଳେ ଏହା ଆହୁରି ଉପଭୋଗ୍ୟ ହୋଇଯାଏ । ପଶ୍ଚିମ ଓଡିଶାର ଏମିତି ଏକ କୃଷିଭିତ୍ତିକ ପର୍ବ ହେଉଛି ନୂଆଁଖାଇ ।

ନୂଆଁଖାଇ ଏକ କୃଷିଭିତ୍ତିକ ପର୍ବ ହୋଇଥିଲା ବେଳେ ପଶ୍ଚିମ ଓଡିଶାର ଜନସାଧାରଣଙ୍କ ସଂସ୍କୃତି ଓ ସାମାଜିକ ଜୀବନ ଉପରେ ଏହାର ଅନେକ ପ୍ରଭାବ ଦେଖିବାକୁ ମିଳିଥାଏ । ଚାଷୀଭାଇ ବର୍ଷସାରାର ହାଡଭଙ୍ଗା ପରିଶ୍ରମ ପରେ ନିଜ କ୍ଷେତରେ ସୁନାର ଫସଲକୁ ଦେଖି ଖୁସି ହୋଇଯାଏ ଏବଂ ସେ ଏହାକୁ ପର୍ବ ଭାବେ ପାଳନ କରିବା ପାଇଁ ମନରେ ନିଶ୍ଚିତ କରି ନୂଆଖାଇ ତିଥିକୁ ଅନାଇ ରହିଥାଏ ।

ଏହି ପର୍ବକୁ ପାଳନ କରିବା ନିମନ୍ତେ ପରିବାରର ସଦସ୍ୟ ଯିଏ ଯେଉଁଠି ଥିଲେ ମଧ୍ୟ । ଏହି ସମୟରେ ସମସ୍ତେ ଏକତ୍ରିତ ହୁଅନ୍ତି । ସାରା ପୁରପଲ୍ଲୀ ହୋଇଉଠେ ଉତ୍ସବ ମୁଖର । ପଶ୍ଚିମ ଓଡିଶାର ପ୍ରତ୍ୟେକ ଜିଲ୍ଲାକୁ ଯାଉଥିବା ରେଳଗାଡି, ବସ୍ ଇତ୍ୟାଦିରେ ଅସମ୍ଭବ ଭିଡ ପରିଲକ୍ଷିତ ହୁଏ । ପର୍ବ ପାଳନ ଆଗରୁ ଘର ଦ୍ୱାର, ଅଗଣା ଏବଂ ଘରର ସମସ୍ତ ସାମଗ୍ରୀକୁ ପରିଷ୍କାର କରାଯାଏ । ଚିତା, ଝୋଟି ଓ ରଙ୍ଗୀନ ଚିତ୍ରରେ ନିଜ ଘରକୁ ବୋହୂ ବେଶରେ ସଜାଇ ଦିଅନ୍ତି । ସମସ୍ତଙ୍କ ପାଇଁ ନୂତନ ବସ୍ତ୍ର କିଣାଯାଏ । ନୂତନ ହାଣ୍ଡି, ମାଠିଆ, ବାଉଁଶ ନିର୍ମିତ କୁଲା, ଡାଲା ଇତ୍ୟାଦି ଯୋଗାଡ କରାଯାଏ । ନୂଆଁଖାଇ ପର୍ବ ପୂର୍ବଦିନ ଘରର ମୁରବି କ୍ଷେତକୁ ଯାଇ ଫୁଲ, କ୍ଷୀର, ଘିଅ ଓ ଅରୁଆ ଚାଉଳ ସହିତ ବିଶେଷ ପୂଜାର୍ଚ୍ଚନା ପରେ ନୂଆ ଶସ୍ୟ ସଂଗ୍ରହ କରି ଘରକୁ ଆଣନ୍ତି । କେତେକ ସ୍ଥାନରେ ଗ୍ରାମର ଝାଙ୍କର ଆସି ଘରେ ଘରେ ଏହି ଶସ୍ୟ ଦେଇଯାଆନ୍ତି । ଘରେ ପୂର୍ବରୁ ପ୍ରସ୍ତୁତ ଥିବା ବୟସ୍କା ମହିଳା ସଦସ୍ୟା ଏହି ଶସ୍ୟକୁ ବନ୍ଦାପନା କରି ଗ୍ରହଣ କରନ୍ତି । ନୂଆଁଖାଇ ପୂର୍ବଦିନ ଘରର ମହିଳାମାନେ ପିଠାପଣା ନିମନ୍ତେ ସମସ୍ତ ପ୍ରସ୍ତୁତି କରନ୍ତି । ଭିନ୍ନ ଭିନ୍ନ ସଂପ୍ରଦାୟ ନୂଆଁଖାଇ ନିମନ୍ତେ ବିଭିନ୍ନ ଗଛର ପତ୍ରକୁ ବ୍ୟବହାର କରନ୍ତି । ଉଦାହରଣ ସ୍ୱରୂପ, ବ୍ରାହ୍ମଣ ସଂପ୍ରଦାୟ ଶାଳ ଓ କଦଳୀ ପତ୍ରରେ ନୂଆ ଖାଉଥିଲା ବେଳେ ଆଉ କେତେକ ମହୁଲ ପତ୍ର ଓ ଅନ୍ୟମାନେ କୁରେଇଁ ପତ୍ରରେ ନୂଆ ଖାଇ ଥାଆନ୍ତି ।

ଏହି ପର୍ବପର୍ବାଣି ଅବସରରେ ଗାଈ ଓ ବଳଦମାନଙ୍କୁ ମଧ୍ୟ ବିଶେଷ ପ୍ରାଧାନ୍ୟ ଦିଆଯାଇଥାଏ । ଯେହେତୁ , କୃଷି କାର୍ଯ୍ୟରେ ଏହି ପ୍ରାଣୀମାନଙ୍କର ଅନେକ ଅବଦାନ ଥାଏ । ତେଣୁ, ନୂଆଁଖାଇ ଦିନ ସକାଳୁ ସେମାନଙ୍କୁ ଗାଧୋଇ ରାକ୍ଷୀ ପିନ୍ଧାଇ ପୂଜା କରାଯାଏ ଏବଂ ଏହିପରି ଭାବେ ସେମାନଙ୍କୁ କୃତଜ୍ଞତା ଅର୍ପଣ କରାଯାଏ ।

ଏହି ପୂଜା ପ୍ରଥମେ ନିଜ ନିଜ ଅଂଚଳର ଇଷ୍ଟଦେବୀ, ମନ୍ଦିର ଓ ପୀଠଗୁଡିକରେ ଥିବା ଦେବାଦେବୀଙ୍କୁ ଧାର୍ଯ୍ୟ ଲଗ୍ନ ସମୟରେ ଅର୍ପଣ କରାଯାଏ ଓ ତା'ପରେ ନିଜ ନିଜ ଘରେ ଠାକୁରଙ୍କୁ ଅର୍ପଣ କରାଯାଏ । ନୂଆଁଖାଇ ଦିନ ସକାଳେ ଘରର ମୁରବି ନିଜ ନିଜ କ୍ଷେତକୁ ଯାଇ ବସୁମାତାଙ୍କୁ ପୂଜା କରନ୍ତି । ଘରରର ଇଷ୍ଟଦେବୀଙ୍କୁ ନୂଆ ଚାଉଳରେ ପ୍ରସ୍ତୁତ କ୍ଷୀରି, ଖେଚୁଡି (ନବାନ୍ନ), ପିଠା, ତିଖିରି (ମୁଗରେ ତିଆରି ଏକ ପ୍ରକାର କ୍ଷିରୀ) ଓ ଅନ୍ୟାନ୍ୟ ଦ୍ରବ୍ୟ ଅର୍ପଣ କରାଯାଇ ପୂଜା କରାଯାଏ । ଘରର ମୁରବି ଉକ୍ତ ପ୍ରସାଦକୁ ସମସ୍ତଙ୍କୁ ବଣ୍ଟନ କରି ଦିଅନ୍ତି । ତା'ପରେ ଆରମ୍ଭ ହୁଏ ନୂଆଁଖାଇ ଜୁହାର(ମୁଣ୍ଡିଆ) ପର୍ବ । କନିଷ୍ଠମାନେ ଗୁରୁଜନମାନଙ୍କୁ ଜୁହାର କରି ଆଶୀର୍ବାଦ ଭିକ୍ଷା କରନ୍ତି ଓ ଗୁରୁଜନମାନେ କନିଷ୍ଠମାନଙ୍କ ମଙ୍ଗଳ କାମନା କରି ଆଶୀର୍ବାଦ ପ୍ରଦାନ କରିଥା'ନ୍ତି । ଏହାକୁ ନୂଆଁଖାଇ ଜୁହାର ଭେଟ କୁହାଯାଏ । ତା'ପରେ ସମସ୍ତେ ଏକାଠି ବସି ମଧ୍ୟାହ୍ନ ଭୋଜନ କରନ୍ତି ।

ଅପରାହ୍ନରେ ସମସ୍ତେ ମନ୍ଦିର ଯାଇ ଦର୍ଶନ କରିବା ସହିତ ସାହି ପଡିଶାରେ ଥିବା ଗୁରୁଜନମାନଙ୍କୁ ପ୍ରଣିପାତ ହୋଇ ଆସନ୍ତି । ଏହି ଅବସରରେ ସମସ୍ତ ପ୍ରକାର ଭେଦଭାବ, ତିକ୍ତତା, ମନାନ୍ତର ଓ ମତାନ୍ତରକୁ ଭୁଲି ସମସ୍ତେ ଏକ ହୋଇଯାଆନ୍ତି । ସାହି ପଡିଶାରେ ବିଭିନ୍ନ ପ୍ରକାରର ଖେଳର ଆସର ଜମେ । ତା' ସହିତ ଡାଲଖାଇ,



ରସରକେଲି, ମାଇଲାଜଡ, ଘମୁରା, ଚୁଟକୁଚୁଟା, ସାଜନୀ, ନଚନିଅ, ବଜନିଆ ଓ ବଜାଶାଳ ପରି ଅନେକ ଲୋକନୃତ୍ୟର ଆୟୋଜନ କରି ନୂଆଁଖାଇ ପର୍ବକୁ ସମସ୍ତେ ଆନନ୍ଦରେ ଉପଭୋଗ କରିଥାଆନ୍ତି ।

ଆଜିକାଲି ଏହି ପର୍ବ ପ୍ରବାସୀ ପଶ୍ଚିମ ଓଡିଶାର ବ୍ୟକ୍ତିବିଶେଷ ଯେଉଁମାନେ ନିଜ ନିଜ ଗ୍ରାମକୁ ଆସିପାରୁ ନାହାନ୍ତି, ସେମାନେ ଦିଲ୍ଲୀ, ମୁମ୍ବାଇ, ଚେନ୍ନାଇ ଓ କୋଲକାତା ସମେତ ଆମେରିକା, ବ୍ରିଟେନ ଇତ୍ୟାଦି ଦେଶରେ ମଧ୍ୟ ଆୟୋଜନ କରୁଛନ୍ତି । ଭୁବନେଶ୍ୱରରେ ମଧ୍ୟ ଏହି ଭେଟଘାଟ ପର୍ବ ବିଗତ ବହୁ ବର୍ଷ ହେଲା ପାଳନ ହେଉଛି ।

ଆଜିକାଲି ଯୌଥ ପରିବାର ପ୍ରଥାର ବିଘଟନ ଘଟୁଥିଲା ବେଳେ ନୂଆଁଖାଇ ପର୍ବ ଏହି ପ୍ରଥାକୁ ଅନେକାଂଶରେ ରୋକିବାରେ ସଫଳ ହୋଇପାରିଛି । ଏପରିକି ଆଧୁନିକ ଯୁଗରେ ବିଜ୍ଞାନର ବହୁଳ ଭାବରେ ଉନ୍ନତି ହୋଇଥିଲେ ମଧ୍ୟ ନୂଆଁଖାଇ ପର୍ବ ଉପରେ ଏହାର କିଛି ପ୍ରଭାବ ପଡି ପାରିନାହିଁ । ସମସ୍ତେ ତିକ୍ତତାକୁ ଭୁଲି ଗୋଟିଏ ଛାତ ତଳେ ରୁଣ୍ଡ ହୋଇ ଗୋଟିଏ ରୋଷେଇ କରି ନିଜେ ଭୋଜନ କରିବା ଓ ଅତିଥି ଅଭ୍ୟାଗତଙ୍କୁ ଆପ୍ୟାୟିତ କରିବା ଏହି ପର୍ବର ମହାନତା ଅଟେ । ପଶ୍ଚିମ ଓଡିଶାରେ ପାଳିତ ହେଉଥିବା ଅନେକ ପର୍ବ ଯଥା– ଭାଇ ଜୀଉନ୍ତିଆ, ପୁଅ ଜୀଉନ୍ତିଆ, ପୁଷପୁନୀ ଓ ଗୁଡିଁଖାଇ ପର୍ବ ପରି ନୂଆଁଖାଇ ମଧ୍ୟ ଏକ ପ୍ରସିଦ୍ଧ ପର୍ବ ଅଟେ । ଘରଠାରୁ ଦୂରରେ ରହୁଥିବା ପରିଜନମାନେ ଏହି ଅବସରରେ ଘରକୁ ଆସି ନ ପାରିଲେ ଦଶହରା ସମୟରେ ଏହି ପର୍ବକୁ କେତେକାଂଶରେ ପାଳନ କରାଯିବାର ଦେଖାଯାଏ । ଦେବଗଡ ଜିଲ୍ଲାରେ ପ୍ରାୟତଃ ଏହି ପର୍ବ ଦଶହରା ସମୟରେ ପାଳିତ ହୋଇଥାଏ ।

ନୂଆଁଖାଇ ପର୍ବ ପରିବାରକୁ ଏକତ୍ରୀକରଣ କରିବା ସଙ୍ଗେ ସଙ୍ଗେ ଗୋଟିଏ ଛାତ ତଳେ ବାନ୍ଧି ରଖିବା ପାଇଁ ପ୍ରୟାସ କରିଥାଏ । ଏହା ପରିବାରର ସଦସ୍ୟମାନଙ୍କ ମଧ୍ୟରେ ବହୁତଗୁଡିଏ ବିଷୟରେ ଆଲୋଚନା କରିବା ଓ ଭାବର ଆଦାନ ପ୍ରଦାନ କରିବା ପାଇଁ ସୁଯୋଗ ସୃଷ୍ଟି କରିଥାଏ । ଏହି ପର୍ବ ପାଳନ ଅବସରରେ ଘରର ଅନେକ ସମସ୍ୟାକୁ ସମାଧାନ କରାଯିବା ସହିତ ଯୁବକ ଯୁବତୀମାନଙ୍କ ବିବାହ ସଂପର୍କରେ ନିଷ୍ପତ୍ତି ନିଆଯାଇଥାଏ । ପରିବାରର କନିଷ୍ଠ ସଦସ୍ୟମାନେ ଏହି ସମୟରେ ସମସ୍ତଙ୍କୁ ଚିହ୍ନିବା ପାଇଁ ସୁଯୋଗ ପାଇବା ସହିତ ଏହି ପ୍ରଥା ସଂପର୍କରେ ଅବଗତ ହୋଇଥାଆନ୍ତି ।

ନୂଆଁଖାଇ ପରି ଏକ ପର୍ବକୁ ପାଳନ କରିବା ପାଇଁ ପଶ୍ଚିମ ଓଡିଶାର ଆବାଳ ବୃଦ୍ଧ ବନିତା ବର୍ଷସାରା ଅନାଇ ରହିଥାଆନ୍ତି । ଧନି ଗରିବ ନିର୍ବିଶେଷରେ ଏହି ପର୍ବ ପାଳନ କରିବାର ଉତ୍ସାହ ଦେଖିବାକୁ ମିଳିଥାଏ ।

**ଉପସଂହାର**

ନୂଆଁଖାଇ ହେଉଛି ଭାଇଚାରା ଓ ସଂହତିର ଗଣପର୍ବ । ଏକାଧାରରେ କହିବାକୁ ଗଲେ ଏହି ପର୍ବ ସମଗ୍ର ବିଶ୍ୱକୁ ଏକତାରେ ବାନ୍ଧି ରଖିବାର ବାର୍ତ୍ତା ଦେବା ସହିତ 'ବସୁଧୈବ କୁଟୁମ୍ବକମ୍' ନୀତିକୁ ପ୍ରତିପାଦିତ କରିଥାଏ ।

ପ୍ରୋଗ୍ରାମ ମ୍ୟାନେଜର
ଶ୍ରମ ଓ ରୋଜଗାର ମନ୍ତ୍ରାଳୟ
ଭାରତ ସରକାର
କଚେରୀ ସାହି, ଜିଲ୍ଲା– ଦେବଗଡ

**ତଥ୍ୟ**

*1) Sreemad Bhagbat Yathartha Geeta- Shree Parmhans Swami Adgadannda Ji.*

*2) Census of India.*

*3) Sambalpur Itihas- Shiba Prasad Dash.*

*4) Respective District Websites.*

*5) Chauhan Myth and Royal legitimation in Koshala-F.Deo.*

# ଭାରତୀୟ ସଂସ୍କୃତିର ମହାନ୍ ଗୁରୁ

**ଡକ୍ଟର ତ୍ରିନାଥ ପଟ୍ଟନାୟକ**

ଭାରତୀୟ ଶିକ୍ଷା ସଂସ୍କୃତିର ମହାନ୍ ବିଦ୍ୱାନ୍ ହେଉଛନ୍ତି ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ । ଯିଏକି ନିଜର ବିଦ୍ୱତା ଯୋଗ୍ୟତା ତଥା ବାକ୍‌ପଟୁତା କାରଣରୁ ସାରା ସଂସାରରେ ପ୍ରସିଦ୍ଧ । କେବଳ ସେତିକି ନୁହେଁ ଆଧୁନିକ ଯୁଗର ବିଶିଷ୍ଟ ଦାର୍ଶନିକମାନଙ୍କ ମଧ୍ୟରୁ ସେ ଜଣେ ପ୍ରଥମ ଧାଡ଼ିର ଦାର୍ଶନିକ । ୧୮୮୮ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ ମାଡ୍ରାସ୍ (ଚେନ୍ନାଇ) ନିକଟସ୍ଥ ତିରୁତ୍ତାନୀ ନାମକ ଗ୍ରାମରେ ଜନ୍ମଲାଭ କରିଥିଲେ । ପ୍ରଥମେ ସେ ପାଠଶାଳାରେ ତାମିଲ ଓ ସଂସ୍କୃତ ଅଧ୍ୟୟନ କରିଥିଲେ, କାଳାନ୍ତରରେ ସେ ଇଂରାଜୀ ସାହିତ୍ୟର ଗହନ ଅଧ୍ୟୟନ କରିଥିଲେ । କେବଳ ସେତିକି ନୁହେଁ ଖ୍ରୀଷ୍ଟିଆନ ମିଶନାରୀ ସ୍କୁଲରେ ପାଠ ପଢୁଥିବାରୁ ରାଧାକୃଷ୍ଣନ୍ ବାଇବେଲ୍‌ର ନ୍ୟୁ ଟେଷ୍ଟାମେଣ୍ଟକୁ ମଧ୍ୟ ଗଭୀର ଭାବେ ଅନୁଶୀଳନ କରିଥିଲେ । ସେତେବେଳେ ଇଂରାଜୀ ସ୍କୁଲମାନଙ୍କ ହିନ୍ଦୁଧର୍ମ ବିଷୟରେ ଆଲୋଚନା ହେଉ ନ ଥିଲା । ଏଣୁ ତାଙ୍କ ମନରେ ଅଭିମାନ ଆସିଲା, ସେ ସମୟ ପାଇଲେ ଭାରତୀୟ ସଂସ୍କୃତି ବିଷୟରେ ଅଧିକରୁ ଅଧିକ ଅଧ୍ୟୟନ କରିବାକୁ ଲାଗିଲେ ।



ସେ କୋଡ଼ିଏ ବର୍ଷ ବୟସରେ 'ବେଦାନ୍ତ ନୀତି' ଉପରେ ଗବେଷଣା କରି ଉପାଧି ଲାଭ କରିଥିଲେ । ତା'ପୂର୍ବରୁ ଏମ୍.ଏ.ରେ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରିଥିଲେ । ତାଙ୍କର ଗବେଷଣା ଗ୍ରନ୍ଥ ସାରା ସଂସାରର ପଣ୍ଡିତମାନଙ୍କୁ ମୁଗ୍ଧ କରିଥିଲା । ୧୯୦୯ ମସିହାରେ ମାଡ୍ରାସ ପ୍ରେସିଡେନ୍ସୀ କଲେଜର ଦର୍ଶନ ବିଭାଗର ଅଧ୍ୟାପକ ରୂପେ ଯୋଗଦେଲେ । ସେଠାରେ ଆଠବର୍ଷ ଅଧ୍ୟାପନା କରିବା ପରେ ମହିଶୂର ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ପ୍ରଫେସର ହେଲେ । ତା'ର ୩ ବର୍ଷ ପରେ କଲିକତା ବିଶ୍ୱବିଦ୍ୟାଳୟକୁ ଦର୍ଶନ ପ୍ରଫେସର ଭାବେ ଚାଲିଗଲେ ।

ସର୍ବପଲ୍ଲୀ ରାଧାକୃଷ୍ଣନ୍ ବହୁ ଗବେଷଣାତ୍ମକ ପ୍ରବନ୍ଧ ଲେଖିଥିବା ଯୋଗୁଁ ବିଦେଶରେ ତାଙ୍କର ପ୍ରଶଂସା ବ୍ୟାପିବାକୁ ଲାଗିଲା । ଏଣୁ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ, ଲଣ୍ଡନ ତାଙ୍କୁ ପ୍ରାଚ୍ୟ ଧର୍ମ ଓ ନୀତି ଶାସ୍ତ୍ରର ପ୍ରଫେସର ରୂପେ ନିଯୁକ୍ତି ହେବା ପାଇଁ ଅନୁରୋଧ କଲା, ଏହି ଗରିମାମୟ ପଦ ନିମନ୍ତେ ସେ ହେଉଛନ୍ତି ପ୍ରଥମ ଭାରତୀୟ ।

ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ୩ ବର୍ଷ ଅଧ୍ୟାପନା କରିବା ପରେ ମହାମନା ମାଳବିୟ ତାଙ୍କୁ ଭାରତ ଡ଼କାଇ





ଆଣିଲେ ଓ ୧୯୩୯ ମସିହାରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କୁଳପତି ପଦ ସମ୍ଭାଳିବାକୁ ଅନୁରୋଧ କଲେ ।

ସର୍ବପଲ୍ଲୀ ରାଧାକୃଷ୍ଣନ୍ ୧୯୫୪ ମସିହାରେ 'ଭାରତ ରତ୍ନ' ଉପାଧି ପ୍ରାପ୍ତ ହେଲେ । ତାଙ୍କର ପ୍ରତିଭା ବିଦ୍ୱତା ତଥା ଦେଶ ସେବା ପାଇଁ ତାଙ୍କୁ ଏହି ରାଷ୍ଟ୍ରର ସର୍ବୋଚ୍ଚ ଉପାଧି ମିଳିଥିଲା ।

୧୯୪୯ ମସିହାରେ ସାମ୍ୟବାଦୀ ସୋଭିଏତ୍ ଋଷିଆର ସର୍ବମୟ କର୍ତ୍ତା ଷ୍ଟାଲିନ୍‌ଙ୍କ ଶାସନ ସମୟରେ, ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ରାଧାକୃଷ୍ଣନ୍‌ଙ୍କୁ ସେ ଦେଶର ଭାରତର ରାଷ୍ଟ୍ରଦୂତ ରୂପେ ଅବସ୍ଥାପିତ କରିଥିଲେ । ସେହି ସମୟରେ ସେ ଉପନିଷଦକୁ ଇଂରାଜୀ ଭାଷାରେ ଅନୁବାଦ କରିଥିଲେ ।

୧୯୫୨ ମସିହାରୁ ୧୯୬୨ ପର୍ଯ୍ୟନ୍ତ ଭାରତର ଉପରାଷ୍ଟ୍ରପତି ଓ ୧୯୬୨ରୁ ୧୯୬୭ ରାଷ୍ଟ୍ରପତି ରୂପେ ଭାରତମାତାର ସେବା କରିଥିଲେ ।

ସେ ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ନ କରି ସୁଦ୍ଧା ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରିଥିଲେ । ସେ ଜଣେ ବିଶ୍ୱବିଖ୍ୟାତ ଦାର୍ଶନିକ, ମହାନ୍ ରାଷ୍ଟ୍ରନାୟକ ସଫଳ କୂଟନୀତିଜ୍ଞ ଓ ସମ୍ମାନୀୟ ଶିକ୍ଷକ ମଧ୍ୟ । ଆଉ ମଧ୍ୟ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଶିକ୍ଷାବିତ୍ ।

ସେ ଲେଖିଥିବା ପୁସ୍ତକଗୁଡ଼ିକ ହେଲା- ଇଣ୍ଡିଆନ ଫିଲୋସଫି, ଦି ହିନ୍ଦୁ ଭିୟୁ ଅଫ୍ ଲାଇଫ, ଆନ୍ ଆଇଡ଼ିଆଲିଷ୍ଟ ଭିୟୁ ଅଫ ଲାଇଫ୍, ଦି ରିଲିଜିଅନ୍ ଉଇ ନିଡ଼, ଇଷ୍ଟର୍ଣ୍ଣ ରିଲିଜିଅନ ଏଣ୍ଡ ଓ୍ୱେଷ୍ଟ ଇନ୍ ଥଟ୍ ।

୧୯୭୫ ମସିହା ଅପ୍ରେଲ ୧୭ ତାରିଖରେ ଏହି ମହାନ୍ ଆତ୍ମାଙ୍କର ଅବସାନ ଘଟିଲା ତଥାପି ସେ ଆମମାନଙ୍କ ପାଇଁ ଚିର ଅମର । ରାଷ୍ଟ୍ର ସବୁଦିନ ପାଇଁ ତାଙ୍କୁ ମନେ ରଖିଥିବ । ଏହି ବରେଣ୍ୟ, ଶିକ୍ଷା ତଥା ଶିକ୍ଷକ ସମାଜକୁ ପ୍ରାଣଠାରୁ ବଳି ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଆଉ ଛାତ୍ରବତ୍ସଳ ମଧ୍ୟ ଥିଲେ ।

ଯେତେବେଳେ ତାଙ୍କ ଜନ୍ମ ଦିବସ ପାଳନ ପାଇଁ ଶ୍ରଦ୍ଧାଳୁମାନେ ଅଡ଼ି ବସିଲେ ସେ ବିନମ୍ରତାର ସହ କହିଥିଲେ ବରଂ ମୋ ଜନ୍ମ ଦିନକୁ ସଂସାରର ଗୁରୁମାନଙ୍କ ପାଇଁ ଉତ୍ସର୍ଗ କରାଯାଉ । ସେଦିନ ଗୁରୁମାନେ ପୂଜା ପାଆନ୍ତୁ ।

ସେଇ ଅନୁସାରେ ଆମେ ଆଜି ସେପ୍ଟେମ୍ବର ମାସ ୫ ତାରିଖକୁ 'ଗୁରୁ ଦିବସ' ରୂପେ ପାଳନ କରି ଆସୁଛୁ ।

**ଡକ୍ଟର ରାଧାକୃଷ୍ଣନ୍ କହିଥିଲେ-**

ଏକ ଜନନେତାକୁ ବିଚାରରେ ଦୃଢ଼ ରହିବାକୁ ହେବ । ନିଜର ଲୋକପ୍ରିୟତା ଖର୍ବ ହେବା ଭୟରେ ଯେ ନିଜର ବିଚାରକୁ ପରିହାର କରିଦିଏ, ସେ ନେତା ପଦବାଚ୍ୟ ନୁହେଁ ।

ଜଣେ ଜନନେତାର ଅନ୍ତରରେ ଯେଉଁ ପ୍ରେରଣା ଥାଏ, ସେ ଅନ୍ୟମାନଙ୍କ ହୃଦୟରେ ତାହା ଜାଗରିତ କରି ପାରିଥାଏ ।

ଧନ ସଂପଦରେ ବଡ଼ ନୁହେଁ, ହୃଦୟ, ଚରିତ୍ର, ଦୃଷ୍ଟିକୋଣ ଓ ବିଚାରରେ ବଡ଼ ବ୍ୟକ୍ତି ହିଁ ନେତୃତ୍ୱ ନେବାରେ ଓ ରାଷ୍ଟ୍ର ଗଠନ କରିବାରେ ସଫଳ ହୁଅନ୍ତି ।

---

ସଂପାଦକ, 'ପୁରାଣ ପତ୍ରିକା'
ନିଆଳୀ- ୭୫୪୦୦୪, ଜିଲ୍ଲା- କଟକ



# ଓଡ଼ିଶାର ଜନଜୀବନ ଓ ଗାନ୍ଧିଜୀ

**ସର୍ବେଶ୍ୱର ସେଣ**

ମୁକ୍ତି ସଂଗ୍ରାମ ହେଲା ତ୍ୱରାନ୍ୱିତ । ଗାନ୍ଧୀ-ମନ୍ତ୍ର-ବିହ୍ୱଳ ଭାରତବର୍ଷ, ଓଡ଼ିଶା ବି । ଓଡ଼ିଆଏ ଗାନ୍ଧିଜୀଙ୍କୁ ଆପଣାର ମଣିଲେ । ଗାନ୍ଧିଜୀ ମଧ୍ୟ ଓଡ଼ିଶାକୁ ପ୍ରାଣଠୁ ବଳି ଭଲ ପାଇଲେ । ଓଡ଼ିଶାର ଦାରିଦ୍ର୍ୟ ତାଙ୍କୁ ମର୍ମାହତ କଲା । ଏହାର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ମନ ଦେଲେ । ଗାନ୍ଧିଜୀ ଆଠଥର ଓଡ଼ିଶା ଆସିଲେ । ସତ୍ୟାଗ୍ରହ ବାର୍ତ୍ତା ପ୍ରଚାର, କୁଟୀର ଶିଳ୍ପର ପୁନରୁଦ୍ଧାର, ସଂସ୍କାରବାଦୀ କାର୍ଯ୍ୟକ୍ରମ - ଏମିତି ନାନା କଥା ହାତକୁ ନେଲେ । ଓଡ଼ିଶାରେ ପାଇଲେ ଅଭୂତପୂର୍ବ ସଫଳତା । ଗାନ୍ଧିଜୀ ପୁନଶ୍ଚ ଓଡ଼ିଶା ଆସିଲେ । ସାଥିରେ ପତ୍ନୀ, ଆଉ କେତେକ ଛାମୁଆ କଂଗ୍ରେସ ନେତା । ସେମାନଙ୍କ ମଧ୍ୟରେ ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍, ରାଜେନ୍ଦ୍ର ପ୍ରସାଦଙ୍କ ନାମ ଉଲ୍ଲେଖଯୋଗ୍ୟ । ପୁରୀ ଡେଲାଙ୍ଗର ବେରବୋଇ, ସେଇଠି ଆୟୋଜିତ ହୋଇଥାଏ ଗାନ୍ଧୀ ସେବା ସଂଘର ଚତୁର୍ଥ ବାର୍ଷିକ ସମ୍ମିଳନୀ । ଏଥି ସହିତ ଉତ୍କଳ ଖଦୀ ଗ୍ରାମୋଦ୍ୟୋଗ ଶିଳ୍ପବାର୍ଷିକ ସମ୍ମିଳନୀ । ଗାନ୍ଧିଜୀ ଓ ତାଙ୍କ ସହଯୋଗୀ ଏଥିରେ ଯୋଗଦେଲେ । ବିଭିନ୍ନ ପ୍ରକାର ଆର୍ଥନୀତିକ ପ୍ରଗତି ସମ୍ପର୍କରେ ନାନାଦି ଚର୍ଚ୍ଚା ହେଲା । ଓଡ଼ିଶାର ନେତାମାନେ ଅଂଶଗ୍ରହଣ କଲେ । ଆଗ୍ରୋ ଏଣ୍ଡ୍ ଭିଲେଜ ଏଣ୍ଟରପ୍ରାଇଜେସ୍ ପ୍ରଦର୍ଶନୀକୁ ଗାନ୍ଧିଜୀ ଉଦ୍‌ଘାଟନ କଲେ । ଗାନ୍ଧିଜୀଙ୍କ ଆଗମନ ବାର୍ତ୍ତା, ପବନ ବେଗରେ ଚହଟି ଯାଇଥାଏ । ସବୁଆଡ଼େ ହାଟ, ବଜାର, ଦୋକାନ, ପରିବାର, ସବୁଠି ଗୋଟିଏ ଆଲୋଚନା- ମହାତ୍ମା ଆସିବେ, ମହାତ୍ମା ଆସିବେ! ସୁରେନ୍ଦ୍ର ମହାନ୍ତି, ସେ ବର୍ଷ ସାଲେପୁର ହାଇସ୍କୁଲର ଶେଷବର୍ଷ ଛାତ୍ର । ପାଟନା ୟୁନିଭରସିଟି ପରୀକ୍ଷା କରିବ, ପିଲେ ଭଲ କରିବେ, ସେଥିପାଇଁ ନିୟମିତ କୋଚିଂ । ଶିକ୍ଷକମାନେ ଗଳଦ୍‌ଘର୍ମ । ବାହାରକୁ ଯିବା ଅନୁମତି ନଥାଏ । ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟ ମନମୋହନ ବାବୁ । ସୁରେନ୍ଦ୍ର ଗାନ୍ଧିଜୀଙ୍କୁ ଟିକେ ଦେଖିବେ । ଏଥିପାଇଁ ଛୁଟିଦେବାକୁ ତାଙ୍କୁ ଅନୁରୋଧ କଲେ । ସୁପରିନ୍‌ଟେଣ୍ଡେଣ୍ଟ ମନା କଲେ । ମାତ୍ର ସୁରେନ୍ଦ୍ରଙ୍କ ଜିଦ୍ ସେ ଯିବେ । ବସ୍‌ଷ୍ଟାଣ୍ଡରୁ ଗୋଟେ ବସ୍ ଧରିଲେ । ଜଗତପୁର ରେଲଷ୍ଟେସନ୍, ଖରାବେଳେ କଟକରୁ ଗୋଟେ ସ୍ପେଶାଲ୍ ଟ୍ରେନ୍ ବାହାରିବ । ଡେଲାଙ୍ଗ ଯିବ । ସୁରେନ୍ଦ୍ର, ତାଙ୍କର ଆଉ ତିନି ଚାରିଜଣ ସାଙ୍ଗ ମହାନଦୀ ବାଲିରେ ଚାଲିଲେ ।







ଯୋବ୍ରା ଘାଟରେ ଡଙ୍ଗା ପାରିହେଲେ । ପହଂଚିଲେ କଟକ ଷ୍ଟେସନ୍‌ରେ । ସ୍ପେଶାଲ୍ ପାସେଞ୍ଜର ଟ୍ରେନ୍ । ଟିକଟ ପଡ଼ିଲାନି । ଟିକଟ ଇନିସ୍‌ପେକ୍ଟରଙ୍କର ଟିକଟ୍ ଯାଂଚ ନାହିଁ, ପଚରା ଉଚୁରା ବି ନାହିଁ । ଏ ସବୁ ବୋଧେ ମହାତ୍ମାଙ୍କ ଖାତିରରେ! ଟ୍ରେନ୍ ଛାଡ଼ିଲା, 'ମହାତ୍ମା ଗାନ୍ଧି କୀ ଜୟ' ଧ୍ୱନି, ଷ୍ଟେସନ୍ ଛାତି କମ୍ପିଲା । ଯେଉଁ ଷ୍ଟେସନ୍‌ରେ ଟ୍ରେନ୍ ରହିଲା । ସବୁଠି ଗାନ୍ଧିଜୀଙ୍କର ଜୟ ଜୟକାର । ଖାଲି ସେତିକି ନୁହେଁ, ପ୍ଲାଟ୍‌ଫର୍ମ୍‌ର ଯାତ୍ରୀଏ, ସେମାନେ ବି ସ୍ଲୋଗାନ୍ ଦେଉଥାଆନ୍ତି- 'ମହାତ୍ମା ଗାନ୍ଧି କୀ ଜୟ' । ଏ ଥିଲା ସୁରେନ୍ଦ୍ରଙ୍କର ଅଭୁଲା ସ୍ମୃତି, ସୁରେନ୍ଦ୍ରଙ୍କ ପିଲାବେଳର କଥା । ଦିନେ ଗାନ୍ଧିଜୀଙ୍କୁ ଦେଖିବାକୁ ସୁଯୋଗ ମିଳିଥିଲା । ଅସମ୍ଭବ ଗହଳି, ସେ ଗାନ୍ଧୀଙ୍କୁ ଦେଖି ପାରିଲେନି । ମାତ୍ର ପୁରୀ ଡେଲାଙ୍ଗରେ ତାଙ୍କୁ ଦର୍ଶନ କଲେ । ଏ ସବୁ ଅବିସ୍ମରଣୀୟ ସ୍ମୃତି । ବାଣ୍ଟିଛନ୍ତି ଆପଣାର ଆତ୍ମଲିପି 'ପଥ ଓ ପୃଥିବୀ'ରେ ।

ଡେଲାଙ୍ଗ ଷ୍ଟେସନ୍ ବାହାରେ, ନଡ଼ିଆ ବାହୁଙ୍ଗା ଛାପାମାନ, ଏଥିରେ ତିଆରି ହେଇଛି ଶହଶହ କୁଡ଼ିଆ । ତଳେ ବିଛା ଯାଇଛି ନଡ଼ା । ତା'ରି ଉପରେ ବିଛଣା । ରହିଥାଆନ୍ତି ପ୍ରତିନିଧିମାନେ । କ୍ୟାମ୍ପ୍‌ଠାରୁ ଅଳ୍ପ ଦୂର, ଚାରିଆଡ଼େ କିଆ । ପାଖରେ ବାଲିକୁଦ । ଗାଁ ଗହଳରୁ ଆସିଥାଆନ୍ତି ସ୍ତ୍ରୀଲୋକମାନେ । ତା'ରି ଉପରେ ବସିଥାଆନ୍ତି । ପୁରୁଷଙ୍କ ସଂଖ୍ୟା ଅତି ଅଳ୍ପ । ସବୁ ସ୍ତ୍ରୀ ଲଜ୍ଜାଶୀଳା । ମୁଣ୍ଡରୁ ତଳକୁ ହାତେ ଲମ୍ବର ଓଢ଼ଣା । ସମସ୍ତେ ମହାତ୍ମାଙ୍କ ଅପେକ୍ଷାରେ । ବୋହୂ-ଭୁଆସୁଣୀଠାରୁ ଆରମ୍ଭ କରି ବୁଢ଼ୀମାନଙ୍କ ପର୍ଯ୍ୟନ୍ତ - ସବୁ ବୟସର ସ୍ତ୍ରୀଲୋକ । ରୁଣ୍ଡ ହେଉଛନ୍ତି ଠା ଠା । ସ୍ୱେଚ୍ଛାସେବୀମାନେ ସେମାନଙ୍କୁ ବସାଉ ଥାଆନ୍ତି । ସୁରେନ୍ଦ୍ର, ତାଙ୍କ ସାଙ୍ଗମାନେ, ସେଠାକୁ ଯାଇପାରିଲେନି । ସ୍ୱେଚ୍ଛାସେବୀଏ ବାରଣ କଲେ । ସୁରେନ୍ଦ୍ର କିଆବୁଦା ପାଖରେ ରହିଲେ । ମହାତ୍ମାଙ୍କୁ ସମସ୍ତ ଅପେକ୍ଷା । ଉତ୍ସୁକତା ବେଗଗାମୀ ହେଉଥାଏ । ଶେଷରେ ଆସିଲା ସେଇ ପ୍ରତୀକ୍ଷିତ ମୁହୂର୍ତ୍ତଟି ।

ଖଣ୍ଡେ ଖଟ, ତା' ଉପରେ ଚଉକିଟାଏ । ସେଇ ହେଲା ମହାତ୍ମାଙ୍କ ପାଇଁ ମଞ୍ଚ । ମହାତ୍ମା ସେଠାକୁ ଆସିଲେ । ପୁରୁଷଙ୍କ କଣ୍ଠରେ - ମହାତ୍ମା ଗାନ୍ଧି କୀ ଜୟ । ହରିବୋଲ, ହୁଳହୁଳି ଧ୍ୱନି, ସଭାସ୍ଥଳ ଉଚ୍ଛୁଳୁଛି । କିଛି କ୍ଷଣ ଗଲା । ଗାନ୍ଧିଜୀ ଆଶୀର୍ବାଦ ମୁଦ୍ରାରେ ଡାହାଣ ହାତ ଟେକିଲେ । ଭାଷଣ ଆରମ୍ଭ କଲେ । କାହାରିକି କିଛି ଶୁଭିଲାନି । ତାଙ୍କ ଭାଷଣ ଶୁଣିବା ପାଇଁ ବା କିଏ ଆସିଥିଲା ? ଖାଲି ଥରୁଟିଏ ଆଖି ପୂରେଇ ଦେଖିବେ । କାନି ଗଣ୍ଠାଗଣ୍ଠି ହୋଇ ଆସିଥିଲେ ସ୍ତ୍ରୀ ଲୋକ । ମୂଲ ମାରା କରି ମୂଲିଆମାନେ, ବିଲବାଡ଼ି ଧନ୍ଦା ଛାଡ଼ି ଚାଷୀମାନେ - ସେମାନେ ଗାନ୍ଧିଜୀଙ୍କ ଭାଷଣ ଅବା ଦର୍ଶନରୁ କ'ଣ ବୁଝିବେ ? ମହାତ୍ମାଙ୍କୁ ଥରୁଟିଏ ଦେଖିଲେ, ମନସ୍କାମନା ପୂର୍ଣ୍ଣ । ଏଇଥିରୁ ସେମାନେ ତାଙ୍କ ଲକ୍ଷଣଟା ବୁଝିନେବେ । ସୁରେନ୍ଦ୍ର ଠିଆ ହେଇଥାଆନ୍ତି, ମନେ ପଡ଼ିଗଲା ପୁରୁଣା ସ୍ମୃତି । କାନପୁରର ମେଟକାଫ୍ ସ୍କୁଲ୍‌ର ସେ ଛାତ୍ର । ଗାନ୍ଧିଜୀ ଆସିଲେ । ସାଲେପୁର ଥାନା, ଜିଗିନି ପାଟପୁର ଗାଁକୁ । ରାଇ ସୁଙ୍ଗୁଡ଼ାଠାରୁ ଛଅ, ସାତ ମାଇଲ ବାଟ, ସୁରେନ୍ଦ୍ରଙ୍କର ବୋଉ ଜିଗର କଲେ, ତାଙ୍କ ବାପା ଶଗଡ଼ଟେ ଡାକିଲେ । ସେଦିନ ଡାକ୍ତରଖାନା ବନ୍ଦ । ଚାଲିଲା ଶଗଡ଼ । ବାପା ଚାଲିଛନ୍ତି ଆଗେ ଆଗେ, ହାତରେ ଛତା । ବୋଉ ଶଗଡ଼ ଭିତରେ । ସୁରେନ୍ଦ୍ର ପଛରେ ଦଉଡ଼ିଲେ ଧୂଳି ଉଡ଼େଇ, ଉଡ଼େଇ । ସେ ଗାନ୍ଧିଜୀଙ୍କୁ ଦେଖିପାରିଲେନି । ତାଙ୍କ ବୋଉ, ମାଇପି ମେଳରେ । ପାଖରୁ ଗାନ୍ଧିଜୀଙ୍କୁ ଦେଖିଲେ । ଗାନ୍ଧୀ ମହାତମା କ'ଣ କହିଲେ? ସୁରେନ୍ଦ୍ର ବୁଝିବାକୁ ଚାହିଁଲେ । ବୋଉ କହିଲେ- ''ଇରେ, ଗାନ୍ଧୀ ମହାତମା କହିବେ କ'ଣ ? ସିଏ ତ ପଦେ କଥା କହୁଚି ନି - ସୂତା କାଟ, ଆଉ ଗହଣାସବୁ ମୋତେ ଦେଇଦିଅ । ଆଉ କହିବେ କ'ଣ ? ସୁନା ଖଡ଼ିକା ମତେ 'ଦିଅ' ।'' ସହଜେ ତ ବୋଉ ମୁରୁଖ । ଆଉ କ'ଣ ଗପି ଥାଆନ୍ତେ । ସୁରେନ୍ଦ୍ର ଅଧାରୁ ରୋକିଲେ । 'କି ଗହଣା ଦେଲୁ' - ଏକଥା ପଚାରିଲେ । ବୋଉ ମୁହଁ ଛିଞ୍ଚାଡ଼ି କହିଲା, ''ମୋ ଗହଣ କାହିଁକି ତାଙ୍କୁ ଦେବିବା ? ଗୋଟା ରୁପାଟଙ୍କା ଦେଇ ତାଙ୍କୁ ବନ୍ଦେଇଲି ।''

ଆଜି ମଧ୍ୟ ସେଇ ଦୃଶ୍ୟ । ବେରବୋଇ ଲୋକାରଣ୍ୟ, ଗାଁ ଗହଳରୁ ଆସିଥିଲେ ମାଇପିମାନେ ।



କିଏ ଶଗଡ଼ରେ, ଆଉ କିଏ ଚାଲିଚାଲି । ଗାନ୍ଧିଜୀଙ୍କ ଭାଷଣ ଶୁଣିବା, ଏଥିରେ କୌଣସି ପ୍ରୟୋଜନ ନଥିଲା । କେବଳ ଗାନ୍ଧିଜୀଙ୍କୁ ଥରେ ଦେଖିବା, ସେଇ ଯଥେଷ୍ଟ । ଏଇଟି ଥିଲା ତାଙ୍କର ଭାରତୀୟ ନାରୀଙ୍କ ଉପରେ ଐନ୍ଦ୍ରଜାଲିକ ପ୍ରଭାବ । କେବଳ ମହାତ୍ମା ଏହାକୁ ବିସ୍ତାର କଲେ । ଆଉ କୌଣସି ନେତା ତାଙ୍କ ସମକକ୍ଷ ନଥିଲେ । ମହାତ୍ମା ଭାରତୀୟମାନଙ୍କ ପାଇଁ ଅବତାରୀ ପୁରୁଷ । ମୁକ୍ତି ସଂଗ୍ରାମକୁ ସେ ପୂର୍ଣ୍ଣାଙ୍ଗ ରୂପ ଦେଲେ । ଅର୍ଥନୀତିର କେତେକ କାର୍ଯ୍ୟକ୍ରମ ହାତକୁ ନେଲେ । ଏହାକୁ ଧର୍ମାଚାରରେ ପରିଣତ କଲେ । ବହୁ ବିଜ୍ଞ ବ୍ୟକ୍ତି, ଏ କଥାକୁ ମଧ ଭାବି ପାରିନଥିଲେ ।

ସୁରେନ୍ଦ୍ରଙ୍କ ରାତିଟି କଟିଲା ଡେଲାଙ୍ଗରେ । କଟକରେ ପହଂଚିଲା ବେଳକୁ ପକେଟ୍ ଶୂନ, ମାତ୍ର ଚାରିଣିଟିଏ । ଜଗତପୁରରୁ ସାଲେପୁର । ବସ୍ ଟିକଟ ପାଇଁ ପଇସା ନାହିଁ । ଚାଲିଚାଲି ଆସିଲେ । ପହଞ୍ଚିଲେ ପଦ୍ମପୁର ବଜାରରେ । ଥାଏ ଝଙ୍କାଳିଆ ବରଗଛଟାଏ । ଗଛତଳେ ପକ୍କା ପହଣ୍ଡ । କ୍ଳାନ୍ତି, ଅବସାଦର ସୀମା ନାହିଁ, ସେଇଠି ଶୋଇଗଲେ । ତା' ପରଦିନ, ଚାଲିଚାଲି ଆସିଲେ । ପାଦ ଫୁଲି ଯାଇଥାଏ । ହଷ୍ଟେଲରେ ମନମୋହନ ବାବୁ ପଚାରିଲେ– ''କିରେ ମହାତ୍ମାଙ୍କୁ ଦେଖିଲୁ ।'' ସୁରେନ୍ଦ୍ର ସ୍ମିତ ହସିଲେ, 'ହଁ ସାର୍' । ଏତିକିରେ କଥା ସରିଲା । ସୁରେନ୍ଦ୍ର ଜବାହରଙ୍କୁ ଦେଖିବାକୁ ଗଲେ, ପାଇଲେ ବେତ୍ରାଘାତ, ଗାନ୍ଧିଜୀଙ୍କୁ ଦେଖିଲେ, ଦଣ୍ଡ ମିଳିଲାନି । ବୋଧହୁଏ ଗାନ୍ଧିଜୀ ସାର୍‌ମାନଙ୍କର ନମସ୍ୟ ଥିଲେ ! ଏକଥା ସୁରେନ୍ଦ୍ର ଅନୁଭବ କଲେ ।

ଗାନ୍ଧିଜୀ ନାରୀ ସଶକ୍ତିକରଣ ମନ୍ତ୍ର ଫୁଙ୍କିଲେ । ଓଡ଼ିଶାର ନାରୀଙ୍କୁ ଆଲୋକ ଦେଖାଇଲେ । ନାରୀଙ୍କ ସ୍ଥାନ ରୋଷେଇ ଶାଳରେ । ଏ ପ୍ରକାର ଚିନ୍ତନ ପ୍ରାଚୀନ କାଳର ବର୍ବରତା । ଏ କଥାଟି କହିଲେ । ତାଙ୍କ ଉଦ୍‌ବୋଧନୀ ବାର୍ତ୍ତା, ନାରୀ ସମାଜ ହେଲା ଆଲୋଡ଼ିତ । ସେମାନେ ଏରୁଣ୍ଡିବନ୍ଧ ଡେଇଁଲେ । ମୁକ୍ତିସଂଗ୍ରାମରେ ଝାସ ଦେଲେ । ସମ୍ଭ୍ରାନ୍ତ, ମଧ୍ୟବିତ୍ତ, ନିଦରବ – ସବୁଶ୍ରେଣୀର ନାରୀ । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ । ମୁକ୍ତି ସଂଗ୍ରାମକୁ ଆଗେଇ ନେଲେ । ଅଗ୍ରଗଣ୍ୟା ଥିଲେ ରମାଦେବୀ, ମାଳତୀଦେବୀ, ସରଳା ଦେବୀ, ଜାହ୍ନବୀ ଦେବୀ, ରତ୍ନମାଳୀ ଦେବୀ ଓ ସୁଭଦ୍ରା ଦେବୀ । ଏମାନଙ୍କ ସହ ଆହୁରି ଶତ ସହସ୍ର । ପାଇଖାନା ସଫେଇ, ବିକଳାଙ୍ଗ, କୁଷ୍ଠରୋଗୀଙ୍କ ସେବା, ଅନ୍ଧବିଶ୍ୱାସ ବିଲୋପ, ସ୍ୱାସ୍ଥ୍ୟ ସଚେତନତା ସୃଷ୍ଟି, ଚରଖାରେ ସୂତା କାଟିବା, ଅସ୍ପୃଶ୍ୟତା ନିବାରଣ – ଏମିତି ନାନାଦି ରଚନାତ୍ମକ କାର୍ଯ୍ୟକ୍ରମ । ଓଡ଼ିଶାର ନାରୀ ରହିଲେ ବହୁ ଆଗରେ । ଏଥିସହ ମୁକ୍ତି ସଂଗ୍ରାମ । ସବୁଥିରେ ଓଡ଼ିଆ ନାରୀଙ୍କ ସଫଳତା । ଗାନ୍ଧିଜୀଙ୍କ ଐତିହାସିକ 'ହରିଜନ ପଦଯାତ୍ରା' । ଏଥିରେ ମଧ ବହୁ ସଂଖ୍ୟକ ନାରୀ ଯୋଗଦେଲେ । ଜାତି ଜାତି ଭିତରେ ବିବାହ ସମ୍ପନ୍ନ ହେଲା । ତଥାକଥିତ ହରିଜନମାନେ, ମନ୍ଦିର ପ୍ରବେଶ ସୁବିଧା ପାଇଲେ । ଯାହା ଶତାବ୍ଦୀ ଶତାବ୍ଦୀ ଧରି ସମ୍ପନ୍ନ ହୋଇନଥିଲା ଗାନ୍ଧିଜୀଙ୍କ ଓଡ଼ିଶା ଗସ୍ତ ହେତୁ ସମ୍ଭବ ହେଲା ।

ଓଡ଼ିଶାକୁ ଗାନ୍ଧିଜୀ ପ୍ରାଣଠୁ ଆପଣାର ମଣିଥିଲେ । ତାଙ୍କ ଓଡ଼ିଶା ଗସ୍ତ ଅନୁଭୂତି । ଏସବୁ ଥିଲା ଚିର ଅଭୁଲା । 'ମାଇଁ ଓଡ଼ିଶା ଟୁର୍' । ଏଇଟି ଥିଲା ତାଙ୍କ ଓଡ଼ିଶା ସମ୍ପର୍କିତ ଧାରଣା । ପ୍ରକାଶ ପାଇଲା 'ନବଜୀବନ' ପତ୍ରିକାରେ । ଆଉ ଗୋଟେ ଲେଖା 'ଓଡ଼ିଶା ଏଣ୍ଡ୍ ଆନ୍ଧ୍ର', ଏଇଟି 'ୟଙ୍ଗ୍ ଇଣ୍ଡିଆ'ରେ ପ୍ରକାଶିତ । ଓଡ଼ିଶାର କୃଷକ, ଏମାନେ ବିହାରର ଚମ୍ପାରନ୍ କୃଷକଙ୍କଠାରୁ ଅତି ଦରିଦ୍ର – ଏ କଥା ଗାନ୍ଧିଜୀ ବୁଝିଥିଲେ । ଗାନ୍ଧିଜୀ କେବଳ ନୀରବଦ୍ରଷ୍ଟା ନ ଥିଲେ । ଓଡ଼ିଶାର ଆର୍ଥନୀତିକ ପ୍ରଗତି ପାଇଁ ଅଣ୍ଟା ଭିଡ଼ିଥିଲେ । ବହୁ ବଦାନ୍ୟ ବ୍ୟକ୍ତି, ସମାଜସେବୀ । ଏମାନେ ଓଡ଼ିଶା ଆଡ଼େ ସାହାଯ୍ୟର ହାତ ଲମ୍ବାଇଲେ । ଖ୍ରୀଷ୍ଟିଆନ୍ ମିଶନାରୀ ସି.ଏଫ୍. ଆଣ୍ଡ୍ରୁସ୍, ମାସ ମାସ ଓଡ଼ିଶାରେ ରହିଲେ । ବନ୍ୟାଦୁର୍ଗତମାନଙ୍କ ଦୁଃଖଦୁର୍ଦ୍ଦଶା ମୋଚନ କଲେ । ଠିକ୍ ସେମିତି । ଜୀବରାମଜୀ କଲ୍ୟାଣଜୀ କୋଠାରୀ, ଆପଣାର ଧନ, ଜୀବନ, ଓଡ଼ିଶା ହିତରେ ଲଗାଇଲେ । ଈଶ୍ୱରଲାଲ ବ୍ୟାସ ତାଙ୍କ ସହଧର୍ମିଣୀ 'ପୁରୁବାଇ' । ଏମାନେ ଗାନ୍ଧୀ–ମନ୍ତ୍ର–ଦୀକ୍ଷିତ । ବାଲେଶ୍ୱରଠାରେ ଆଶ୍ରମଟିଏ ତିଆରି କଲେ । ଓଡ଼ିଶାବାସୀଙ୍କ ସେବାରେ ବ୍ରତୀ ହେଲେ । ବିଖ୍ୟାତ ଇଂଜିନିୟର ବିଶ୍ୱେଶ୍ୱରାୟା । ତାଙ୍କ ଦୈନିକ ପ୍ରାପ୍ୟ





୧୦,୦୦୦ ଟଙ୍କା । ଗାନ୍ଧିଜୀଙ୍କ ଅନୁରୋଧ ରକ୍ଷା କଲେ । ଦୀର୍ଘ ୧୨ ଦିନ ଓଡ଼ିଶାରେ ବିତାଇଲେ । ବନ୍ୟା ନିୟନ୍ତ୍ରଣ ପାଇଁ ନାନାଦି ଉପାଦେୟ ତଥ୍ୟ ଯୋଗାଇଲେ । କାଣି କଉଡ଼ିଟିଏ ନେଲେନି । ଏସବୁ ଗାନ୍ଧିଜୀଙ୍କର ଓଡ଼ିଶା ପାଇଁ ଅତୁଳନୀୟ ଅବଦାନ ।

ସେଦିନର ବେରବୋଇର ଦୃଶ୍ୟ ସୁରେନ୍ଦ୍ରଙ୍କ ସ୍ମୃତିକୁ ଦୋହରାଉ ଥାଏ । ନାରୀ ମୁକ୍ତି ଓ ନାରୀ ଜାଗରଣ - ଏ ଦୁଇଟି ଗାନ୍ଧିଜୀଙ୍କର ଅସଲ ଲକ୍ଷ୍ୟ ଥିଲା । ଯୁଗ ଯୁଗର ଅନ୍ଧକାର, ସାମାଜିକ କୁସଂସ୍କାର, ନାରୀ ଜାତି ପ୍ରତି ହୀନମନ୍ୟତା - ଏସବୁ କ୍ରମେ ଦୂରୀଭୂତ ହେଲା । ସବୁ ସେଇ ଗାନ୍ଧୀ-କିମିଆଁ । ସୁରେନ୍ଦ୍ରଙ୍କ ବୋଉ ଅପାଠୋଇ । ତଥାପି ତାଙ୍କ ମନ ଦବି ଯାଇଥିଲା । ରୂପା ଟଙ୍କାଟିଏରେ ଗାନ୍ଧିଜୀଙ୍କୁ ବନ୍ଦେଇ ଥିଲେ । ସେଇମିତି ଜଣେ ସାଧାରଣ ନାରୀ । ଇତିହାସରେ ନାହିଁ ତାଙ୍କ ନାଁ, ଗାଁ ଠିକଣା । ସେଇ ମହୀୟସୀ ମହିଳା ଜଣଙ୍କ ପରୀ ବେଓ୍ବା । ଅଗଷ୍ଟ ବିପ୍ଳବର କଥା । ଭଦ୍ରକର ଇରମ ଗଣହତ୍ୟା । ପରୀ ବେଓ୍ବା ଅକାଳରେ ପ୍ରାଣବଳି ଦେଲେ । ଶହୀଦ ହେଲେ । ଇତିହାସ ରଚିଲେ ଓଡ଼ିଆ ନାରୀ । ଏସବୁ ଗାନ୍ଧିଜୀଙ୍କ ଆଦର୍ଶର ଅମୃତମୟ ଫଳ ।

ସା/ପୋ - ପୁରୁଷୋତ୍ତମପୁର
ଜିଲ୍ଲା- କେନ୍ଦ୍ରାପଡ଼ା

---



# ଆସ ମାଆ ଅବତରି

**ପ୍ରଶାନ୍ତ କୁମାର ଦାଶ**

ମହ ମହ ବାସେ ଶେଫାଳୀ ରାତିରୁ ଫୁଟି
ଢାଳିଦିଏ ଜହ୍ନ ଜୋଛନା ଆକାଶେ ଉଠି ।
କୁଳୁ କୁଳୁ ଗୀତ ଗାଇ ନଈ ଯାଏ ବହି
ହସିଦିଏ କଇଁଫୁଲ ପୋଖରୀରେ ରହି ।
କାଶତଣ୍ଡୀ ନାଚେ ଥିରି ପବନରେ ଝୁଲି
ଜହ୍ନିଫୁଲ ଫୁଟି ଗରବେ ଉଠଇ ଫୁଲି ।
କମି ଯାଇଅଛି ବରଷା ବତାସ ବେଗ
ଘଡ଼ଘଡ଼ି ଡାକ ଦଉନାହିଁ ଆଉ ମେଘ ।
କି ସୁନ୍ଦର ଦିଶେ ବଣର ସବୁଜ ଶୋଭା
ଚଷାପୁଅ କ୍ଷେତ ଫସଲ ଯେ ମନୋଲୋଭା ।

ଶରତ ଆସିଛି ଶୋଭାର ପସରା ଧରି
ପାହାନ୍ତି ରାତିରେ ଶିଶିର ପଡୁଛି ଝରି ।
ଆସିବେ ଦୁରୁଗା ହେବ ତାଙ୍କ ସେବା ପୂଜା
ଭୋଗ ଧୂପ ଫୁଲ ପାଇବେ ମା’ ଦଶଭୁଜା ।
ମଣିଷ ଭିତରେ ଥିବା ହୀନ ବୁଦ୍ଧି ନାଶିବେ
ପୁଷ୍ପମାଳ ପିନ୍ଧି ମେଢ଼ ମଣ୍ଡପେ ବିରାଜିବେ ।
ଅସୂୟା ଅଶାନ୍ତି କରିଦେବେ ମାଆ ଦୂର
ସୁଖ ପାଇ ହସି ଉଠିବ ମରତ ପୁର ।

କୁଞ୍ଜର, ସଙ୍ଗଳାଇ
ପିପିଳି, ପୁରୀ



# ସୃଷ୍ଟି ସଂସ୍ଥାନରେ ସାଧନାର ଦୁଇ ମାର୍ଗ : କର୍ମ ଓ ଧର୍ମ

**ସୁଚିତ୍ରା ବେହେରା**

ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ହେଉଛନ୍ତି ପରମାତ୍ମା ଭଗବାନ । ସେ ପରଂବ୍ରହ୍ମ, ପରମେଶ୍ୱର, ବିଶ୍ୱନିୟନ୍ତା ଓ ପଥ ପ୍ରଦର୍ଶକ । ସେ ହିଁ ସଂହାର କର୍ତ୍ତା ଓ ପାଳନ କର୍ତ୍ତା । ମନୁଷ୍ୟ କେବଳ ମାତ୍ର ତାଙ୍କର ଅନୁସରଣକାରୀ । ଈଶ୍ୱର ସର୍ବବ୍ୟାପ୍ତ । ଅଣୁଠାରୁ ପରମାଣୁ ପର୍ଯ୍ୟନ୍ତ ସେ ସର୍ବତ୍ର ବିଦ୍ୟମାନ ଏକ ଅଦୃଶ୍ୟ ଛାୟା ଶକ୍ତିରେ । ଯାହା ଜୀବଜନ୍ତୁ ଓ ସାଧାରଣ ମନୁଷ୍ୟଙ୍କୁ ଦୃଶ୍ୟ ହୁଏ ନାହିଁ । ମାତ୍ର ସେହି ଅଦୃଶ୍ୟ ଛାୟା ଶକ୍ତି ଦ୍ୱାରା ଉଭୟ ଜୀବଜଗତ ଓ ପ୍ରାଣୀଜଗତ ପ୍ରତ୍ୟହ ପରିଚାଳିତ ହୋଇଥାଏ । ବିଶ୍ୱନିୟନ୍ତାଙ୍କ ପ୍ରଦର୍ଶିତ ନିୟମ ଏବଂ ନିର୍ଦ୍ଦେଶ ଅନୁଯାୟୀ ମନୁଷ୍ୟ ସେହି ମାର୍ଗର ଅନୁସନ୍ଧାନ କରିବାରେ ସକ୍ଷମ ହୁଏ । ତା'ପରେ ସେହି ମାର୍ଗର ଅନୁଗାମୀ ହୋଇ ସାଧନାରେ ସିଦ୍ଧିଲାଭ କରେ ।

ସୃଷ୍ଟି ସଂସ୍ଥାନରେ ସାଧନାର ଦୁଇଟି ମାର୍ଗ ରହିଅଛି । ଯାହା ସେହି ବିଶ୍ୱନିୟନ୍ତାଙ୍କ ଦ୍ୱାରା ନିର୍ଦ୍ଧାରିତ । ତାହା ହେଉଛି କର୍ମ ମାର୍ଗ ଓ ଧର୍ମ ମାର୍ଗ । ମନୁଷ୍ୟ ଜନ୍ମ ପାଇ ଏ ସଂସାରରେ ଜୀବନ ଧାରଣ କରିବା ପାଇଁ ଭଗବାନ କର୍ମ କରିବାର ଯଥାର୍ଥତା ଶାସ୍ତ୍ର ମାଧ୍ୟମରେ ସୂଚାଇଛନ୍ତି । କର୍ମ ହିଁ ଭଗବାନ ଓ କର୍ମ ହିଁ ଜୀବନ । ତେଣୁ ଦୈନନ୍ଦିନ ଜୀବନ ପ୍ରବାହରେ ମନୁଷ୍ୟ ନିଷ୍ଠା ଓ ପବିତ୍ରତାର ସହ ଯେଉଁ କର୍ମ କରୁଥାଏ, ତାହା ତା'ର ଏକ ସାଧନା ହୋଇଥାଏ । ଯେଉଁ କର୍ମ ପାଇଁ ଯେମିତି ସାଧନା କଲେ ବି ତାହାର ସିଦ୍ଧିଲାଭ ହୋଇଥାଏ । କର୍ମ ମାର୍ଗର ସାଧନା ସନ୍ନ୍ୟାସୀ ଓ ସଂସାରୀ ଉଭୟଙ୍କୁ ମଧ୍ୟ କରିବାକୁ ପଡ଼ିଥାଏ । କର୍ମବାଦ ସମ୍ବନ୍ଧରେ ଭଗବତ୍ ଗୀତାରେ ବର୍ଣ୍ଣନା କରାଯାଇଛି ।

ମନୁଷ୍ୟ ଜୀବନ ଦୁର୍ଲଭ ଅଟେ । କର୍ମ ବିନା ଏହି ଦୁର୍ଲଭ ଜୀବନ ମୂଲ୍ୟହୀନ ଅଟେ । କର୍ମ ଜଡ଼ିତ ଜୀବନଠାରୁ ଊର୍ଦ୍ଧ୍ୱକୁ ଯାଇ ମନୁଷ୍ୟ କୌଣସି ସାଧନାର ସିଦ୍ଧିରେ ପହଞ୍ଚିପାରେ ନାହିଁ । ସଂସାରକୁ ଆସି ସଂସାର ତତ୍ତ୍ୱକୁ ବୁଝି ଉପଯୁକ୍ତ କର୍ମ କରିବା ହିଁ ପ୍ରତ୍ୟେକ ମାନବ ଜନ୍ମର ମୂଳ ସତ୍ୟ ଅଟେ । କର୍ମ ଯେମିତିକା ହେଉ କର୍ମ ଫଳର ବିଧାନ ସର୍ବଦା ଅକାଟ୍ୟ । ସୁକର୍ମ ପାଇଁ ସୁଫଳ ଏବଂ କୁକର୍ମ ପାଇଁ କୁଫଳ ମିଳେ । ଇହ ଜନ୍ମ, ପରଜନ୍ମ ଓ ପ୍ରତ୍ୟେକଟି ଜନ୍ମରେ କର୍ମ ଫଳର ପ୍ରାପ୍ତି ସୁନିଶ୍ଚିତ । ଜଗତରେ ଯେତେ ଘଟଣା - ଦୁର୍ଘଟଣା ଘଟେ, ଯେତେ ଆତ୍ମୀୟ ସ୍ୱଜନ, ବନ୍ଧୁ - ପରିଜନଙ୍କ ସହ ପରିଚିତ, ଅନ୍ତରଙ୍ଗତା ରହେ, ସେସବୁ କେବଳ କର୍ମଫଳର ବିଧାନ ଅଟେ ।

ପରମାତ୍ମାଙ୍କ ଦ୍ୱାରା ନିର୍ମିତ ଏହି ସୃଷ୍ଟି ବଡ଼ ବିଚିତ୍ର ଅଟେ । ଏହାର ଏକ ବିଶେଷତା ହେଉଛି ଉଭୟ ଦିଗକୁ ନେଇ ଏହା ଗତିଶୀଳ ହୋଇଥାଏ । ବିଭିନ୍ନ ସମ୍ଭାବନା ଭିତରେ କର୍ମ ମାର୍ଗର ଦିଗ ପ୍ରଦର୍ଶିତ ହୋଇଥାଏ । ଗୋଟାଏ ହେଉଛି ସୁକର୍ମର ଦିଗ ଓ ଅନ୍ୟଟି ହେଉଛି କୁକର୍ମ ବା ଅପକର୍ମର ଦିଗ । ପରମାତ୍ମା ଭଗବାନ ଯଦିବା ଉଚିତ କର୍ମ କରିବା ପାଇଁ ଶାସ୍ତ୍ର ମାଧ୍ୟମରେ ମାନବକୁ ଦିଗ୍‌ଦର୍ଶନ ଦେଇଛନ୍ତି ତଥାପି ସମ୍ଭାବନା ଦୃଷ୍ଟିରୁ ଉଭୟ ଦିଗ ମଧ୍ୟରୁ

ଗୋଟାଏ ଦିଗକୁ ଚୟନ କରିବାର ନିଷ୍ପତ୍ତି ବା ସ୍ୱତନ୍ତ୍ରତା କେବଳ ମନୁଷ୍ୟର । ତେଣୁ ସେ ଯଦି ଭଲ ମଣିଷ ହୋଇ ପରମାତ୍ମାଙ୍କ ନିର୍ଦ୍ଦେଶିତ ମାର୍ଗରେ ଯାଇ, ଭଲ କର୍ମ କରି ଜୀବନରେ ପରମାନନ୍ଦ ପ୍ରାପ୍ତ ହେବାକୁ ଚାହେଁ ତେବେ ତାହା ତା'ର ଚୟନ ହୋଇଥାଏ । ଯଦି ମନ୍ଦ କର୍ମ କରି ପତନ ମୁଖକୁ ଯିବାକୁ ଇଚ୍ଛା କରେ ତେବେ ତାହା ମଧ୍ୟ ତା'ର ନିଷ୍ପତ୍ତି । ମନୁଷ୍ୟ ପାଖରେ ସାଧୁ ହେବାର ସମ୍ଭାବନା ବି ଆସେ ଓ ଅସାଧୁ ହେବାର ସମ୍ଭାବନା ମଧ୍ୟ ଆସେ । ରାମ ଆଉ କୃଷ୍ଣ ହେବାର ସମ୍ଭାବନା ମଧ୍ୟ ଆସେ, କଂସ ଆଉ ରାବଣ ହେବାର ସମ୍ଭାବନା ବି ଆସେ । ନିଜକୁ ପ୍ରତିଷ୍ଠିତ କରିବାର ଅଧିକାର ଓ କ୍ଷମତା ନିଜ ପାଖରେ ହିଁ ଉପଲବ୍ଧ । ଯାହା କେବଳ ନିଜ କର୍ମ ଦ୍ୱାରା ସମ୍ଭବ ହୋଇଥାଏ । କିନ୍ତୁ ଉଭୟ କର୍ମ ନିମନ୍ତେ ଫଳ ସ୍ଥିରୀକୃତ । ଏହି କର୍ମ ଫଳ ପ୍ରାପ୍ତି ଜନ୍ମ ଜନ୍ମାନ୍ତରକୁ ଭୋଗ କରିବାକୁ ପଡ଼ିଥାଏ ।

ଲଙ୍କାପତି ରାବଣ ବେଦଜ୍ଞ ବ୍ରାହ୍ମଣ ପଣ୍ଡିତ ତଥା ଦେବ ଦେବ ମହାଦେବଙ୍କର ପରମ ଭକ୍ତ ଥିଲେ । ପୂଜା ପାଠ, କର୍ମ-ଧର୍ମ କରିବାରେ ତାଙ୍କର ଶାନ୍ତ ପ୍ରାୟ ଜୀବନର ଗତି ଥିଲା । ହେଲେ ଅସମ୍ଭବ ଉଦ୍ଦେଶ୍ୟକୁ ସମ୍ଭବ କରିବା ପାଇଁ ଗତିପଥରେ ନୂଆ ସମ୍ଭାବନାର ଆବିଷ୍କାର ହେଲା । ନୂତନ ସମ୍ଭାବନାକୁ ସକ୍ରିୟ କରି ଫଳପ୍ରଦ କରିବାର ଲକ୍ଷ୍ୟ ଉତ୍ପନ୍ନ ହେଲା । ଯେଉଁଥିପାଇଁ ରାବଣ ସ୍ୱୟଂ ସ୍ୱତନ୍ତ୍ର ଥିଲେ । ମାତ୍ର କର୍ମଫଳ ଯେହେତୁ କର୍ମ ଉପରେ ଆଧାରିତ ତାହାର ଭୁକ୍ତ ହେବା ମଧ୍ୟ ସୁନିଶ୍ଚିତ । ଏହି ହେତୁ ରାବଣ କର୍ମର କର୍ମଫଳ ନିଜର ବିନାଶରେ ହିଁ ସ୍ଥିରୀକୃତ ଥିଲା ।

ସମସ୍ତ କର୍ମ ନିର୍ଦ୍ଧାରିତ ସମୟରେ ପୂର୍ଣ୍ଣ ହୋଇଥାଏ ଓ ତାହାର ଫଳପ୍ରାପ୍ତି ମଧ୍ୟ ନିର୍ଦ୍ଧାରିତ ସମୟରେ ହିଁ ହୋଇଥାଏ । ସେଥିପାଇଁ ପ୍ରତୀକ୍ଷା କରିବାକୁ ପଡ଼େ । ଏବେ କରିଦେଲେ ଯେ ଏବେ ସଙ୍ଗେ ସଙ୍ଗେ ତାହାର ଫଳ ମିଳିଯିବ, ଏହା ଭାବିବା ଭୁଲ୍ ଅଟେ । ଈଶ୍ୱର ହିଁ କର୍ମଫଳର ବିଧାନ କରିଥାନ୍ତି । କେଉଁ କର୍ମର ଫଳ କେତେବେଳେ ପ୍ରାପ୍ତି ହେବ ତାହା ଈଶ୍ୱରଙ୍କ ଦ୍ୱାରା ନିର୍ଦ୍ଧାରିତ । ମନୁଷ୍ୟ କେବଳ ନିମିତ୍ତ ମାତ୍ର ଯିଏ ତାଙ୍କ ଇଙ୍ଗିତରେ ଚାଲେ । ସଂସାର ସୃଷ୍ଟିର ନିୟମରେ ପରମେଶ୍ୱରଙ୍କ ବିନା ଅନୁମତିରେ ବୃକ୍ଷଟିଏ ମଧ୍ୟ ଜୀବିତ ହୁଏ ନାହିଁ । ବୀଜଟିଏ ମାଟିରେ ପୋତିଲେ ତାହା ଅଙ୍କୁରିତ ହେବାର ଉପଯୁକ୍ତ ସମୟ ରହିଥାଏ । ସମୟ ଉପଗତ ନ ହେବା ଯାଏଁ ବୃକ୍ଷଟିଏ ବୃଦ୍ଧି ହୁଏ ନାହିଁ କି ଫଳ ମଧ୍ୟ ଦିଏ ନାହିଁ । ତଦନୁରୂପ ବ୍ୟକ୍ତିର କର୍ମ ଫଳର ବିଧାନ ହୋଇଥାଏ । ପରମେଶ୍ୱରଙ୍କ ଆଜ୍ଞାରେ ଏହା ଶାସ୍ତ୍ରାନୁମୋଦିତ ଯେ, କର୍ମ କରି ଚାଲ ଫଳକୁ ଆଶାକର ନାହିଁ । ତାହା ତାଙ୍କର ନିର୍ଦ୍ଦେଶରେ ସମୟାନୁଯାୟୀ ପ୍ରାପ୍ତି ହେବ । ଯେତେ ଜନ୍ମ ଅଗ୍ରସର ହେଉ ପଛେ କର୍ମର ଫଳପ୍ରାପ୍ତି ନିଶ୍ଚିତ ।

କର୍ମ ଏକ ସାଧନା । ଏହି ସାଧନା ମାର୍ଗରେ କର୍ମ କଠିନ ହୋଇପାରେ କିମ୍ବା ସହଜ ହୋଇପାରେ । କର୍ମ ସାଧନା ପାଇଁ ବିଶେଷ ତତ୍ତ୍ୱଗୁଡ଼ିକ ହେଉଛି ପ୍ରେମ, ଇଚ୍ଛାଶକ୍ତି, ନିଷ୍ଠା, କ୍ଷମତା, ସତ୍ ଉଦ୍ଦେଶ୍ୟ, ବିବେକ ଓ ଜ୍ଞାନ । କର୍ମ କ୍ଷୁଦ୍ର ହେଉ ଅବା ବୃହତ୍ ହେଉ ସାଧନା ମାର୍ଗରେ ପ୍ରତ୍ୟେକ କର୍ମ ପାଇଁ ଅନ୍ତର୍ମନର ପ୍ରେମ ଭାବ ଓ ଇଚ୍ଛାଶକ୍ତି ରହିବା ଆବଶ୍ୟକ । ଗଭୀର ଇଚ୍ଛାଶକ୍ତି ଓ ପ୍ରେମ ଭାବ ରଖି କର୍ମ ସମ୍ପାଦନ କଲେ ଅବଶ୍ୟ ସିଦ୍ଧି ଲାଭ ହୁଏ । କର୍ମ ମାର୍ଗରେ ଗତି କଲାବେଳେ ଘାତ ପ୍ରତିଘାତ ଆସିବା ଅବଶ୍ୟମ୍ଭାବୀ । ମାତ୍ର ଏହାକୁ ଏଡ଼ାଇ କର୍ମ ମାର୍ଗରେ ଅଗ୍ରସର ହେବାର କ୍ଷମତାକୁ ନିଜ ଭିତରେ ସୃଷ୍ଟି କରିବା ହିଁ କର୍ମ ସାଧକର ବିଚାର ଅଟେ । ଏହା ବ୍ୟତୀତ ମନୁଷ୍ୟ ଯେଉଁ କର୍ମ କରୁ ସେଥିରେ ନିଷ୍ଠା ଓ ସତ୍ ଉଦ୍ଦେଶ୍ୟ ରହିବା ସାଧକର ମୂଳ ଲକ୍ଷ୍ୟର ଅନ୍ତର୍ଭୁକ୍ତ । କାରଣ ନିଷ୍ଠା ଭାବନା ପ୍ରତ୍ୟେକ କର୍ମକୁ ସମ୍ପୂର୍ଣ୍ଣ କରିବାରେ ମନୋବଳକୁ ସୁଦୃଢ଼ କରିଥାଏ ଏବଂ ସତ୍ ଉଦ୍ଦେଶ୍ୟ ଦ୍ୱାରା ଐହିକ ଓ ପରମାର୍ଥିକ ମଙ୍ଗଳ ସାଧନ ହୋଇଥାଏ । କର୍ମ ସାଧନାରେ ବିବେକ ଓ ଜ୍ଞାନ ହେଉଛି ଆଉ ଦୁଇଟି ତତ୍ତ୍ୱ । ବିବେକାନୁମୋଦିତ କର୍ମ ଉପଯୁକ୍ତ ମାର୍ଗ ଦର୍ଶନ କରାଏ । ଫଳତଃ, କର୍ମ ସାଧକକୁ ବିବେକୀ ମଣିଷର ପରିଚୟ ଦେଇଥାଏ । କର୍ମ ଆଧାରରେ ଯାହା କରାଯାଏ ସେଥିପାଇଁ ଜ୍ଞାନ ମଧ୍ୟ ପ୍ରଭୂତ ଭାବେ ସହାୟକ ହୋଇଥାଏ । ଯେହେତୁ ଜ୍ଞାନ

ମାନସିକତାକୁ ଗତିଶୀଳ କରିଥାଏ ଏବଂ ପର୍ଯ୍ୟାପ୍ତ ବୁଦ୍ଧି ଓ କୌଶଳ ମଧ୍ୟ ଯୋଗାଏ ।

କର୍ମ ସାଧନା ମାର୍ଗରେ ହିଂସା, ଦ୍ୱେଷ, ପରଶ୍ରୀକାତରତା, ମିଥ୍ୟା, ପ୍ରବଞ୍ଚନା, ଘୃଣା ପ୍ରଭୃତି ବି ଗର୍ହିତ କର୍ମ । ମାତ୍ର ପ୍ରେମ, ତ୍ୟାଗ, ସତ୍ୟ, ସମ୍ବେଦନା, ସହଯୋଗ ଓ ସହାନୁଭୂତି ଆଦି ବିହିତ କର୍ମ । ତତ୍ତ୍ୱଗୁଡ଼ିକ ଆଧାରରେ କର୍ମ କରି ଚାଲିଲେ କେବଳ ପରମାତ୍ମା ଭଗବାନଙ୍କର କୃପା ଓ ଆଶୀର୍ବାଦ ପ୍ରାପ୍ତି ହୋଇନଥାଏ ବରଂ ଏହା ସହିତ ମଣିଷ ଆତ୍ମତୃପ୍ତି ଲାଭ କରିଥାଏ ।

ସୃଷ୍ଟି ସଂସ୍ଥାନରେ ସାଧନାର ଅନ୍ୟ ଏକ ମାର୍ଗ ହେଉଛି ଧର୍ମ ମାର୍ଗ । ଯାହା ବିନା ମନୁଷ୍ୟର ଗତି ନାହିଁ କି ମୁକ୍ତି ନାହିଁ । ଏହି ଧର୍ମ ମାର୍ଗ ହେଉଛି ଅଧ୍ୟାତ୍ମ ମାର୍ଗ । ଏହି ମାର୍ଗରେ ବ୍ୟକ୍ତି ଆତ୍ମଜ୍ଞାନ ଲାଭ କରିଥାଏ । ଏହି ମାର୍ଗର ଅନୁସରଣ କରିବା ମଧ୍ୟ ପରମେଶ୍ୱରଙ୍କ ଅଭିବ୍ୟକ୍ତି ଅଟେ । ମାତ୍ର ଧର୍ମ ମାର୍ଗର ସାଧନା ଦୁଇ ପ୍ରକାର ହୋଇଥାଏ । ଯଥା – ସକାମ ସାଧନା ଓ ନିଷ୍କାମ ସାଧନା । ଉଭୟ ସକାମ ଓ ନିଷ୍କାମ ସାଧନାରେ ଫଳ ପ୍ରାପ୍ତି ହେଲେ ହେଁ ମୁଖ୍ୟତଃ ନିଷ୍କାମ ସାଧନା କେବଳ ବ୍ରହ୍ମ ସତ୍ତାର ଉପଲବ୍ଧି ଓ ପରମାତ୍ମାଙ୍କ ନିକଟରେ ପହଞ୍ଚିବାର ସାଧନା ହୋଇଥାଏ । ଏହି ନିଷ୍କାମ ସାଧନାର ଅନ୍ତିମ ପର୍ଯ୍ୟାୟକୁ ସମାଧି କିମ୍ବା ବ୍ରହ୍ମରେ ଲୀନ ବୋଲି କୁହାଯାଏ ।

ଧର୍ମ ମାର୍ଗର ସାଧନାରେ ଯେଉଁ ତତ୍ତ୍ୱଗୁଡ଼ିକ ସନ୍ନିହିତ ଥାଏ, ସେଗୁଡ଼ିକ ହେଉଛି ଭକ୍ତି – (ପ୍ରାର୍ଥନା, ଧ୍ୟାନ, ଯୋଗ, ଭଜନ, କୀର୍ତ୍ତନ ଓ ସମର୍ପଣ ଇତ୍ୟାଦି ଅନ୍ତର୍ଭୁକ୍ତ), ପ୍ରେମ, ସଦାଚାର, ନିଷ୍କପଟତା, ସରଳତା, ସଂଯମତା, ବିନମ୍ରତା, ନିରହଂକାରିତା ଓ କର୍ତ୍ତବ୍ୟପରାୟଣତା । ସାଧନା ସକାମ ହେଉ ଅବା ନିଷ୍କାମ ହେଉ ଉଭୟ ସାଧନାରେ ଈଶ୍ୱର ଭକ୍ତି ପ୍ରମୁଖ ଅଟେ । ଧର୍ମ ମାର୍ଗର ସାଧନାରେ ଭକ୍ତି ହେଉଛି ଏକ ସହଜ ଓ ସରଳ ତତ୍ତ୍ୱ । ଯାହାକୁ ଆଧାର କରି ଧର୍ମାଚରଣ କରାଯାଏ । ଏହା କୌଣସି ବ୍ୟକ୍ତି ପକ୍ଷରେ ଅସମ୍ଭବ ହୋଇନଥାଏ । ଭକ୍ତି ଉଭୟ ସକାମ ଓ ନିଷ୍କାମ ସାଧନା ପାଇଁ ଉଦ୍ଦିଷ୍ଟ । ପ୍ରେମ ଏଭଳି ଏକ ତତ୍ତ୍ୱ, ଯାହା ଉଭୟ କର୍ମ ସାଧନା ଓ ଧର୍ମ ସାଧନାରେ ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ଧର୍ମ ମାର୍ଗରେ ଏହି ପ୍ରେମଭାବ ସାଧକ ପାଇଁ ସବୁଠାରୁ ବୃହତ୍ତର ଶକ୍ତି ଅଟେ । ସଦାଚାର ଏବଂ ସଂଯମତା ଧର୍ମ ସାଧନା ମାର୍ଗରେ ଦୁଇଟି ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ଅଟେ । ଏହା ସାଧକକୁ ପବିତ୍ରତାର ପୂର୍ଣ୍ଣ ଶକ୍ତି ପ୍ରଦାନ କରେ । ସାଧନା ମାର୍ଗରେ କର୍ତ୍ତବ୍ୟପରାୟଣତା ବିଶେଷ ଜରୁରୀ ତତ୍ତ୍ୱ ହୋଇଥାଏ । କର୍ତ୍ତବ୍ୟଠାରୁ ପଳାୟନ କରି କୌଣସି ଧର୍ମ ସାଧନା କରାଯାଇପାରେ ନାହିଁ । ଉପଯୁକ୍ତ କର୍ତ୍ତବ୍ୟ କରିବା ହିଁ ଧର୍ମର ମୂଳ ମର୍ମ ହୋଇଥାଏ । ନିଷ୍କପଟତା ଓ ନିରହଂକାରିତା ଧର୍ମ ସାଧନାରେ ଏକାନ୍ତ ଅପରିହାର୍ଯ୍ୟ । ଅନ୍ତଃକରଣରେ କପଟତା, କୁଟିଳତା ପରିପୂର୍ଣ୍ଣ ଥାଇ ଉପର ଠାଉରିଆ ଧର୍ମ ଆଚରଣରେ କୌଣସି ମହାନତା ରହେ ନାହିଁ । ବରଂ ଏହା ସାଧନା ମାର୍ଗରେ ଏକ ବିରାଟ ପ୍ରତିବନ୍ଧକ । ଯାହା ସାଧନାକୁ କେବେ ପୂର୍ଣ୍ଣତା ପ୍ରଦାନ କରେ ନାହିଁ । ନିରହଂକାରିତା ପ୍ରତ୍ୟେକ ସାଧକର ଅନ୍ତର୍ନିହିତ ଗୁଣ ହେବା ଆବଶ୍ୟକ । କାରଣ ଅହଂଭାବ ଧର୍ମରେ ସଂକୀର୍ଣ୍ଣତା ଭରିଦିଏ । ଏଥିରୁ କ୍ରୋଧ, ଲୋଭ, ମୋହ ଜାତ ହୋଇ ସଂକୀର୍ଣ୍ଣମନା ହେବା ପାଇଁ ପଥ ଉନ୍ମୁକ୍ତ ହୋଇଯାଏ । ଫଳରେ ଧର୍ମ ମାର୍ଗରେ ସାଧନା ପାଇଁ ବ୍ୟତିକ୍ରମ ସୃଷ୍ଟି ହୁଏ । ଧର୍ମର ଆଶ୍ରିତ ବ୍ୟକ୍ତି ସରଳ ଓ ବିନମ୍ର ହେବା ଦ୍ୱାରା ଧୈର୍ଯ୍ୟ ଓ ସାହସ ବୃଦ୍ଧି ହୋଇଥାଏ । ପରମାତ୍ମାଙ୍କ ପ୍ରଦର୍ଶିତ ପଥ ଅନୁସରଣରେ ସମସ୍ତ ନିଗୂଢ଼ ରହସ୍ୟ ବୁଝିବାରେ ସରଳ ବୋଧ ହୋଇଥାଏ । ତେଣୁ ଏହି ଦୁଇ ତତ୍ତ୍ୱର ବିଶେଷତ୍ୱ ରହିଛି ସାଧନା ନିମନ୍ତେ ।

ଧର୍ମ ଅର୍ଥାତ୍ ଅଧ୍ୟାତ୍ମ ମାର୍ଗରେ ଗତି କରୁଥିବା ବ୍ୟକ୍ତି ପରମାତ୍ମାଙ୍କ ସତ୍ତାକୁ ଉପଲବ୍ଧି କରି ତାଙ୍କ ସମୀପବର୍ତ୍ତୀ ହେବାର ଯେଉଁ ଗଭୀର ସାଧନା କରେ ସେତେବେଳେ ସେ ମନର ବହୁ ଊର୍ଦ୍ଧ୍ୱକୁ ଚାଲିଯାଏ । ସଂସାରରେ ରହି ମଧ୍ୟ ତାକୁ ସମସ୍ତ କାମନା, ବାସନା, ଲୋଭ, ମୋହ କବଳିତ କରିପାରେ ନାହିଁ । ଏହା ହିଁ ହେଉଛି ନିଷ୍କାମ ସାଧନା । ନିଷ୍କାମ ସାଧନାରେ ସାଧକ ତ୍ରିଗୁଣାତୀତ ଅର୍ଥାତ୍ ସତ୍ତ୍ୱ, ରଜ ଓ ତମ ଆଦି ତ୍ରିଗୁଣକୁ ଅତିକ୍ରମ କରି ପରମାତ୍ମା



ତତ୍ତ୍ୱକୁ ପ୍ରାପ୍ତ କରିଥାଏ । ସତ୍ତ୍ୱ ଗୁଣ-ନିର୍ମଳ ଓ ପ୍ରକାଶିତ ଅଟେ । ମାତ୍ର ଏହା ସୁଖ ଓ ଜ୍ଞାନର ଆସକ୍ତି ଦ୍ୱାରା ମନୁଷ୍ୟକୁ ଆବଦ୍ଧ କରିଥାଏ । ରଜୋଗୁଣ- ତୃଷ୍ଣା ଓ ଆସକ୍ତିର ସୃଷ୍ଟି କର୍ତ୍ତା । ଏହା କର୍ମର ଆସକ୍ତି ଦ୍ୱାରା ବନ୍ଧନଯୁକ୍ତ କରିଥାଏ । ତମୋ ଗୁଣ ଏହାର ସୃଷ୍ଟି ଅଜ୍ଞାନରୁ ହୋଇଥାଏ । ଏହା ପ୍ରମାଦ ଓ ଆଳସ୍ୟ ଦ୍ୱାରା ମନୁଷ୍ୟକୁ ଆବଦ୍ଧ କରି ରଖେ । ଏହି ଗୁଣତ୍ରୟର ଊର୍ଦ୍ଧ୍ୱକୁ ଯିବା ପରେ ହିଁ ମନୁଷ୍ୟ ବନ୍ଧନ ମୁକ୍ତ ହୋଇଯାଏ । ପରମାତ୍ମା ତତ୍ତ୍ୱକୁ ବୁଝିପାରେ । ଏହି ହେତୁ ସୁଖ-ଦୁଃଖ, ପ୍ରିୟ-ଅପ୍ରିୟ ଓ ନିନ୍ଦା – ସ୍ତୁତି ଆଦିରେ ସମଭାବ ରଖୁଥିବା ବ୍ୟକ୍ତି ଗୁଣାତୀତ ହୋଇଥାଏ । ତ୍ରିଗୁଣକୁ ଅତିକ୍ରମ କରି ପରମ ସାଧକ ପାଲଟେ । ଶ୍ରୀମଦ୍ ଭଗବତ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଏଇଭଳି କିଛି ତତ୍ତ୍ୱ ବୁଝାଇଛନ୍ତି ଏହି ଗୁଣତ୍ରୟର ଜ୍ଞାନ ଦେବା ଉଦ୍ଦେଶ୍ୟରେ ।

ପରମାତ୍ମାଙ୍କ ସହ ଆତ୍ମସାକ୍ଷାତ୍କାର ପ୍ରତ୍ୟେକ ନିଷ୍କାମ ସାଧକର ପରମ ଓ ଚରମ ଲକ୍ଷ୍ୟ ହୋଇଥାଏ । ଯେତେବେଳେ ସାଧକ ଧ୍ୟାନ ଦ୍ୱାରା ଧ୍ୟେୟରେ ପୂର୍ଣ୍ଣତଃ ବିଲୀନ ହୋଇଯାଏ, ସମାହିତ ହୋଇଯାଏ ଓ ତା'ଭିତରେ ଚିତ୍ତର ନିଜ ସ୍ୱରୂପ ଶୂନ୍ୟ ପ୍ରାୟ ହୋଇଯାଏ, ସମସ୍ତ ଦ୍ୱୈତ ଭାବନା ସମାପ୍ତ ହୋଇଯାଏ ସେତେବେଳେ ସେହି ଧ୍ୟାନ ସମାଧିରେ ପରିଣତ ହୋଇଯାଏ । ଚିତ୍ତର ପରମ ଆନନ୍ଦମୟ, ଚୈତନ୍ୟମୟ ଓ ସତ୍ୟମୟ ଅବସ୍ଥାର ନାମ ଏହି ସମାଧି । ଏହି ଅବସ୍ଥାରେ ନିଷ୍କାମ ସାଧକଟିଏ କେବଳ ପରଂବ୍ରହ୍ମ ପରମେଶ୍ୱରଙ୍କ ଅନୁଭୂତି ବ୍ୟତୀତ ଅନ୍ୟ କୌଣସି ଥିରେ ଲୟ ରଖେ ନାହିଁ । ଅର୍ଥାତ୍ ସାଧକ ଓ ପରମେଶ୍ୱରଙ୍କ ଭିତରେ ଏକତ୍ୱ ଭାବର ପ୍ରକାଶ ହୋଇଥାଏ ।

ସୃଷ୍ଟି ସଂସ୍ଥାନରେ ରହିଥିବା ସାଧନାର ଦୁଇଟି ମାର୍ଗ ସଂସାର ପାଇଁ ପୂର୍ଣ୍ଣ ମହତ୍ତ୍ୱ ରଖେ । ଉଭୟ କର୍ମ ଓ ଧର୍ମ ଦୁଇଟା ଯାକ ମାର୍ଗ ପାଇଁ ସାଧନା ଜଟିଳ ଓ ଗୁରୁତ୍ୱପୂର୍ଣ୍ଣ ଅଟେ । ସାଧନାର ମାର୍ଗ ହେଉଛି ଆତ୍ମଦର୍ଶୀ ହେବାର ମାର୍ଗ ଅଟେ । ଜ୍ଞାନ ଚକ୍ଷୁ ଉନ୍ମୀଳିତ ହେବା ପରେ ସମସ୍ତ ଅଜ୍ଞାନ ରୂପକ ଅନ୍ଧକାର ଦୂରୀଭୂତ ହୁଏ । ପ୍ରତ୍ୟେକ କର୍ମ ଓ ଧର୍ମରେ କେବଳ ପରମାତ୍ମା ଈଶ୍ୱର ହିଁ ଦୃଶ୍ୟମାନ ହୁଅନ୍ତି ପ୍ରତିଟି କ୍ଷଣରେ ।

ସଂସାର ସର୍ବଦା ପରିବର୍ତ୍ତନଶୀଳ ହୋଇଥାଏ । ମାତ୍ର ଏହାର ପ୍ରବାହ କେବେ ଶେଷ ହୁଏ ନାହିଁ । ନିରନ୍ତର ପରିବର୍ତ୍ତନ ସତ୍ତ୍ୱେ ମଧ୍ୟ ଏହାର କୌଣସି କ୍ଷୟ ଅବା ଅନ୍ତ ନ ହେବା କେବଳ ଐଶ୍ୱରିକ ଶକ୍ତି ଦ୍ୱାରା ପରିଚାଳିତ ନିୟମ ବ୍ୟତୀତ ଅନ୍ୟ କିଛି ନୁହେଁ । କାରଣ ମନୁଷ୍ୟ ଜୀବନର ସୃଷ୍ଟି ପରମେଶ୍ୱରଙ୍କ ଦ୍ୱାରା ହୋଇ ଶେଷ ମଧ୍ୟ ତାଙ୍କ ଦ୍ୱାରା ହିଁ ହୋଇଥାଏ । ଯାହା ଏହାର ମଧ୍ୟଭାଗରେ ଉପସ୍ଥିତ, ତାହା ହେଲା – ସଂସାର । ଯେଉଁଠାକୁ ପରମାତ୍ମା ପଠାଇଥାନ୍ତି କେବଳ ଧର୍ମ ଓ କର୍ମ କରିବା ଉଦ୍ଦେଶ୍ୟରେ । ଏହିପରି ସଂସାର ଚକ୍ର ଘୂରୁଥାଏ ପରମେଶ୍ୱରଙ୍କ ନିର୍ଦ୍ଦେଶରେ ।

ପ୍ଲଟ୍ ନଂ-୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା
ଭୁବନେଶ୍ୱର – ୧୮



# ଗଣମାନସରେ ଗଣକବି ବୈଷ୍ଣବ ପାଣି

**କବିତା ଦେବୀ**

ଗଣକବି ବୈଷ୍ଣବ ପାଣି ଗଣମାନସର କାଳଜୟୀ ସ୍ରଷ୍ଟା । ତାଙ୍କ ସୃଷ୍ଟିର ସମ୍ଭାର କେବଳ ଉତ୍କଳବାସୀଙ୍କ ପାଇଁ ନୁହେଁ, ସମଗ୍ର ଭାରତୀୟ ସାହିତ୍ୟର ଶ୍ରେଷ୍ଠ ଉପାଦାନ । ସାହିତ୍ୟ ସୁଦୃଢ଼ କରିଥାଏ ବିଜ୍ଞାନର ପୃଷ୍ଠଭୂମିକୁ । ସାହିତ୍ୟ ସାଧନାର ଚିନ୍ତା, ଚେତନା କଳ୍ପନାର ବିକାଶକୁ ଶ୍ରୀ ବୃଦ୍ଧି କରି ସତ୍ୟ ସଂଧାନର ପରିପୁଷ୍ଟ କରିବା କ୍ଷମତାକୁ ବହୁଗୁଣିତ କରିବାର ପ୍ରୟାସ ଯେଉଁ ସ୍ରଷ୍ଟାମାନଙ୍କ ପାଖରେ ରହିଛି ସେମାନଙ୍କ ମଧ୍ୟରୁ ଗଣକବି ବୈଷ୍ଣବ ପାଣି ଅନ୍ୟତମ । ଗଣମାନସରେ ଗରିମାମୟ ଭାବନାଗୁଡ଼ିକୁ ତାଙ୍କର ସୁଆଙ୍ଗ, ଗୀତାଭିନୟ, ଗୀତିନାଟ୍ୟ, ଭଜନ, ଜଣାଣ, ଉପନ୍ୟାସ, ଆତ୍ମଜୀବନୀ ଭିତରେ ସାରା ଭାରତବାସୀଙ୍କୁ ବାଣ୍ଟିବା ପାଇଁ ଯେଭଳି ଦୃଢ଼ ପ୍ରୟାସ କରିଛନ୍ତି ତାହା ବିଶ୍ୱବିଦିତ ।



ଦୁଃଖକଷ୍ଟ ଯନ୍ତ୍ରଣା ଅଭାବ ଅସୁବିଧା ହେଉଛି କବିଙ୍କର ଆଜନ୍ମ ସହଚର । କେବଳ ଦୁଃଖ ଯନ୍ତ୍ରଣାରୁ ସୃଷ୍ଟି କରିଥିବା ଲେଖନୀମୁନକୁ ସୁଦୃଢ଼ କରି ଅନେକ ଆଗକୁ ଚାଲି ଜନସମାଜକୁ ଅଶେଷ ଶିକ୍ଷା, ସଂସ୍କୃତି ଦାନ କରି ଯାଇଛନ୍ତି । ସେ ଅନୁଭବ କରିଥିଲେ, ସୁଖ ସମୃଦ୍ଧି ମଣିଷକୁ ବଡ଼ କରି ନଥାଏ । କର୍ମ, ଜ୍ଞାନ, ସୁଦୃଢ଼ ଚନ୍ତାଧାରା ଉଚ୍ଚ ମନୋବଳ ପାଇଁ ମନୁଷ୍ୟ ଉଚ୍ଚ ଆସନ ଲାଭ କରିଥାଏ । ତାଙ୍କର ସମସ୍ତ ସାହିତ୍ୟ ଅନୁଧ୍ୟାନ କଲେ ଏହା ଅନୁମିତ ହୁଏ ଯେ, ଆମ ଉତ୍କଳ ସାହିତ୍ୟର କାବ୍ୟ ଶୈଳୀକୁ ଦେଖିଲେ, କବି ଅନ୍ୟ କୌଣସି ସାହିତ୍ୟ ସାଧକଙ୍କ ସାଧନା ତଥ୍ୟର ଅନୁକରଣରେ ନିଜକୁ ସାମିଲ ନ କରି ତାଙ୍କର ସ୍ୱତନ୍ତ୍ର ଶୈଳୀ ପାଇଁ ଆମ ସାହିତ୍ୟ ଜଗତରେ ନିଜର ଭୂମିକାକୁ ସ୍ୱତଃପ୍ରବୃତ୍ତ ଭାବେ ଗଢ଼ି ତୋଳିଥିଲେ ।

ଗଣକବି ବୈଷ୍ଣବ ପାଣି ପବିତ୍ର କୁମାର ପୂର୍ଣ୍ଣିମା ଦିନ କଟକ ଜିଲ୍ଲା ମାହାଙ୍ଗା ଥାନା ଅନ୍ତର୍ଗତ କୋଠପଦା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଏକ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରି ଦାରିଦ୍ର୍ୟତା ପାଇଁ ଘୋର ଅଭାବ ଅନାଟନରେ ଜୀବନ ଅତିବାହିତ କରିଥିଲେ । ପିଲାଦିନେ ଗାଈ ଜଗୁଆଳୀ କାମ କରିବା ସହିତ ଫୁଲ ତୋଳି ମାଳିକୁ ଦେବା, ଛାତ୍ରାବାସରେ ରୋଷେଇ କରି, ସେ ମାତ୍ର ଷଷ୍ଠଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ଦାରିଦ୍ର୍ୟର କଷଣକୁ ସହ୍ୟକରି ଜୀବନ ଜଂଜାଳ ଭିତରେ ଶାସ୍ତ୍ର ଶିକ୍ଷା ଏବଂ



ସାହିତ୍ୟ ସାଧନା ପାଇଁ ସେ ସଦାସର୍ବଦା ଚେଷ୍ଟିତ ଥିଲେ । କଠୋର ମନୋବଳ ନିଷ୍ଠା ଯୋଗୁଁ ସେ ତାଙ୍କ ସାଧନାରେ ସଫଳ ହୋଇ ଉତ୍କଳର ବାଣୀ ଭଣ୍ଡାରକୁ ଋଦ୍ଧିମନ୍ତ କରିପାରିଥିଲେ । ତାଙ୍କ ରଚିତ ସୁଆଙ୍ଗ, ଗୀତାଭିନୟ, ଗୀତିନାଟ୍ୟଗୁଡିକ ଆମ ପାଇଁ ଗର୍ବ ଗୌରବ ଏବଂ ଉତ୍କଳ ସାହିତ୍ୟ ଜଗତକୁ ଅମୂଲ୍ୟ ରତ୍ନ ଅଟେ ।

ଗଣକବି ବୈଷ୍ଣବ ପାଣିଙ୍କ ଆଦ୍ୟ ଦୃଶ୍ୟ କାବ୍ୟଗୁଡିକ ହେଉଛି ସୁଆଙ୍ଗ । ସେ ତାଙ୍କ ଲେଖନୀକୁ ସୁଦୃଢ଼ କରି ବ୍ରଜଲୀଳା ସୁଆଙ୍ଗ, ଧ୍ରୁବଚରଣ ସୁଆଙ୍ଗ, ଦାନବୀର ହରିଶ୍ଚନ୍ଦ୍ର, ସାବିତ୍ରୀ ସତ୍ୟବାନ, ଦକ୍ଷଯଜ୍ଞ ସୁଆଙ୍ଗ ପ୍ରଭୃତି ଅନେକ ବହି ରଚନା କରିଥିଲେ । ଏଥିରେ ଚରିତ୍ରମାନେ କେବଳ ଗୀତରେ ହିଁ ଦର୍ଶକମାନଙ୍କୁ ମୁଗ୍ଧ କରନ୍ତି । ଗଣକବି ବୈଷ୍ଣବ ପାଣି ନିଜେ ଲେଖକ, ନିର୍ଦ୍ଦେଶକ ଓ ବିଭିନ୍ନ ନାୟକ ଭୂମିକାରେ ଅଭିନୟ କରି ଦର୍ଶକମାନଙ୍କୁ ଆନନ୍ଦ ଦେଉଥିଲେ । ତାଙ୍କ ରଚନାକୁ ଅଧିକ ରୁଚିପୂର୍ଣ୍ଣ କରିବାକୁ ବ୍ୟବହାରିକ ପରିବର୍ତ୍ତନକୁ ସେ ନୂଆ ରୂପ ଦେଇ ସମକାଳୀନ ରଚନାଗୁଡିକୁ ଗୀତାଭିନୟ ନାମରେ ନାମିତ କଲେ । ଏଥିରେ ଗୀତ ସହିତ କଥୋପକଥନ ରହିବା ଫଳରେ ଏହା ଲୋକପ୍ରିୟ ହୋଇପାରିଲା । ଅଧିକ ଲୋକଲୋଚନକୁ ଆସିବା ପାଇଁ ସେ ତାଙ୍କ ଲେଖନୀରୁ ସୃଷ୍ଟି କରିଥିଲେ ଅନେକଗୁଡିଏ ଗୀତ ଅଭିନୟ ଯଥା- ପ୍ରହଲ୍ଲାଦ ଚରିତ, ଲକ୍ଷ୍ମୀପୂଜା, ପାରିଜାତ ହରଣ, ଯଯାତୀକେଶରୀ, କାଳିଦାସ, କୁସୁମବତୀ, ସୁଶୀଳ କୁମୁଦ ଇତ୍ୟାଦି ଅନେକ ଗୀତାଭିନୟ ଦ୍ୱାରା ଜନସମାଜକୁ ବାର୍ତ୍ତା ଦେଇଥିଲେ । ଏହି ଗୀତାଭିନୟଗୁଡିକୁ ଅବଲୋକନ କଲେ ସ୍ପଷ୍ଟ ଅନୁମିତ ହୁଏ ଯେ, ତାଙ୍କ ରଚନାରେ ଗୀତ ପୂର୍ବରୁ ଏବଂ ପରେ ସଂଳାପଗୁଡିକ ଦର୍ଶକମାନଙ୍କୁ ଖୁବ୍ ଆନନ୍ଦ ମୁଖର କରେ । ସୁଆଙ୍ଗ ଏବଂ ଗୀତାଭିନୟ ଯୁଗର ଅବସାନ ଘଟି କବିଙ୍କ କଲମରୁ ଝରିପଡିଲା ଅନେକଗୁଡିଏ ଗୀତିନାଟ୍ୟ । ଏହି ଶ୍ରୁତିମଧୁର ଶାଣିତ ଗୀତିନାଟ୍ୟ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ବଳବତ୍ତର ରହିପାରିଥିଲା । ଗୀତିନାଟ୍ୟଗୁଡିକ ମଧ୍ୟରେ – ରାମବନବାସ, ରଂଗସଭା, କଂସବଧ, ରାବଣବଧ, ବସ୍ତ୍ରହରଣ, ଇନ୍ଦ୍ରଜିତ ବଧ, ଅଶ୍ୱମେଧ ଯଜ୍ଞ, ଭୀଷ୍ମ ଶରଶଯ୍ୟା, ଅଭିମନ୍ୟୁ ବଧ, କର୍ଣ୍ଣାର୍ଜ୍ଜୁନ, ବାଣା ପରାଜୟ, ମହିଷାସୁର ବଧ, ଅମର ମୋହିନୀ, ମଳୟ ବସନ୍ତ, ଅହିମାଣିକ, ମୋହନବଂଶୀ ଏହିପରି ଏକଶହ କୋଡିଏରୁ ଊର୍ଦ୍ଧ୍ୱ ଗୀତିନାଟ୍ୟ ରଚନା କରି ରାଜ୍ୟ ଏବଂ ରାଜ୍ୟ ବାହାରେ ମାନ ମର୍ଯ୍ୟାଦା ସମ୍ମାନ ଲାଭ କରିଥିଲେ । ସମସ୍ତ ଗୀତିନାଟ୍ୟଗୁଡିକୁ କାବ୍ୟଶାସ୍ତ୍ରର ନୂତନ ଶୈଳୀରେ ପ୍ରଦର୍ଶନ କରି ଦର୍ଶକ ତଥା ଜନମାନସକୁ ଅପାର ଆନନ୍ଦ ଦେବାକୁ ପ୍ରୟାସ କଲେ । ସମସ୍ତଙ୍କ ଆନନ୍ଦ, ସ୍ନେହ ଆଶିଷ ଦ୍ୱାରା କବି ସଫଳତାର ଶୀର୍ଷ ସ୍ଥାନରେ ପହଞ୍ଚି ପାରିଥିଲେ । କାରଣ ଗୀତିନାଟ୍ୟଗୁଡିକର ସଂଗୀତ ଅତ୍ୟନ୍ତ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଏବଂ ଭକ୍ତି ସ୍ନେହ ପ୍ରେମରେ ଆବୃତ ।

ସଂଳାପର ଶବ୍ଦ ଚୟନ ଏବଂ କାବ୍ୟ ରଚନାର ଶୈଳୀ ଚମତ୍କାର ଏବଂ ଭାବ ବିହ୍ୱଳ ଥିଲା । କେଉଁ ବୀର ଚରିତ୍ରରେ ଖୁସି ରସପୂର୍ଣ୍ଣ କଥୋପକଥନ ପୂରି ରହିଥିଲା ବେଳେ କେଉଁ ଚରିତ୍ରରେ ପ୍ରେମ ପ୍ରଣୟର ପରିପୂର୍ଣ୍ଣ ସଂଳାପ ଦର୍ଶକମାନଙ୍କୁ ଆଦୃତ କରୁଥିଲା ।

ମହାଭାରତ, ରାମାୟଣ କିମ୍ବା ପୁରାଣ ବା କାଳ୍ପନିକ ଚରିତ୍ରର ଅତୀତକୁ ଇଙ୍ଗିତ କରି, ବର୍ତ୍ତମାନ ଘଟଣାକୁ ରଂଗମଞ୍ଚରେ ଉପସ୍ଥାପନ ଦ୍ୱାରା ଦର୍ଶକମାନଙ୍କ ମନକୁ କବି ନିଶ୍ଚୟ କିଣିପାରିଛନ୍ତି ।

ଏହାବ୍ୟତୀତ କବି ଅନ୍ୟାନ୍ୟ ଗୀତିପୁସ୍ତକ ରଚନା କରିଥିଲେ, ଯଥା- ବାରମାସୀ ଗୀତ, ଦୁନିଆ ଗୀତ, ଖନାବଚନ, ରସକେଳି, ମୋ ଟଙ୍କା, ଧୈର୍ଯ୍ୟଧର ପ୍ରଭୃତି । ପୁନଶ୍ଚ ପାରିବାରିକ ତଥା ସାଂସାରିକ ଜୀବନଧାରାକୁ ଅନୁସରଣ କ୍ରମେ ହାସ୍ୟରସ ପୂର୍ଣ୍ଣ ଗୀତ ଚରନା କରି ନାଟ୍ୟଜଗତ ତଥା ଜନସମାଜକୁ ଆନନ୍ଦ ଉପହାର ପ୍ରଦାନ କରିଛନ୍ତି । ଯଥା- ବାବାଜୀ-ମାତାଜୀ, ଚାକର-ଚାକରାଣୀ, ଧୋବା-ଧୋବଣୀ, ଭଣ୍ଡାରୀ-ଭଣ୍ଡାରୁଣୀ, କେଳା-କେଳୁଣୀ, ଗୋପାଳ ଭାଣ୍ଡ ପ୍ରହସନ ଇତ୍ୟାଦି ।

ପୁନଶ୍ଚ ସାମ୍ପ୍ରତିକ ଘଟଣାବଳୀକୁ କେନ୍ଦ୍ରକରି କବି ଲେଖନୀ ଚାଳନା ଦ୍ୱାରା ଅନେକ ଉପଦେଶାତ୍ମକ ସୃଷ୍ଟି କରିପାରିଥିଲେ ଯଥା- ଓଡିଆ ନାରୀଶିକ୍ଷା, ଉତ୍କଳମଣି ଗୋପବନ୍ଧୁଙ୍କ ଶୋକ, ମୂଲିଆ ପୁଅ, ଉତ୍କଳତୀର୍ଥ ମାହାତ୍ମ୍ୟ,



ଗାନ୍ଧୀ ବିୟୋଗ ଉତ୍କଳ ମାତା ଶୋକ ପ୍ରଭୃତି ଗୀତ ରଚନା କରି ସାରସ୍ୱତ ବାଣୀ ଭଣ୍ଡାରକୁ ଅମୂଲ୍ୟ ଉପହାର ପ୍ରଦାନ କରିଯାଇଛନ୍ତି । ପୁରୀର ମୁକ୍ତ ମଞ୍ଚରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ସଂଗୀତ ପରିବେଷଣ ଦ୍ୱାରା ଦେଶପ୍ରେମୀର ପରିଚୟକୁ ସୁଦୃଢ କରିପାରିଥିଲେ । ଜମିଦାରଙ୍କର ଦଳିତମାନଙ୍କ ପ୍ରତି ଅତ୍ୟାଚାର ଏବଂ ଜମିଜମା ବନ୍ଦୋବସ୍ତ କାର୍ଯ୍ୟରେ ନିଯୁକ୍ତ କର୍ମଚାରୀଙ୍କ ବିରୁଦ୍ଧରେ ଗୀତ ଚରନା କରି ସମାଜକୁ ଅନେକ ଦିଗଦର୍ଶନ ଦେଇପାରିଥିଲେ ।

ବାସ୍ତବିକ ସେ ହେଉଛନ୍ତି ଗଣମାନସର କାଳଜୟୀ ସ୍ରଷ୍ଟା । ସେହି ମହାନ୍ କବି ପବିତ୍ର କୁମାର ପୂର୍ଣ୍ଣିମାରେ ଧରାବତରଣ କରି ଶାରୀରିକ ଅସୁସ୍ଥତା, ଘୋର ଆର୍ଥିକ ଅନାଟନରେ ସମ୍ମୁଖୀନ ହୋଇ ୧୯୫୬ ମସିହା ମଇ ମାସ ୧୦ ତାରିଖରେ ସ୍ୱର୍ଗାରୋହଣ କରିଥିଲେ ।

ସେହି କାଳଜୟୀ କବି ଜୀବନ ଜଞ୍ଜାଳର କଷାଘାତ ଭିତରେ ଦରିଦ୍ରକୁ ଚିର ସହଚର ସହିତ ବିଶାଳ ସଂସାରରେ କେବଳ ବଞ୍ଚିବା ଅଭିନୟରେ ସାଧନା ଏବଂ ଉଚ୍ଚ ଅଭିଳାଷର ସ୍ୱପ୍ନ ଦେଖି ଆଜୀବନ ଲେଖନୀମୁନକୁ ସୁଦୃଢ କରି ଈଶ୍ୱରଙ୍କ କୃପା ଉପରେ ଭରସା ରଖିଥିଲେ । ଆଜି ସେହି ଦୀନହୀନ କବି ସମଗ୍ର ଓଡିଶାର ପୁରପଲ୍ଲୀରେ ବଞ୍ଚି ରହି, ଚିର ବନ୍ଦନୀୟ ପବିତ୍ର ଜନ୍ମଭୂମିକୁ ପୁଣ୍ୟଭୂମିରେ ପରିଣତ କରିପାରିଛନ୍ତି ।

ଅବସରପ୍ରାପ୍ତ ଶିକ୍ଷୟିତ୍ରୀ
ସେକ୍ଟର-୩/୫୫, ନୀଳାଦ୍ରି ବିହାର
ଭୁବନେଶ୍ୱର-୨୧

# ବିଦ୍ୟାଧିପତି ଶ୍ରୀଗଣେଶ

ଡକ୍ଟର ବିଷ୍ଣୁ ଚରଣ ଜେନା

ଶ୍ରୀ ଗଣେଶ ତୁମେ ଶିବ ପାର୍ବତୀଙ୍କ
ଔରସରୁ ଜନ୍ମ ନେଲ
ଲିହି କାଠିଏ ଯେ ପାଠ ପଢି ତୁମେ
ଧରାରେ ପୂଜା ପାଇଲ ।
ରାଶି ମିଠା ଲଡୁ ତୁମର ପସନ୍ଦ
ଜଣାଅଛି ବିଦ୍ୟାର୍ଥୀଙ୍କୁ
ତବ ପୂଜା ପାଇଁ ସଂଗ୍ରହ କରନ୍ତି
ତୁମକୁ ଅରଜିବାକୁ ।
ଭାଦ୍ରବ ମାସର ଶୁକ୍ଳ ଚତୁର୍ଥୀରେ
ତବ ପୂଜା ଦିନ ଆସେ
ବିଦ୍ୟାର୍ଥୀମାନେ ଯେ ତୁମକୁ ପୂଜିଣ
ଲଭନ୍ତି ଶାନ୍ତି ମାନସେ ।



ବିଦ୍ୟାର୍ଥୀମାନଙ୍କୁ ବିଦ୍ୟା ଦାନ କର
ଜଣାଏ ତବ ପୟରେ
କରୁଣାର ଧାର ସଦା ବହୁଥାଉ
ଏ ମାଗୁଣି ତବଠାରେ ।
ଏ ଅଧମ ତୁମ ନ ଜାଣଇ ଜ୍ଞାନ
ଦିଅ ମନେ ଜ୍ଞାନ ଭରି
କରୁଣାର ବାରି ବରଷି ଦିଅନ୍ତୁ
ଏତିକି ମୋର ଗୁହାରି ।

ପୂର୍ବତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ
କୀଟତତ୍ତ୍ୱ ବିଭାଗ, କୃଷି ମହାବିଦ୍ୟାଳୟ
ଭୁବନେଶ୍ୱର



# ଓଡ଼ିଶୀ ସଙ୍ଗୀତ ଚର୍ଚ୍ଚା : ଅତୀତ ଓ ବର୍ତ୍ତମାନ

ପ୍ରଫେସର ଉଦୟନାଥ ସାହୁ

ଆମ ଭାରତୀୟ ସଂସ୍କୃତି ଯେପରି ପ୍ରାଚୀନ ସେହିପରି ବିଶାଳ । ସଂସ୍କୃତ କାବ୍ୟ, ପୁରାଣ, ସ୍ମୃତିଶାସ୍ତ୍ର ସହ ଅନ୍ୟାନ୍ୟ ଶାସ୍ତ୍ର ସମୂହର ପ୍ରଭାବରେ ସର୍ବଭାରତୀୟ ସଂସ୍କୃତି ସମୃଦ୍ଧ ହୋଇଥିଲା । ରାମାୟଣ, ମହାଭାରତ ଓ ଭାଗବତ ଭାରତର ଜାତୀୟ ମହାକାବ୍ୟ ଭାବେ ଗ୍ରହଣୀୟ । ମହାଭାରତ ଗ୍ରନ୍ଥ ଅନୁସାରେ ରାଣୀ ସୁଦେଷ୍ଣାଙ୍କ ଗର୍ଭରୁ ପାଞ୍ଚ ଗୋଟି ପୁତ୍ର ଜାତ ହୋଇଥିଲେ । ସେମାନଙ୍କର ନାମ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ । ଏହି ପୁତ୍ରମାନେ ସେମାନଙ୍କର ନାମ ଅନୁସାରେ ରାଜ୍ୟ ସ୍ଥାପନ କରିଥିଲେ । କଳିଙ୍ଗ, ଉତ୍କଳ ଓ ଓଡ଼ିଶା ସଂପର୍କରେ ଇତିହାସରୁ ଅନେକ ପ୍ରମାଣ ମିଳିଥାଏ ।

ଆଜିର ଓଡ଼ିଶା ପ୍ରାଚୀନ କଳିଙ୍ଗ, ଦକ୍ଷିଣ କୋଶଳ, ତୋଷଳ, ଉତ୍କଳ, କଙ୍ଗୋଦ ଏବଂ ଉଡ୍ର ଅଂଶବିଶେଷ । ଭରତ ମୁନିଙ୍କ 'ନାଟ୍ୟଶାସ୍ତ୍ର' ଅନୁସାରେ, ଭାରତରେ ସଙ୍ଗୀତ ଚାରିଗୋଟି ଶ୍ରେଣୀରେ ବିଭକ୍ତ ହୋଇଥିଲା । ଯଥା-ଅବନ୍ତୀ, ଦାକ୍ଷିଣାତ୍ୟ, ପାଞ୍ଚାଳୀ ଓ ଉଡ୍ର-ମାଗଧୀ । ଏହି ଉଡ୍ର-ମାଗଧୀ ହିଁ ଆଜିର ଓଡ଼ିଶୀ ସଙ୍ଗୀତ ବୋଲି କୁହାଯାଇପାରେ । କପିଳେନ୍ଦ୍ର ଦେବ ବଙ୍ଗ ଦେଶର ସୁଲତାନଙ୍କୁ ପରାସ୍ତ କରି 'ଗୌଡ଼େଶ୍ୱର' ଉପାଧି, ଦକ୍ଷିଣରେ ବାହାମନୀ ସୁଲତାନ ହୁମାୟୁନ ଶାହାଙ୍କୁ ପରାସ୍ତ କରି 'କଳବର୍ଗେଶ୍ୱର' ଉପାଧି ଲାଭ କରିଥିଲେ । ତାଙ୍କର ଉପାଧି ଥିଲା-'ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର ତ୍ରିକଳିଙ୍ଗାଧିପତି ।' ଏଥିରୁ ଜଣାଯାଏ ଯେ, ପୂର୍ବ ଭାରତରେ ଗୌଡ଼ଦେଶ, ପଶ୍ଚିମରେ ଗୁଲବର୍ଗା ବା କଳବର୍ଗ ଏବଂ ଦକ୍ଷିଣରେ କର୍ଣ୍ଣାଟ ଓ ନଅଗୋଟି ଦୁର୍ଗ ସମେତ ତ୍ରିକଳିଙ୍ଗ ସାମ୍ରାଜ୍ୟର ଶାସନଭାର ସେ ବହନ କରିଥିଲେ । (ଓଡ଼ିଶାର ସାଂସ୍କୃତିକ ଇତିହାସ, ସଂ ୪ର୍ଥ ଖଣ୍ଡ, ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଓ ଶ୍ରୀ ରବିନାରାୟଣ ଦାଶ-୧୯୮୬-ପୃ-୪୪) ଏହାପରେ ଗୋଦାବରୀ ଓ କୃଷ୍ଣା ଜିଲ୍ଲାରେ ଆଧିପତ୍ୟ ବିସ୍ତାର କରିଥିବା ରେଡ୍‌ଡି ରାଜବଂଶକୁ ନିଶ୍ଚିହ୍ନ କରି ସେଠାରେ ପୁତ୍ର ବୀର ହମିରଦେବଙ୍କୁ ଶାସନଭାର ଦେଇଥିଲେ । ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ଯେ, 'କଣ୍ଡାବିଲୁରେ ରେଡ୍‌ଡିମାନଙ୍କ ଉନ୍ନତ ସଙ୍ଗୀତ ଓ ସାହିତ୍ୟିକମାନଙ୍କୁ ଆଣି ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରତ୍ୟହ ଗାନ, ସଂକୀର୍ତ୍ତନ ଓ ନୃତ୍ୟର ବ୍ୟବସ୍ଥା କରିଦେଇଥିଲେ । କଣ୍ଡାବିଲୁରେ ଅବସ୍ଥିତ ସଙ୍ଗୀତ ବିଶାରଦ ଓ କବି ଅହୋବଳଙ୍କୁ ସମ୍ଭବତଃ ସେତିକିବେଳେ ଓଡ଼ିଶାକୁ ଅଣାଗଲା । ତାଙ୍କ ରଚିତ 'ସଙ୍ଗୀତ ପାରିଜାତ' ଗ୍ରନ୍ଥକୁ ଭିତ୍ତି କରି ଓଡ଼ିଶାରେ ପ୍ରଚଳିତ କରାଗଲା, ଯାହାକୁ ବର୍ତ୍ତମାନ 'ଓଡ଼ିଶୀ ସଙ୍ଗୀତ' ଆଖ୍ୟା ଦିଆଯାଇଛି ।

(ତତ୍ରୈବ-ପୃ-୫୨)

ଓଡ଼ିଶାର ସଙ୍ଗୀତ ପରମ୍ପରା ବହୁ ପ୍ରାଚୀନ । ଓଡ଼ିଶୀ ସଙ୍ଗୀତ ସ୍ୱକୀୟ ମର୍ଯ୍ୟାଦାରେ ମଣ୍ଡିତ । ଓଡ଼ିଶାର ମନ୍ଦିର ଗାତ୍ରରେ ଖୋଦିତ ଶିଳାଲେଖଗୁଡ଼ିକରୁ ଓଡ଼ିଆ ଜାତିର ସଭ୍ୟତା ଓ ସଂସ୍କୃତିର ପରିଚୟ ମିଳିଥାଏ । ମହାମେଘବାହାନ ଖାରବେଳ ସଙ୍ଗୀତର ପୃଷ୍ଠପୋଷକତା କରିଥିବାର ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ । ସେ ନିଜକୁ 'ଗାନ୍ଧର୍ବ ବେଦ ବୁଦ୍ଧୋ' ବୋଲି ଘୋଷଣା କରିଥିଲେ ।

'ଗାନ୍ଧର୍ବ ବେଦ' ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ବୋଲି କୁହାଯାଏ । ଏଥିରେ ୩୬୦୦୦ ଶ୍ଳୋକ ସନ୍ନିବେଶିତ ହୋଇଛି ଏବଂ ସପ୍ତସ୍ୱର ସଂପର୍କରେ ବର୍ଣ୍ଣନା ରହିଛି । ସୋମବଂଶର ଯଯାତିକେଶରୀ ଏବଂ ଗଙ୍ଗବଂଶର ଅନଙ୍ଗଭୀମ ଦେବ ସଙ୍ଗୀତର ପୃଷ୍ଠପୋଷକ ଥିଲେ । ମୁକ୍ତେଶ୍ୱର ମନ୍ଦିର ଓ ରାଜାରାଣୀ ମନ୍ଦିରମାନଙ୍କ ଗାତ୍ରରେ ଖୋଦିତ ଓଡ଼ିଶୀ ନୃତ୍ୟଭଙ୍ଗୀର ଲାସ୍ୟମୂର୍ତ୍ତିଗୁଡ଼ିକରେ ଓଡ଼ିଶାର ସଙ୍ଗୀତ ପଦ୍ଧତି ବିଦ୍ୟମାନ ଥିବାର ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ । ବିଶେଷ କରି ଜଗନ୍ନାଥଙ୍କ ସେବାରେ ଓଡ଼ିଶୀ ସଙ୍ଗୀତ ପରମ୍ପରାର ପରିପୁଷ୍ଟି ଲାଭ କରିଛି । କାରଣ ଗୀତରୁ ବାଦ୍ୟ ଏବଂ ଗୀତ ଓ ବାଦ୍ୟରୁ ନୃତ୍ୟ ହୁଏ । ପୁଣି 'ଗୀତ, ବାଦ୍ୟଂ ତଥା ନୃତ୍ୟଂ ତ୍ରୟଂ ସଙ୍ଗୀତ ମୁଚ୍ୟତେ'-ଗୀତ, ବାଦ୍ୟ ଓ ନୃତ୍ୟକୁ ସଙ୍ଗୀତ କୁହାଯାଏ ।

ଦ୍ୱାଦଶ ଶତାବ୍ଦୀରେ ରଚିତ ଜୟଦେବଙ୍କ 'ଗୀତଗୋବିନ୍ଦ' ଓଡ଼ିଶାରେ ସଙ୍ଗୀତ ଚର୍ଚ୍ଚା ଓ ସାଧନାର ନିଦର୍ଶନ । ସାମ୍ପ୍ରତିକ ଗୀତ ଓ ବାଦ୍ୟର ପ୍ରାଚୀନ ଭାରତୀୟ ପରିଭାଷା ହେଉଛି 'ଗାନ୍ଧର୍ବ' । 'ଗୀତଗୋବିନ୍ଦ'ରେ ବ୍ୟବହୃତ 'ଗାନ୍ଧର୍ବ କଳା' ଶବ୍ଦଟି ଅତ୍ୟନ୍ତ ଉପାଦେୟ । 'ମାଦଳାପାଞ୍ଜି'ରୁ ଜଣାଯାଏ ସମଗ୍ର ଉତ୍କଳରେ 'ଶ୍ରୀଗୀତଗୋବିନ୍ଦ'ର ଲୋକପ୍ରିୟତାକୁ ସମ୍ମାନ ଜଣାଇ ଗଙ୍ଗ ବଂଶୀୟ ସମ୍ରାଟ୍ କବି ନରସିଂହ ଦେବ (ଖ୍ରୀଷ୍ଟାବ୍ଦ ୧୨୭୮-୧୩୦୭) ଶ୍ରୀଜଗନ୍ନାଥଙ୍କ ନିକଟରେ ଏକ ସେବା ରୂପେ ପ୍ରଚଳନ କରିଥିଲେ । ସାଧାରଣତଃ ପଦ୍ୟମାନଙ୍କରେ 'ଛନ୍ଦ' ଓ ଗୀତମାନଙ୍କରେ 'ତାଳ'ର ସମ୍ପର୍କ ଏକ ଚିରାଚରିତ ଧାରଣାରୂପେ ପରିଲକ୍ଷିତ ହୁଏ । ସଙ୍ଗୀତଜ୍ଞ ରାଣା କୁମ୍ଭକର୍ଣ୍ଣଙ୍କ 'ରସିକ ପ୍ରିୟା' ଟୀକାରେ ଅନେକ ପଦ୍ୟ ପାଇଁ ମଧ୍ୟ 'ରାଗ' ନିର୍ଦ୍ଦେଶିତ ହୋଇଥିବା ଜଣାଯାଏ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ୧୯୩୩ ମସିହାରେ 'ଗୀତଗୋବିନ୍ଦ'ର ମୂଳ ଛନ୍ଦ, ବୃତ୍ତ, ରାଗ, ତାଳ ପ୍ରଭୃତି ଅନୁସରଣ କରି ଉତ୍କୃଷ୍ଟ ପଦ୍ୟାନୁବାଦ କରିଥିଲେ, ତାହା ୧୯୭୦ ମସିହାରେ ପ୍ରକାଶିତ ହୋଇଅଛି । ଛନ୍ଦ ରସିକ ଶ୍ରୀ ରାଧାମୋହନ ଗଡ଼ନାୟକ ଓଡ଼ିଆ ଭାଷାର ସ୍ୱଭାବ ଅକ୍ଷୁଣ୍ଣ ରଖି ସୁଲିଖିତ ଅନୁବାଦ ମଧ୍ୟ କରିଅଛନ୍ତି ।

ସଙ୍ଗୀତ ଗାୟନ ଲାଗି ଉଦ୍ଦିଷ୍ଟ । କାରଣ ସଙ୍ଗୀତ ସ୍ୱର ତାଳ ନିୟନ୍ତ୍ରିତ । 'ଗୀତଗୋବିନ୍ଦ'ର ଗୀତଟି ଯଥା ଭାବ, ଯଥା ଛନ୍ଦ ଓ ଯଥା ତାଳ ଦ୍ୱାରା ବୋଲାଯାଇଥାଏ । ପଦ୍ୟମାନଙ୍କର 'ଛନ୍ଦ' ଓ ଗୀତମାନଙ୍କରେ 'ତାଳ'ର ସଂପର୍କ ଚିରାଚରିତ । ଅନ୍ୟ କେତେକ ଛନ୍ଦର ନାମ 'ଗୀତଗୋବିନ୍ଦ'ରେ ଦେଖାଯାଏ । ଯଥା-ହରିଣୀ, ବସନ୍ତ ତିଳକ, ଶିଖରିଣୀ, ପୁଷ୍ପିତାଗ୍ରୀ, ବଂଶସ୍ଥ, ମାଳିନୀ, ଦ୍ରୁତ ବିଲମ୍ବିତ, ଉପେନ୍ଦ୍ର ବଜ୍ରା ଓ ପୃଥ୍ୱୀ ପ୍ରଭୃତି । କେନ୍ଦୁଲି ଶାସନର ଅମ୍ବିକା ମନ୍ଦିରର ନବଗ୍ରହ ପାଟର ତଳେ 'ଜୟ ଜୟ ଦେବ ହରେ' ପଦାବଳୀ ଖୋଦିତ ହୋଇଥିବା ଦେଖାଯାଏ । ଏହି କେନ୍ଦୁଲି ହିଁ ଗୀତଗୋବିନ୍ଦକାର ଜୟଦେବଙ୍କର ଜନ୍ମ ସ୍ଥାନ ବୋଲି ସ୍ୱୀକୃତ । ଏହି ଧାରାରେ ପ୍ରଲୁବ୍ଧ ହୋଇ ବହୁ ସଙ୍ଗୀତ ରଚନା କରାଯାଇଛି ଓ ଓଡ଼ିଶୀ ସଙ୍ଗୀତର ମାନ ବୃଦ୍ଧି ପାଇଛି ।

ଓଡ଼ିଶାର ସଙ୍ଗୀତ ଶାସ୍ତ୍ର 'ଗୀତ ପ୍ରକାଶ', 'ସଙ୍ଗୀତ ନାରାୟଣ', ନାଟ୍ୟ ମନୋରମା, ସଙ୍ଗୀତ ସରଣୀ, ଅଭିନୟ ଦର୍ପଣ ପ୍ରକାଶ, ଅଭିନୟ ଚନ୍ଦ୍ରିକା, ସଙ୍ଗୀତ କୌମୁଦୀ, ସଙ୍ଗୀତ କଳ୍ପ ଲତିକା, ସଙ୍ଗୀତ ରତ୍ନାକର ପ୍ରଭୃତି ବହୁ ଗ୍ରନ୍ଥ ବେଶ୍ ପରିଚିତ । ଓଡ଼ିଶୀ ଗୀତ-ବାଦ୍ୟ-ନୃତ୍ୟର ବିଶେଷ ବର୍ଣ୍ଣନା ଏଥିରେ ପରିଦୃଷ୍ଟ ହୁଏ । ଏହି ପ୍ରାଚୀନ ସଙ୍ଗୀତ ଶାସ୍ତ୍ର ଯଦିଓ ରାଗ ରାଗିଣୀର ମୂଳ, ତଥାପି ବିଭିନ୍ନ ଯୁଗରେ ଅନେକ ନୂତନ ରାଗର ଉତ୍ପତ୍ତି ହୋଇଅଛି । କାରଣ ଦେଶର ନାମ ଅନୁସାରେ ଯେଉଁ ରାଗ ରାଗିଣୀର ସୃଷ୍ଟି ହୋଇଛି, ସେଗୁଡ଼ିକ ହେଲା- ଔଡ଼ୀ, କଳିଙ୍ଗୀ, ଗାନ୍ଧାରୀ, ଗୁର୍ଜରୀ, ବଙ୍ଗାଳୀ, ସୈନ୍ଧବୀ, କାବେରୀ, ମାଳବ, ଗୌଡ଼ୀ, କାମୋଦୀ, ପାଞ୍ଚାଳୀ ଇତ୍ୟାଦି ।

'ବୌଦ୍ଧଗାନ ଓ ଦୋହା'ରେ ପ୍ରକାଶିତ ଚର୍ଯ୍ୟାଚୟର କବିତାଗୁଡ଼ିକୁ ସିଦ୍ଧାଚାର୍ଯ୍ୟଗଣ ରଚନା କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଅନେକ ଓଡ଼ିଆ । ଚର୍ଯ୍ୟାଗୀତିକା ସଂଗୃହିତ ପୋଥିଟିର ଶୀର୍ଷକ ଥିଲା 'ଚର୍ଯ୍ୟାଚୟ ବିନିଶ୍ଚୟ' । ବହୁ ଚର୍ଯ୍ୟାପଦ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଥମିକ ରୂପ । ୮୪ ଜଣ ସିଦ୍ଧାଚାର୍ଯ୍ୟଙ୍କ ଦ୍ୱାରା ରଚିତ ବୋଲି ଜଣାଯାଇଥିଲେ ହେଁ ଏଥିରେ ୨୩ ଜଣ





ସିଦ୍ଧାଚାର୍ଯ୍ୟଙ୍କର ରଚନା ରହିଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିଶେଷ କରି ସାରଳା ଓ ପଂଚସଖା ସାହିତ୍ୟରେ କାହ୍ନୁପା, ମତ୍ସେନ୍ଦ୍ରନାଥ, ଲୁଇପା, ଶବରୀପା, ହାଡ଼ିପା ଓ ବିରୂପା ପ୍ରଭୃତି ସିଦ୍ଧାଚାର୍ଯ୍ୟମାନଙ୍କର ନାମୋଲ୍ଲେଖ ମିଳିଥାଏ । ଏମାନଙ୍କର ରଚନାରେ ଅରୁ, ଗୁଜ୍ଜରୀ, ପଟ୍ଟମଞ୍ଜରୀ, ଦେବକ୍ରୀ, ଦେଶାଖ, ଭୈରବୀ, କାମୋଦ, ଧନସୀ, ବରାଡୀ, ମଲ୍ଲାରୀ, ମାଳଶ୍ରୀ, କହ୍ନୁ ଗୁଜ୍ଜରୀ, ବଙ୍ଗାଳ ପ୍ରଭୃତି ରାଗର ଉଲ୍ଲେଖ ଅଛି । ଚର୍ଯ୍ୟାଗୀତିକା ସମକାଳୀନ ଜୀବନାଚରଣ ଓ ଲୋକଚର୍ଯ୍ୟାର ବିଶ୍ୱସ୍ତ ଦଲିଲ୍ ହେଲେ ହେଁ, ଗୀତିକା ପୂର୍ବରୁ ବିଭିନ୍ନ ରାଗର ନାମ ସୂଚୀତ କରାଯାଇଛି । ତେଣୁ ଚର୍ଯ୍ୟାଗୀତିକାଗୁଡ଼ିକ ସଙ୍ଗୀତଧର୍ମୀ ଓ ଛନ୍ଦ ନିୟମରେ ରଚିତ ।

ସାରଳା ମହାଭାରତରୁ ସଙ୍ଗୀତ ଶାସ୍ତ୍ରର ସ୍ୱର ନିୟମର ପରିଚୟ ମିଳେ । ସାରଳା ଦାସ ଏକ ଅନାଡ଼ମ୍ବର ଦାଣ୍ଡିବୃତ୍ତରେ ମହାଭାରତ, ଚଣ୍ଡୀପୁରାଣ, ବିଚିତ୍ର ରାମାୟଣ, ବିଲଙ୍କା ରାମାୟଣ ଲେଖିଥିଲେ ହେଁ ତାଙ୍କର ଯେ ବିଭିନ୍ନ ସଙ୍ଗୀତ ଓ ଛନ୍ଦ ଶାସ୍ତ୍ରରେ ଅଭିଜ୍ଞତା ଥିଲା, ତାହା ବିଭିନ୍ନ ଦୃଷ୍ଟାନ୍ତରୁ ଜଣାଯାଏ । ଯେପରି–

କ) ସା, ରି, ଗ, ମ, ପ, ଧ, ନି, ସା ସପତ ସ୍ୱରବୀଣା ।

ଭର ହରଷ ନାୟିକା ସେ ଗାଇଲେ ଖଟଣା (ସା.ମ ମଧ୍ୟପର୍ବ) ।

ଖ) ତାଣ୍ଡବ ରସେ ଖଟନ୍ତି ବାବନ୍ତି ସପତ ସ୍ୱରବେଣୀ ।

ତାଳୋ ଅଧାଟି ପଟା କୁଣ୍ଡଳୀ ଘେନି ଖଟନ୍ତି ଭରହ ଗାବନ୍ତି ନାୟେକାଣୀ । (ସା.ମ ବିରାଟ ପର୍ବ)

'ଭରହ'ର ଅର୍ଥ ହେଉଛି ସଙ୍ଗୀତ ରସ । ସାରଳା ଦାସ ଭରତ ମୁନିଙ୍କ 'ନାଟ୍ୟଶାସ୍ତ୍ର' ସଂପର୍କରେ ଅବଗତ ଥିଲେ । ତେଣୁ ସେ ଭରହ ହରଷ ବୋଲି ଲେଖି ଅଛନ୍ତି । ଏତଦ୍‌ବ୍ୟତୀତ ବିଭିନ୍ନ ରାଗର ଉଲ୍ଲେଖ କରିଅଛନ୍ତି । ଯଥା– ଆଭିରୀ, କର୍ଣ୍ଣାଟୀ, କଲ୍ୟାଣୀ, କୌଶିକ, କେଦାର, ଗୁଜ୍ଜରୀ, ଗୌରୀ, ଚିନ୍ତା ଦେଶାକ୍ଷ, ଚୋଖୀ, ତୋଡ଼ି, ନାଗବଲ୍ଲୀ, ପଞ୍ଚମ ବରାଡ଼ି, ଭୈରବୀ, ମାଳବ, ମାଳଶ୍ରୀ, ମହ୍ଲାର, ମଧୁକେରୀ, ଲଳିତ ବସନ୍ତ ପ୍ରଭୃତି ।

ଏହାପରେ ରୀତି ଯୁଗର ସଙ୍ଗୀତ ପ୍ରୟୋଗର ବହୁ ପରୀକ୍ଷାନିରୀକ୍ଷା ହୋଇଅଛି । ଉପେନ୍ଦ୍ର ଭଞ୍ଜ ଓଡ଼ିଶୀ ସଙ୍ଗୀତରେ ରସ, ମାଧୁର୍ଯ୍ୟ ଓ ଭାବ ଗାମ୍ଭୀର୍ଯ୍ୟର ମଧୁର ସମନ୍ୱୟ କରିଥିଲେ । ଅଭିମନ୍ୟୁ, ଗୋପାଳକୃଷ୍ଣ, କବିସୂର୍ଯ୍ୟ, ବନମାଳୀ, ଧନଞ୍ଜୟ ଭଞ୍ଜ ପ୍ରଭୃତିଙ୍କର ପ୍ରକାଶ ଭଙ୍ଗୀ ଥିଲା ସ୍ୱତନ୍ତ୍ର । ଶବ୍ଦ ଯୋଜନାର ଚମତ୍କାରିତା, ପଦାବଳୀର ମନୋହାରିତା, ଭାବ ବ୍ୟଞ୍ଜନର ଆକର୍ଷଣ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଥାଏ । ଏ କବିତାଗୁଡ଼ିକର ବୈଶିଷ୍ଟ୍ୟ ହେଉଛି ସଙ୍ଗୀତମୟତା । ଏଥିରେ ମଧ୍ୟ ବିଭିନ୍ନ ରାଗରାଗିଣୀ, ଛାନ୍ଦ ଓ ବୃତ୍ତ ସଂପର୍କରେ ସୂଚନା ଦିଆଯାଇଛି । ତେଣୁ ସଙ୍ଗୀତ ଶାସ୍ତ୍ରସମ୍ମତ ଛାନ୍ଦ, ବୃତ୍ତ, ସ୍ୱର, ତାଳ, ଲୟ, ଯତିପାତ ଇତ୍ୟାଦି ସମୃଦ୍ଧ ରଚନାଗୁଡ଼ିକ ଗାନ ପ୍ରଧାନ ହୋଇଅଛି । ଛାନ୍ଦ ଯେପରି ନାନା ରାଗରାଗିଣୀରେ ରଚିତ, ସଙ୍ଗୀତ ମଧ୍ୟ ସେହିପରି ରାଗରାଗିଣୀ ଯୁକ୍ତ ।

ଏ ସମସ୍ତ ତତ୍କାଳୀନ ସାହିତ୍ୟ ସହିତ ସଙ୍ଗୀତ ଚର୍ଚ୍ଚାର ନିଦର୍ଶନ । 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ରେ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ ଅକ୍ଷରରେ ୩୪ଟି ସଙ୍ଗୀତ ରହିଛି, ଯାହା ଭିନ୍ନ ଭିନ୍ନ ରାଗରାଗିଣୀ ଓ ତାଳ ଯୁକ୍ତ । ଏହାର ଭାବ ଓ ଭାଷା ଉତ୍କୃଷ୍ଟ । ଓଡ଼ିଆ ସଙ୍ଗୀତର ବିଶେଷତ୍ୱ ଏଥିରୁ ଉପଲବ୍ଧି କରିହୁଏ । କାରଣ ଚମ୍ପୂରେ ରହିଛି ଶାସ୍ତ୍ରୀୟ ରୀତି । ସଙ୍ଗୀତ ଧର୍ମିତା, ଭାଷା, ଭାବ ଓ ପଦ ଲାଳିତ୍ୟ ଏହାର ଅନ୍ୟତମ ଆକର୍ଷଣ । ଓଡ଼ିଶାରେ ସଙ୍ଗୀତ ଚର୍ଚ୍ଚାର ପରମ୍ପରା ବହୁ ପ୍ରାଚୀନ ।

ଓଡ଼ିଶୀ ସଙ୍ଗୀତର ଚର୍ଚ୍ଚା ଆଜି ମଧ୍ୟ ନିସ୍ତବ୍ଧ ହୋଇନାହିଁ । ଏ ଦିଗରେ ଯେଉଁ ମହାରଥୀଗଣ ପ୍ରମୁଖ ଭୂମିକା ନେଇଥିଲେ, ସେମାନେ ହେଲେ କାଳୀଚରଣ ପଟ୍ଟନାୟକ, ସିଂହାରୀ ଶ୍ୟାମସୁନ୍ଦର କର, କାଶୀନାଥ ପୂଜାପଣ୍ଡା ଓ ଶ୍ରୀରାମ ପ୍ରସାଦ ସିଂହ ପ୍ରଭୃତି । ୧୯୫୪ ମସିହା ମାର୍ଚ୍ଚ ୨୬ ତାରିଖରେ ଦିଲ୍ଲୀ ସଙ୍ଗୀତ

ନାଟକ ଦ୍ୱାରା ଆୟୋଜିତ ଲାଲକିଲ୍ଲା ପ୍ରାଙ୍ଗଣରେ ଓଡ଼ିଶୀ ସଙ୍ଗୀତ ପ୍ରଥମ ଥର ପାଇଁ ପରିବେଷିତ ହୋଇ ପ୍ରଶଂସିତ ହୋଇଥିଲା । ଏଥିରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସହ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଉପସ୍ଥିତ ରହିଥିଲେ (କୁମ୍ଭାର ଚକ-କାଳୀଚରଣ ପଟ୍ଟନାୟକ- ପୃଷ୍ଠା-୩୦୭) । ତା. ୧୬-୫-୫୭ ରିଖରେ 'ଓଡ଼ିଶୀ ସଙ୍ଗୀତ ସେମିନାର' ପୁରୀ ଜିଲ୍ଲା ସ୍କୁଲରେ ଆୟୋଜନ କରାଯାଇଥିଲା । କାଳୀଚରଣ 'ଓଡ଼ିଶୀ ସଙ୍ଗୀତର ରୂପରେଖ' ପୁସ୍ତକ ରଚନା କରିଥିଲେ । ଓଡ଼ିଶୀ ସଙ୍ଗୀତର ବିଶିଷ୍ଟତା ଓ ମୌଳିକତା ପ୍ରମାଣ ଲାଗି ଏହା ଥିଲା କାଳୀଚରଣଙ୍କ ପ୍ରଥମ ପ୍ରଚେଷ୍ଟା । କିଛି ବିରୋଧାତ୍ମକ ମତ ପ୍ରକାଶ ପାଇଥିଲେ ହେଁ ପଦ୍ମଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଶୀ ସଙ୍ଗୀତର ମୌଳିକତା ରହିଛି ବୋଲି ମତ ଦେଇଥିଲେ । ତା. ୧୫-୩-୧୯୬୬ ରିଖରେ ଦିଲ୍ଲୀଠାରେ ଅନୁଷ୍ଠିତ 'ଗୀତଗୋବିନ୍ଦ ସମାରୋହ'ରେ କାଳୀଚରଣଙ୍କ ଦ୍ୱାରା ସ୍ୱର ଛନ୍ଦାନୁସାରୀ ଅନୁବାଦିତ ଓଡ଼ିଶୀ ସଙ୍ଗୀତ ଗାଇ ଶ୍ରୀ ବାଳକୃଷ୍ଣ ଦାସ ଉପସ୍ଥିତ ସୁଧୀବୃନ୍ଦଙ୍କୁ ମୁଗ୍ଧ କରିଥିଲେ । ଅଷ୍ଟ ତାଳି ବା ଆଠ ତାଳି ଓଡ଼ିଶା ଭିନ୍ନ ଅନ୍ୟତ୍ର ପ୍ରଚଳିତ ନୁହେଁ ବୋଲି ବୈଠକରେ ତାଳ, ମାତ୍ରା ଓ ଉକୁଟ ସହ ପରିଷ୍କାର ବୁଝାଇଥିଲେ । ଓଡ଼ିଶା ବାହାରେ ମାନ୍ଦ୍ରାଜଠାରେ ଓଡ଼ିଶୀ ସଙ୍ଗୀତର ସ୍ୱାତନ୍ତ୍ର୍ୟ ସଂପର୍କରେ ମଧ୍ୟ କାଳୀଚରଣ ପ୍ରବନ୍ଧ ପାଠ କରିଥିଲେ, ଯାହା ତା. ୩୧-୩-୫୮ ରିଖରେ କଟକ ଆକାଶବାଣୀ ଦ୍ୱାରା ପ୍ରଚାରିତ ହୋଇଥିଲା । ସେଥିମଧ୍ୟରୁ କିଛି ପାଠକମାନଙ୍କ ନିକଟରେ ଉପସ୍ଥାପନ କରାଗଲା । 'ପ୍ରବନ୍ଧ ପାଠ ପରେ ସେଠାକାର ବହୁ ସଙ୍ଗୀତ ବିଦ୍ୱାନ୍ ମୋତେ ସଙ୍ଗୀତ ବିଷୟକ ପ୍ରଶ୍ନମାନ କରିଥିଲେ ଏବଂ କର୍ଣ୍ଣାଟକୀ ସଙ୍ଗୀତଠାରୁ ଓଡ଼ିଶୀ ସଙ୍ଗୀତର ପରିବେଷଣରେ କି ପାର୍ଥକ୍ୟ ଅଛି, ତାହା ପ୍ରତିପାଦିତ କରିବାକୁ କହିଥିଲେ । ମୁଁ ଔପପାତ୍ତିକ ପ୍ରମାଣମାନ ସମ୍ରାଟ୍ ଖାରବେଳଙ୍କ କାଳରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଆମର ଥିବା ବିବିଧ ଅଭିଲେଖରୁ ଓ ସଙ୍ଗୀତଶାସ୍ତ୍ର ଲେଖକ କୃଷ୍ଣଦାସ, ନାରାୟଣ ମିଶ୍ର, ନାରାୟଣ ଗଜପତି ଓ ରଘୁନାଥ ରଥ ପ୍ରଭୃତି କେତେକ ସଙ୍ଗୀତାଚାର୍ଯ୍ୟମାନଙ୍କର ପୋଥିଲେଖାରୁ ବିଶେଷତ୍ୱମାନ ଉଦ୍ଧୃତ କରି ପ୍ରମାଣ ଦେଖାଇଥିଲି ଯେ ସେମାନେ କେହିହେଲେ କର୍ଣ୍ଣାଟକ ସଙ୍ଗୀତ ପ୍ରଚଳିତ ବାଆସ୍ତରି ମେଳ କଥା ଉଲ୍ଲେଖ କରି ନାହାନ୍ତି । ପୁଣି ଉତ୍କଳରେ ଗାଇବାର ସହଯୋଗୀ ତା'ର ଯନ୍ତ୍ରରୂପେ ନିସାରୀ ବୀଣା ବା ପର୍ଦ୍ଦାବିହୀନ ବୀଣାଯନ୍ତ୍ର ଅର୍ଥାତ ତମ୍ବୁରା ବ୍ୟବହାର ବିଧି ଥିବାର ଉଲ୍ଲେଖ କରିଛନ୍ତି ଏବଂ ତହିଁ ସଙ୍ଗେ ସଙ୍ଗେ ସେମାନେ ଲେଖିଛନ୍ତି ଯେ ଦକ୍ଷିଣରେ ସାରୀ ବୀଣାର ପ୍ରଚଳନ ଅଛି । ତେଣୁ ଓଡ଼ିଶୀ ସଙ୍ଗୀତର ପରିବେଷଣ ରୀତି ପ୍ରୋକ୍ତ ଉଭୟବିଧ ଯନ୍ତ୍ରର ଅନୁସରଣ ପାର୍ଥକ୍ୟ ହେତୁ ସ୍ୱତନ୍ତ୍ର ହେବା ସ୍ୱାଭାବିକ । ଏହାଛଡ଼ା ଓଡ଼ିଶାରେ ନବତାଳର ପ୍ରଚଳନ ବିଧି ଅଛି । କର୍ଣ୍ଣାଟକରେ ସପ୍ତତାଳ ପ୍ରଚଳିତ ।

ଓଡ଼ିଶାରେ ଏହି ନବତାଳ ଛଡ଼ା ମଧ୍ୟ ନିସାରୀ ବା ନିଃସାରୁ ଓ କୁଡୁକ ତାଳ ଦୁଇଟିର ଉଲ୍ଲେଖ ଅଛି । ଆଉ କେତୋଟି ତାଳ ଓଡ଼ିଶାରେ ସ୍ୱତନ୍ତ୍ର ଭାବରେ ମଧ୍ୟ ନାମିତ ହୋଇ ଚଳେ । ସେଗୁଡ଼ିକ ଯଥା-ଝୁଲା, ପହପଟ, ଆଠତାଳି ଓ ସରିମାନ ଇତ୍ୟାଦି । ଓଡ଼ିଶୀ ସଙ୍ଗୀତର ତାଳ ସହଯୋଗ ପାଇଁ ମର୍ଦ୍ଦଳ ହିଁ ଉପଯୁକ୍ତ ବାଦ୍ୟଯନ୍ତ୍ର । ଏହାର କେତେକ ବାଣୀ ବା ଉକୁଟରେ ଓଡ଼ିଶୀ ସ୍ୱତନ୍ତ୍ରତା ରହିଛି । ଗୀତ ସହ ସଙ୍ଗୀତ ବୋଲିବା ବେଳେ ଓଡ଼ିଆ ବାଦ୍ୟକାର ଲୟର ଅନୁସରଣ କରେ । କର୍ଣ୍ଣାଟକ ବାଦ୍ୟକାର ଗୀତର ଛନ୍ଦ ଅନୁସାରୀ ହୁଏ, ପୁଣି ପ୍ରତ୍ୟେକ ଚରଣ ଗାଇବା ପରେ ଓଡ଼ିଶୀ ବାଦ୍ୟକାର କାଟଣ ଦେଇ (ତିହାଇ)ଗାୟକକୁ ଆଉ ଅପେକ୍ଷା ନ କରାଇ ଘୋଷା ଧରିବାକୁ ସୁଯୋଗ ଦିଏ କିନ୍ତୁ କର୍ଣ୍ଣାଟକ ବାଦ୍ୟକାର ତା'ର ବାଦ୍ୟ ଶେଷ କରିବା ଯାଏ ଗାୟକ ଚରଣ ଗାଇସାରି ଘୋଷା ଧରିବାକୁ ଅପେକ୍ଷା କରେ । ଗୀତରେ ପଡ଼ି ସଂଯୋଗ ପ୍ରଥା ଆମର ଏକ ବିଶେଷତ୍ୱ । ଏହାଛଡ଼ା ଛାନ୍ଦଗୁଡ଼ିକର ରାଗ ଓ ଛନ୍ଦ କଳ୍ପନା ସମ୍ବନ୍ଧେ ମୁଁ କେତେକ କଥା ବୁଝାଇଥିଲି ।'

(କୁମ୍ଭାର ଚକ-ପୃ-୩୧୮)

ବାହାରେ ଓଡ଼ିଶୀ ସଙ୍ଗୀତ ଚର୍ଚ୍ଚାର ଏହା ହେଉଛି ଏକ ବଳିଷ୍ଠ ପଦକ୍ଷେପ । ଏ ଦିଗରେ ସମସ୍ତଙ୍କର ସାହାଯ୍ୟ, ସହାନୁଭୂତି ରହିବା ଆବଶ୍ୟକ । ଓଡ଼ିଶୀ ସଙ୍ଗୀତ ଓଡ଼ିଶା

ଓ ଓଡ଼ିଶା ବାହାରେ ସର୍ବତ୍ର ଚର୍ଚ୍ଚା ହେବା ଜରୁରୀ । ତା.୧-୧-୫୮ ରିଖ ଦିନ କାଳୀଚରଣ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ସମ୍ପର୍କରେ ତାଙ୍କ ଅଭିଭାଷଣ ଉପସ୍ଥାପନ କରି ତାହାର ବିଶେଷତ୍ୱ ଓ ସ୍ୱତନ୍ତ୍ରତା ସମ୍ବନ୍ଧରେ ବୁଝାଇଥିଲେ । ପରିଶେଷରେ ସେ ମହାଶୟ ଲେଖିଛନ୍ତି-'ସଭାସ୍ଥ ଜନତା ଓଡ଼ିଶୀ ସଙ୍ଗୀତ ବୋଲି ଗୋଟିଏ ଧାରା ଅବଧି ଥିବାର ମଧ୍ୟ ଜଣା ନଥିଲା ବୋଲି କହିଥିଲେ ଓ ଏହି ଧାରାର ବିକାଶ ଲାଗି ସଚେଷ୍ଟ ହେବା ନିମିତ୍ତ ମୋତେ ଅନୁରୋଧ କରିଥିଲେ । ମୁଁ ବାସ୍ତବିକ ବିସ୍ମିତ ହେଲି ଯେ ଏଇ ଓଡ଼ିଶାରେ ଆମରି ଘରେ ଥୋକେ ଏଇ ମାଟିର ମଣିଷ ଓଡ଼ିଶୀ ସଙ୍ଗୀତକୁ କର୍ଣ୍ଣାଟକୀ ବୋଲି କହୁଥିବାବେଳେ, କର୍ଣ୍ଣାଟକ ସଙ୍ଗୀତ ପଣ୍ଡିତମାନେ ଏହାକୁ ତାଙ୍କ ଘରକୁ ଟାଣି ନ ନେଇ ଏହା ଏକ ସ୍ୱତନ୍ତ୍ର ଧାରା ବୋଲି ସ୍ୱୀକାର କରୁଛନ୍ତି ।'(କୁମ୍ଭାର ଚକ-ପୃ-୩୨୧)

ଓଡ଼ିଶୀ ସଙ୍ଗୀତ ସଂପର୍କରେ ବିଭିନ୍ନ ପତ୍ରପତ୍ରିକା ମୁଖ୍ୟତଃ 'ଝଙ୍କାର'ରେ ଅନେକ ଆଲୋଚନା କରାଯାଇଛି । ଏ ସଂପର୍କରେ ମଧ୍ୟ ପ୍ରତିବାଦ ଲେଖା ପ୍ରକାଶ ପାଇଛି । କିନ୍ତୁ ଓଡ଼ିଶୀ ସଙ୍ଗୀତ ଓ ଗୀତର ସ୍ୱତନ୍ତ୍ର ବିଶେଷତ୍ୱ ରହିଛି । ଆମ ପୂର୍ବ ପୁରୁଷମାନେ ସଙ୍ଗୀତର ରାଗରାଗିଣୀକୁ ନେଇ ଅନେକ ଛାନ୍ଦ ଓଡ଼ିଆରେ ରଚନା କରିଅଛନ୍ତି । କବିତାରେ ଛନ୍ଦ ଲୀଳାର ସୌନ୍ଦର୍ଯ୍ୟ ସର୍ବଦା ଦୃଷ୍ଟିଗୋଚର ହୁଏ । ରୀତିଯୁଗ ବେଳକୁ ଓଡ଼ିଆ ଛନ୍ଦାଦର୍ଶ ଏକ ଯାନ୍ତ୍ରିକ ଶୃଙ୍ଖଳା ମାତ୍ରାରେ ପରିଣତି ହୋଇଛି । ଛାନ୍ଦ ଆମ ସଙ୍ଗୀତ । ତେଣୁ ଉପେନ୍ଦ୍ର ଭଞ୍ଜ ପ୍ରଥମେ ସଙ୍ଗୀତ ସମ୍ରାଟ୍ ଓ ପରେ କବି ସମ୍ରାଟ୍ ବୋଲି ମଧ୍ୟ କୁହାଯାଇପାରେ । ତେଣୁ ଓଡ଼ିଶୀ ସଙ୍ଗୀତ ଚର୍ଚ୍ଚାର ଏକ ସୁଦୀର୍ଘ ପରମ୍ପରା ରହିଛି ।

ଆଜି ମଧ୍ୟ ଏହି ଧାରା ମଳିନ ପଡ଼ିନାହିଁ । ଯେଉଁ ପ୍ରମୁଖ ସଙ୍ଗୀତକାରଗଣ ସେମାନଙ୍କ ସାଧନାରେ ବ୍ରତୀ ରହି ଓଡ଼ିଶୀ ସଙ୍ଗୀତକୁ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛନ୍ତି, ସେମାନେ ସମସ୍ତେ ଆମର ନମସ୍ୟ । ସେମାନଙ୍କ ମଧ୍ୟରେ ଅଛନ୍ତି ସିଂହାରୀ ଶ୍ୟାମ ସୁନ୍ଦର କର, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ, ସୁରମଣି ରଘୁନାଥ ପାଣିଗ୍ରାହୀ, ଭୁବନେଶ୍ୱର ମିଶ୍ର, ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ଭିକାରୀ ବଳ, କାଳୀଚରଣ ପଟ୍ଟନାୟକ, ଶ୍ୟାମାମଣି ଦେବୀ, ଆରତୀ ମିଶ୍ର, ରାମହରି ଦାସ, ଭୁବନେଶ୍ୱରୀ ମିଶ୍ର, କାଶୀନାଥ ପୂଜାପଣ୍ଡା, ଗୋପାଳ ଚନ୍ଦ୍ର ପଣ୍ଡା, ଘନଶ୍ୟାମ ପଣ୍ଡା, ପ୍ରଫୁଲ୍ଲ କର ଓ ସଙ୍ଗୀତା ପଣ୍ଡା ପ୍ରମୁଖ । ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ନିମିତ୍ତ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ତା. ୨୫.୦୯.୨୦୨୦ ରିଖରେ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କୁ ଏକ ଚିଠି ଲେଖିଅଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ଏହି ବଳିଷ୍ଠ ପଦକ୍ଷେପ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ତଥା ସଙ୍ଗୀତକୁ ସମୃଦ୍ଧ କରିବାରେ ନିଶ୍ଚିତ ସାହାଯ୍ୟ କରିବ । ଆମର ଓଡ଼ିଶୀ ସଙ୍ଗୀତ ଶୈଳୀ ବହୁ ପୁରାତନ ଓ ଶାସ୍ତ୍ରାନୁମୋଦିତ । ଓଡ଼ିଆ ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି ବେଳେ ସଙ୍ଗୀତ ଶାସ୍ତ୍ର ମଧ୍ୟ ଉନ୍ନତି ଲାଭ କରିଥିଲା । ଓଡ଼ିଶୀ ସଙ୍ଗୀତ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବୀ କରେ, ଯାହା ଭାରତର ସଙ୍ଗୀତ ବିଦ୍ୱାନ୍ ଓ ସଙ୍ଗୀତ କଳାନିଧି ଶ୍ରୀ ଚଉଡ଼ିୟା ଏବଂ ଡକ୍ଟର ଭି. ରାଘବନ୍ ସ୍ୱୀକାର କରିଅଛନ୍ତି । ୨୦୧୯ ମସିହା ଅପ୍ରେଲ ୫ ଓ ୬ ତାରିଖରେ ଦିଲ୍ଲୀଠାରେ ଗୁରୁ ଗୋପାଳଚନ୍ଦ୍ର ପଣ୍ଡା ଏବଂ ସଙ୍ଗୀତା ପଣ୍ଡା ଓଡ଼ିଶୀ ଏକାଡେମୀ ମାଧ୍ୟମରେ ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ନିମିତ୍ତ ଏକ ଅନ୍ତର୍ଜାତୀୟ ସେମିନାରର ଆୟୋଜନ କରିଥିଲେ । ଏ ଦିଗରେ ସରକାରଙ୍କ ସମେତ ସମସ୍ତଙ୍କର ଉଦ୍ୟମ ଏକାନ୍ତ କାମ୍ୟ ।

ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ
ନୂଆଦିଲ୍ଲୀ-୧୧୦୦୬୭





# ଶ୍ରୀକ୍ଷେତ୍ରର ମା' ଆଲାମଚଣ୍ଡୀ

ଶ୍ୟାମ ପ୍ରକାଶ ସେନାପତି

ଶ୍ରୀକ୍ଷେତ୍ର ପରଂପରାରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପୂଜାବିଧି ସହିତ ଅନେକ କ୍ଷେତ୍ରୀୟ ଦେବଦେବୀଙ୍କ ଉପାସନାକୁ ସ୍ୱୀକୃତି ଦିଆଯାଇଛି । ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ର ପରିସରରେ ଏହି କ୍ରମରେ ଏକାଧିକ ଦେବଦେବୀଙ୍କ ମନ୍ଦିର ସ୍ଥାପନା କରାଯାଇ ଶାସ୍ତ୍ରୀୟ ମତରେ ପୂଜାବିଧି ଅନୁଷ୍ଠିତ ହେଉଛି । ଜଗନ୍ନାଥ ମନ୍ଦିର ଓ ଏହାର ସାଂସ୍କୃତିକ ବୈଭବକୁ ସମୃଦ୍ଧ କରି ଯେଉଁ କେତୋଟି ଦେବଦେବୀଙ୍କ ମନ୍ଦିର ଶ୍ରଦ୍ଧାଳୁଙ୍କ ଦୃଷ୍ଟି ଆକର୍ଷଣ କରନ୍ତି, ସେଥିମଧ୍ୟରୁ ଅଠରନଳାଠାରେ ବିରାଜିତ ମା' ଆଲାମଚଣ୍ଡୀଙ୍କ ମନ୍ଦିର ସ୍ୱତନ୍ତ୍ର ଅଟେ । ନିଜ ପିଲାମାନଙ୍କୁ ମା' ସୁରକ୍ଷା ଦେବା ପରି ମା' ଆଲାମଚଣ୍ଡୀ ଏହି ଘାଟରେ ଅବସ୍ଥାନ କରି ବଡ଼ ଦେଉଳକୁ ସୁରକ୍ଷା ଦେଇ ଆସୁଛନ୍ତି । ଅଠରନଳା ଶ୍ରୀକ୍ଷେତ୍ର ସଂସ୍କୃତିରେ ଏକ ଆଧ୍ୟାତ୍ମିକ ସ୍ଥାନର ମାହାତ୍ମ୍ୟ ବହନ କରୁଥିବା ହେତୁ ମା' ଏଠାରେ ଅଧିଷ୍ଠିତା ହୋଇ ଏହି ସ୍ଥାନର ମହିମା ବୃଦ୍ଧି କରୁଛନ୍ତି ।



### ମନ୍ଦିର ଅବସ୍ଥିତି

ଶ୍ରୀକ୍ଷେତ୍ରର ସୁରକ୍ଷା ପାଇଁ ଯେଉଁ ଅଷ୍ଟଶକ୍ତି ବିଭିନ୍ନ ଦିଗରେ ବିରାଜମାନ ଅଛନ୍ତି, ସେମାନଙ୍କ ମଧ୍ୟରୁ ମା' ଆଲାମଚଣ୍ଡୀ ଅନ୍ୟତମା । ସେ ଶ୍ରୀକ୍ଷେତ୍ରର ଉପକଣ୍ଠରେ ଅଧିଷ୍ଠିତା । ମା'ଙ୍କ ମନ୍ଦିର ଶ୍ରୀକ୍ଷେତ୍ରର ପ୍ରବେଶ ଦ୍ୱାର ଅଠରନଳା ଓ କୁମ୍ଭାରପଡ଼ାର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । ଓଡ଼ିଶାରେ ପୂର୍ବେ ଜଳପଥରେ ଯାତାୟାତ ଥିଲା । ଜଳପଥରେ ବିଭିନ୍ନ ନଦୀଗୁଡ଼ିକରେ ଯାତାୟାତ ଲାଗି ଘାଟ ରହିଥିଲା । ପ୍ରତ୍ୟେକ ଘାଟରେ ଘାଟଦେବୀ ରହିଥାନ୍ତି । ଅଠରନଳା ଘାଟର ଦେବୀ ହେଉଛନ୍ତି ମା' ଆଲାମଚଣ୍ଡୀ । କେତେକଙ୍କ ମତରେ ମା'ଙ୍କ ଅନ୍ୟନାମ 'ଲମ୍ବା' ଓ ଆଉ କେହି କେହି 'ଅଲମ୍ବା ଦେବୀ' ବୋଲି କହିଥାନ୍ତି । କିନ୍ତୁ ଲୋକ କଥିତ ନାମ 'ଆଲାମଚଣ୍ଡୀ' ।



'ସ୍କନ୍ଦପୁରାଣ'ରେ ବର୍ଣ୍ଣିତ ଅଛି ଯେ, ''ଅର୍ଦ୍ଧାଶନୀ ତଥା ଲମ୍ଵା କୁବେର ଦିଶି ସଂସ୍ଥିତା'' । ଅର୍ଥାତ୍ ଶଙ୍ଖକ୍ଷେତ୍ରର ଉତ୍ତର ଦିଗରେ ଅର୍ଦ୍ଧାଶନୀ ବା ମାଉସୀମା' ଏବଂ ଅଲମ୍ବା ବା ଆଲାମଚଣ୍ଡୀ ବିରାଜମାନ କରି ଅନ୍ତର୍ବେଦୀକୁ ସୁରକ୍ଷିତ ରଖିଛନ୍ତି ।

### ମା'ଙ୍କର ସ୍ୱରୂପ ଓ ବେଢ଼ାସ୍ଥ ଦେବଦେବୀ

ମା'ଙ୍କ ସଂପୂର୍ଣ୍ଣ ମନ୍ଦିରଟି ତିନିବଖରା ବିଶିଷ୍ଟ । ମନ୍ଦିରର ଦ୍ୱାରଦେଶ ଦୁଇ ପାର୍ଶ୍ୱରେ ଦୁଇଗୋଟି ଗଜସିଂହ ବିଦ୍ୟମାନ । ପ୍ରବେଶ ଦ୍ୱାର ଦେଇ ଭିତରକୁ ଗଲେ ବାହାର ଜଗମୋହନ, ଭିତର ଜଗମୋହନ ଓ ଶେଷରେ ଗର୍ଭଗୃହ ରହିଛି । ବାହାର ଜଗମୋହନରେ ମା'ଙ୍କ ବାହନ ସିଂହ ମା'ଙ୍କୁ ନିତ୍ୟ ଦର୍ଶନ କରୁଅଛି । ବାହନ ସମ୍ମୁଖରେ ଏକ ଯଜ୍ଞକୁଣ୍ଡ ରହିଛି । ମନ୍ଦିର ପରିସରରେ ମା' ଧୂମାବତୀ, ଷୋଡ଼ଶୀ, ମାତଙ୍ଗୀ, କମଳା, କାଳୀ, ତାରା, ଭୈରବୀ, ଛିନ୍ନମସ୍ତା, ଭୁବନେଶ୍ୱରୀ ଓ ବଗଳା ମୁଖୀ ପୂଜା ପାଉଛନ୍ତି । ଭିତର ଜଗମୋହନର ଦ୍ୱାରଦେଶର ଉପରି ଭାଗରେ ନବଗ୍ରହ ପୂଜା ପାଉଥିବା ବେଳେ ଦୁଇଫୁଟ ଉଚ୍ଚତାର ହନୁମାନ ବିଗ୍ରହ ପୂଜା ପାଉଛନ୍ତି । ଗର୍ଭଗୃହରେ ମା'ଙ୍କ ବିମାନଟି ରେଖ ଦେଉଳ ରୀତିରେ ଗଠନ କରାଯାଇଛି । ମା' ହେଉଛନ୍ତି ଚତୁର୍ଭୁଜା ଓ ତ୍ରିନୟନା । ବିମାନରେ ମା' ଏକ ଶବ ଉପରେ ଅବସ୍ଥାନ କରି ଗୋଟିଏ ପାଦ ତଳକୁ ଲମ୍ୱାଇ ଦେଇଛନ୍ତି । ଗ୍ରୀବାରେ ନରମୁଣ୍ଡ ମାଳା ଲମ୍ୱାଇଛନ୍ତି । ବିଗ୍ରହର ଉଚ୍ଚତା ପ୍ରାୟ ଦୁଇଫୁଟ ହୋଇଥିବାବେଳେ ମା' କଳାମୁଗୁନି ପଥରରେ ନିର୍ମିତ ଓ ଅତ୍ୟନ୍ତ କମନୀୟ । ମା'ବାମ ପଟେ ତ୍ରିଶୂଳକୁ ଜାକି ଧରିଛନ୍ତି । ମା' ଦୁଇ ବାମ ହସ୍ତରେ ଖଡ୍ଗ ଓ ପାନପତ୍ର ଧରିଥିବାବେଳେ ଡାହାଣ ଦୁଇ ହାତରେ ପାଶଅଙ୍କୁଶ ଧାରଣ କରିଛନ୍ତି । ଦେବୀଙ୍କର ବାମ ପାର୍ଶ୍ୱରେ ଚଟାଣ ଉପରେ କୃତ୍ତିବାସ ମହାଦେବ ନାମରେ ଶିବଲିଙ୍ଗ ପୂଜା ପାଉଛନ୍ତି । ବଂଶାନୁକ୍ରମିକ ଭାବେ ମା'ଙ୍କର ସେବା-ପୂଜା ପାଢ଼ୀବଂଶର ସେବକମାନେ କରିଆସୁଛନ୍ତି । ମା'ଙ୍କ ବିଗ୍ରହ ପାଖରେ ଚଳନ୍ତି ପ୍ରତିମା ଭାବେ ଦେଢ଼ଫୁଟ ଉଚ୍ଚତାର ଏକ ପିତ୍ତଳ ସିଂହାସନ ଉପରେ ଏକ ଫୁଟ ଉଚ୍ଚତାର ଚତୁର୍ଭୁଜା ପିତ୍ତଳ ଧାତୁ ବିଗ୍ରହ ପୂଜା ପାଉଛନ୍ତି ।

### ଦୈନନ୍ଦିନ ସେବା ପୂଜା

ସକାଳ ୬ଟା ସମୟରେ ମନ୍ଦିର ଦ୍ୱାର ଫିଟାଯାଇ ମା'ଙ୍କ ସ୍ନାନ, ମଇଲମ, ବେଶ ଓ ମଙ୍ଗଳଆଳତି ଅନୁଷ୍ଠିତ ହୁଏ । ସଂଧ୍ୟାରେ ଅନ୍ନଭୋଗ ହୁଏ ନାହିଁ । କେବଳ ପ୍ରତ୍ୟେକ ଦିନ ବାଳଭୋଗ (ଶୁଖିଲା ଭୋଗ) ହୋଇଥାଏ । କିନ୍ତୁ ପ୍ରତ୍ୟେକ ଦିନ ଶ୍ରୀମନ୍ଦିରର ମହାପ୍ରସାଦ ମା'ଙ୍କ ନିକଟରେ ସମର୍ପଣ ହୋଇଥାଏ । ଏଠାରେ ପୂଜକ ମା'ଙ୍କୁ ଷୋଡ଼ଶ ଉପଚାରରେ ପୂଜା କରିଥାନ୍ତି ।

### ମା'ଙ୍କ ପୀଠରେ ଶାରଦୀୟ ପୂଜା

ଶାରଦୀୟ ଦୁର୍ଗାପୂଜା ଅବସରରେ ମା'ଙ୍କ ନିକଟରେ ଷୋଡ଼ଶ ଦିନାତ୍ମକ ପୂଜା ଅନୁଷ୍ଠିତ ହୋଇଥାଏ । ଏହି ପୂଜାରେ ସଂଖୁଡ଼ି(ଆମିଷ) ଭୋଗ ହୁଏ । ଦୁର୍ଗାପୂଜା ବ୍ୟତୀତ ଏଠାରେ ଅନ୍ୟ ଦିନମାନଙ୍କରେ ସଂଖୁଡ଼ି ଭୋଗର ବ୍ୟବସ୍ଥା ନାହିଁ । ଏଠାରେ ମଧ୍ୟ ପଶୁବଳିର ବ୍ୟବସ୍ଥା ମଧ୍ୟ ନାହିଁ । ଗଜପତିଙ୍କ ନଅରରୁ ବରଣ ପାଇ ଜଣେ ବ୍ରାହ୍ମଣ ଏଠାରେ ୧୬ ଦିନ ଚଣ୍ଡୀପାଠ କରନ୍ତି । ପ୍ରକାଶ ଥାଉକି, ଚୈତ୍ର ଶୁକ୍ଳ ପ୍ରତିପଦାଠାରୁ ଶ୍ରୀରାମ ନବମୀ ପର୍ଯ୍ୟନ୍ତ ୯ଦିନ ବାସନ୍ତିକ ଦୁର୍ଗାପୂଜା ସମୟରେ ଏଠି ବିଶେଷ କିଛି ପୂଜା ନୀତି ଅନୁଷ୍ଠିତ ହୁଏ ନାହିଁ ।

### ଶ୍ରୀମନ୍ଦିର ସହ ବିଶେଷ ସଂପର୍କ

ଶ୍ରୀମନ୍ଦିର ସ୍ୱତ୍ୱଲିପିର ପ୍ରଦତ୍ତ ତଥ୍ୟ ଅନୁଯାୟୀ ଶ୍ରୀମନ୍ଦିରକୁ ଆଲାମଚଣ୍ଡୀଙ୍କ ମନ୍ଦିରରୁ ବର୍ଷକୁ ଦୁଇଥର ତାଡ଼ (କୁମ୍ଭକାର ସେବକଙ୍କ ଦ୍ୱାରା ପ୍ରସ୍ତୁତ ମାଟି ପାତ୍ର) ବିଜେ ହୋଇଥାଏ । ମା' ହେଉଛନ୍ତି କୁମ୍ଭକାର ସଂପ୍ରଦାୟର ଉପାସ୍ୟ ଦେବୀ । ସପ୍ତପୁରୀ ଅମାବାସ୍ୟା ଏବଂ ମକର ସଂକ୍ରାନ୍ତି ଏହି ଦୁଇଦିନ କୁମ୍ଭକାର ସେବକମାନେ ବ୍ୟବହୃତ ମାଟି ପାତ୍ରକୁ ତା' ପୂର୍ବଦିନ ମା'ଙ୍କ ମନ୍ଦିରରେ ପହଞ୍ଚାଇ ଥାଆନ୍ତି । ପାତ୍ରରେ ବ୍ୟବହୃତ ଦ୍ରବ୍ୟ ରଖାଯାଏ । ଶ୍ରୀମନ୍ଦିରରୁ ଆଜ୍ଞାମାଳ, ଛତ୍ର, କାହାଳୀ ଆସିଲେ କୁମ୍ଭକାର

ସେବକମାନେ ମୁହଁରେ ବାଘମୁହାଁ ତୁଣ୍ଡି ଭିଡ଼ି ଶୋଭାଯାତ୍ରାରେ ନେଇ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଉଦ୍ଦେଶ୍ୟରେ ଦ୍ରବ୍ୟ ସମର୍ପଣ ନିମନ୍ତେ ପ୍ରଦାନ କରିଥାନ୍ତି ।

**ପଥର ପୋଖରୀ**

ଶ୍ରୀକ୍ଷେତ୍ରର କିମ୍ବଦନ୍ତୀ ପୂର୍ଣ୍ଣ ପୁଷ୍କରିଣୀ ହେଉଛି ଏହି 'ପଥର ପୋଖରୀ' । ମା' ଆଲାମଚଣ୍ଡୀଙ୍କ ମନ୍ଦିର



ସମ୍ମୁଖରେ ପୁଷ୍କରିଣୀଟି ଅବସ୍ଥିତ । ଉକ୍ତ ପୁଷ୍କରିଣୀର ଜଳ ଦେବୀଙ୍କ ଉପାସନାରେ ବ୍ୟବହୃତ ହେଉଥିଲା । ଦାରୁ ନେଇ ଆସୁଥିବା ସେବକମାନେ ଦେବୀଙ୍କ ମନ୍ଦିରରେ ଅବସ୍ଥାନ କରିବା ବେଳେ ଏହି ପବିତ୍ର ପୁଷ୍କରିଣୀର ଜଳ ବ୍ୟବହାର କରୁଥିଲେ । ଉଲ୍ଲେଖଯୋଗ୍ୟ ଯେ, ଏହି ପୁଷ୍କରିଣୀଟି ଦୀର୍ଘଦିନ ଧରି ଅବ୍ୟବହୃତ ହୋଇ ପଡ଼ିଥିଲା । ଗତ ନବକଳେବରରେ ଏହାର ପୁନଃ ଖନନ ଓ ମରାମତି କରାଯାଇ ବ୍ୟବହାର ଉପଯୋଗୀ କରାଯାଇଅଛି ।

**ମା' ଆଲାମଚଣ୍ଡୀ ଓ ନବକଳେବର**

ଶ୍ରୀଜୀଉଙ୍କ ନବକଳେବର ପର୍ବରେ ମା'ଙ୍କ ପୀଠ ହେଉଛି ଦାରୁ ଆଶ୍ରୟସ୍ଥଳୀ । ଦାରୁଶଗଡ଼ି ଶ୍ରୀକ୍ଷେତ୍ରରେ ପ୍ରବେଶ କରିବା ପୂର୍ବରୁ ମା'ଙ୍କ ମନ୍ଦିରଠାରେ ବିଶ୍ରାମ ନେବାର ବିଧି ରହିଛି । ମା' ହେଉଛନ୍ତି ଦାରୁ ଆଗମନର ପଥ ପ୍ରଦର୍ଶିକା ତଥା ପ୍ରଥମ ଦାରୁଙ୍କ ଦର୍ଶନକାରିଣୀ । ଶାସ୍ତ୍ରୀୟ ବିଧି ଅନୁଯାୟୀ ମହାଦାରୁ ମା'ଙ୍କ ମନ୍ଦିର ନିକଟରେ ପହଞ୍ଚିବା ପରେ ଗଜପତି ମହାରାଜାଙ୍କ ତରଫରୁ ଆବଶ୍ୟକୀୟ ଦ୍ରବ୍ୟମାନ ଯୋଗାଇ ଦିଆଯାଇ ମା'ଙ୍କର ମାଜଣା ନୀତି ଅନୁଷ୍ଠିତ ହୁଏ । ଅନ୍ନପ୍ରସାଦ ପ୍ରସ୍ତୁତ ହୋଇ ମା'ଙ୍କୁ ଅର୍ପଣ କରାଯିବା ସହିତ ଦିବ୍ୟଦାରୁଙ୍କୁ ମଧ୍ୟ ଆଳତି ଓ ଶୀତଳ ଭୋଗ ଅର୍ପଣ କରାଯାଇଥାଏ । ଅତୀତରେ ଗଜପତି ମହାରାଜା ନିଜର ପାତ୍ରମନ୍ତ୍ରୀ ଗହଣରେ ମହାଦାରୁଙ୍କ ନିକଟକୁ ଆସି ସେହି ସ୍ଥାନରୁ ମହାପଟୁଆରରେ ଶ୍ରୀମନ୍ଦିର ମଧ୍ୟକୁ ନେବାର ବ୍ୟବସ୍ଥା କରୁଥିଲେ । ଏବେ ଏହିସବୁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ବ୍ୟବସ୍ଥା ଗ୍ରହଣ କରାଯାଉଛି । ଘଣ୍ଟ, ଘଣ୍ଟା, ଛତ୍ର ଓ କାହାଳୀ ସହ ପଟୁଆରରେ ହରିବୋଲ ହୁଳହୁଳି ମଧ୍ୟରେ ଦାରୁଶଗଡ଼ି, ମା'ଆଲାମଚଣ୍ଡୀଙ୍କ ପୀଠରୁ ବାହାରି ବଡ଼ଦାଣ୍ଡ ଦେଇ ଶ୍ରୀମନ୍ଦିରର ଉତ୍ତରଦ୍ୱାର ବାଟେ ପ୍ରବେଶ କରି କୋଇଲି ବୈକୁଣ୍ଠ ପରିସରକୁ ଯାଇଥାଏ ।

'ବାମଦେବ ସଂହିତା'ରୁ ଜଣାଯାଏ ଯେ, ମାର୍ଗଶିର ମାସ କୃଷ୍ଣପଞ୍ଚମୀରେ ଅନୁଷ୍ଠିତ 'ଶ୍ରୀକ୍ଷେତ୍ର ପରିକ୍ରମା'ରେ ଅଂଶଗ୍ରହଣକାରୀ ଭକ୍ତ ତାଙ୍କ ପରିକ୍ରମା ପଥରେ ମା'ଙ୍କ ଦର୍ଶନ କରିବାର ବିଧି ରହିଛି । ସତରେ, ମା'ଙ୍କ ମହିମା ଅବର୍ଣ୍ଣନୀୟ । ମା' ଆଲାମଚଣ୍ଡୀ ଶ୍ରୀକ୍ଷେତ୍ରର ପ୍ରବେଶ ପଥରେ ବିଦ୍ୟମାନ ଥିବାରୁ ଆମେ ମା'ଙ୍କୁ ପ୍ରଣତି ଜ୍ଞାପନ କରି ଶ୍ରୀକ୍ଷେତ୍ରରେ ପ୍ରବେଶ କରିଥାଉ । ମା' ଆଲାମଚଣ୍ଡୀଙ୍କ ଦର୍ଶନ କରିବା ମାତ୍ରେ ଭକ୍ତର ରିପୁ ଖଣ୍ଡନ ହେବା ସହିତ ମନୋବାଞ୍ଛା ପୂର୍ଣ୍ଣ ହୋଇଥାଏ ବୋଲି ଲୋକବିଶ୍ୱାସ ରହିଛି । ଏହି ଦୃଷ୍ଟିରୁ ପୁରୀକୁ ଆସୁଥିବା ଭକ୍ତ ଓ ପର୍ଯ୍ୟଟକଙ୍କ ପାଇଁ ଏହି ମନ୍ଦିର ଆକର୍ଷଣର କେନ୍ଦ୍ର ହୋଇପାରିଛି ।

---

ସମ୍ପାଦକ - 'ଅଭିନନ୍ଦନିକା'
ସେନାପତି ଭବନ, ବଡ଼ଦାଣ୍ଡ, ପୁରୀ-୧



# ମହାମାତୃତ୍ୱର ମହାରୂପ

ଡକ୍ଟର ଭାଗ୍ୟଲିପି ମଲ୍ଲ

**ଏକ**

ସେମାନେ ଦି'ଜଣ, ମାତ୍ର ଜଣେ । ଜଣେ ପାଖରେ ଥାଉ କି ଦୂରରେ, ଅନ୍ୟ ଜଣକ ଭିତରେ ସେ ଗୋଟାପଣେ ବର୍ତ୍ତମାନ ଥାଏ ।

ଦିନକର କଥା– ଦୁହେଁ ଏକାଠି ବସି କଥା ହେଉଥାନ୍ତି । ଜଣେ ଅନ୍ୟ ଜଣକୁ ଚାହିଁଲା– ସିଏ କାଦୁଅରେ କ'ଣ ଗୋଟାଏ ଗଢୁଛି, ଏକ ଲୟରେ । ହସି ଦେଲା । ମନେ ମନେ ଭାବିଲା, ତୁ ଗଢୁଛୁ ସିନା, ମାତ୍ର ତୋ ଗଢ଼ଣର କାରଣ ମୁଁ । ମୁଁ– ଅଧ୍ୟାତ୍ମ, ମୁଁ– ତ୍ୟାଗ, ମୁଁ– ଭୋଗ, ମୁଁ– ପରାକ୍ରମୀ, ମୁଁ– ସୃଜନ, ମୁଁ– ସଂସାର, ମୁଁ– ପରମାଣୁ, ପୁଣି ମହାରେଣୁ । ମାଟିରେ କୁନି କଣ୍ଢେଇ ଘରଟିଏ ଗଢୁଥିବା ଜଣକୁ ଅନ୍ୟ ଜଣକର କଥା ଶୁଭିଗଲା । ସିଏ ବି ହସି ଦେଲା । ତିଆରି କରୁଥିବା ଘରଟିକୁ ଧରେଇ ଦେଲା ଅନ୍ୟ ଜଣକ ହାତରେ । ଘରଟି ଏତେ ସୁନ୍ଦର ଥିଲା ଯେ, ତା' ଉପରେ ଆଖି ପଡୁ ପଡୁ ମୋହଗ୍ରସ୍ତ ହୋଇଗଲେ ଅନ୍ୟ ଜଣକ । ଦେଖିଲେ ଭାରି ସୁନ୍ଦର ଘରଟିଏ । ମଣି–ମାଣିକ୍ୟରେ ଝଲମଲ । କବାଟଟିଏ ବି ଲାଗିଛି । ସେ କବାଟ ଖୋଲି ଭିତରକୁ ଗଲେ, ଦେଖିଲେ, ସୁନ୍ଦର ସବୁଜ ଖେତ । ଖେତରେ ନାନା ଜାତିର ଗଛ, ଲତା, ଫୁଲ, ଫଳ । ଆଉ ତା'ରି ଭିତରେ ତାଙ୍କରି ପରି ଆଉ ଜଣେ । ନିଜକୁ ଦେଖି ଆଶ୍ଚର୍ଯ୍ୟ ହେଲେ ସେ । କିଛିବାଟ ଗଲା ପରେ ଦେଖିଲେ, ଆଉ ଗୋଟିଏ କବାଟ । କବାଟ ଖୋଲି ଭିତରକୁ ଗଲେ । ଭିତରର ଦୃଶ୍ୟ ତାଙ୍କୁ ଅଧିକ ଚକିତ କଲା । ସେଠି ପ୍ରକୃତିର ଉଲ୍ଲାସ । ବ୍ରହ୍ମା, ବିଷ୍ଣୁ, କୁବେର, ଇନ୍ଦ୍ର, ସକଳ ଦେବତା, ଋଷି ଓ ଅପ୍‌ସରାମାନେ ନୃତ୍ୟରତ । ଆଉ ସେମାନଙ୍କ ଗହଣରେ ସେ ନିଜେ ବି । ସେ ନିଜକୁ ଚାହିଁଲେ ଏବଂ ତାଙ୍କଠାରୁ ଦୂରରେ ନାଚୁଥିବା ଆଉ ଜଣକୁ ବି ଚାହିଁଲେ । କିଛି ବୁଝି ପାରିଲେନି ।







ଆଗରେ ଦେଖିଲେ ଆଉ ଗୋଟିଏ କବାଟ । କବାଟ ଖୋଲି ଭିତରକୁ ଗଲେ । ଏଥର ଭିତରର ଦୃଶ୍ୟ ତାଙ୍କ ଅସ୍ତିତ୍ୱକୁ କିମ୍ଭୂତ ଲାଗିଲା । ଦେଖିଲେ, ଜଣେ ଜ୍ୟୋତିର୍ମୟୀ ନାରୀ, ପଲଙ୍କ ଉପରେ ଶୋଇଛନ୍ତି ଏବଂ ତାଙ୍କ ଚାରିପାଖରେ ସମାହିତ ମୁଦ୍ରାରେ ସେବା କରୁଛନ୍ତି ବହୁ ହାତ, ବହୁ ମଥାବିଶିଷ୍ଟ ବ୍ରହ୍ମା, ବିଷ୍ଣୁ ଓ ଶିବ । ସେ ନିଜକୁ ଚାହିଁଲେ, ଚାହିଁଲେ ସେଇ ଜ୍ୟୋତିର୍ମୟୀ ପାଖରେ ନାଚୁଥିବା ତାଙ୍କର ଅନ୍ୟ ଏକ ଅସ୍ତିତ୍ୱକୁ । ଇଏ ତା'ହେଲେ କିଏ ? ଏବଂ କିଏ ସେହି ଦିବ୍ୟ ପଲଙ୍କରେ ଶୋଇଥିବା ଦୀପ୍ତିମୟୀ ?

ରହସ୍ୟ ଖୋଲିଗଲା । ସେ ପୁଣି ନିଜକୁ ଚାହିଁଲେ । ଏବଂ, ଚାହିଁଲେ ତାଙ୍କ ପାଖରେ ବସିଥିବା ସେଇ ଅନ୍ୟ ଜଣକୁ । ଏଥର ଦୁହେଁ ଦୁହିଁଙ୍କୁ ବୁଝିପାରିଲେ । ପଲଙ୍କ ଉପରେ ଶୋଇଥିବା ସେଇ ଦିବ୍ୟସା ଜଣକ- ପ୍ରକୃତି, ପାର୍ବତୀ । ଆଉ ସେ ଅନ୍ୟ ଜଣକ- ପୁରୁଷ, ଶିବ ।

ଏହା ଶିବପୁରାଣର କାହାଣୀ । ଶିବପୁରାଣ ପଢ଼ିଲେ ଲାଗିବ, ସତେଯେପରି ତାହା ଶିବଙ୍କ ଗାଥା । ମାତ୍ର ବାସ୍ତବତଃ ଶିବ ନୁହନ୍ତି, ତାହା ପାର୍ବତୀଙ୍କ କଥା । ପ୍ରକୃତିର କଥା । ନାରୀତ୍ୱର ମର୍ମଗାଥା । ସେହି ନାରୀ ଜଣକ ଜଣେ ପୁରୁଷର କୋଳରେ ବସି ସମଗ୍ର ଜଗତରେ ପୌରୁଷ ଏବଂ ନାରୀତ୍ୱକୁ ମୁକ୍ତଭାବରେ ଅନୁଭବ କରୁଥିବା ଏକମାତ୍ର ପ୍ରତୀକ । ଜଣେ ନାରୀ ନିଜ ପ୍ରତି ସେତିକି ସମର୍ପିତା ନଥିଲେ, ଏକ ଭବଘୁରା ସହିତ ଆଦୌ ସଂସାର ବାନ୍ଧିପାରି ନଥା'ନ୍ତା ଏବଂ ନିଜର ସ୍ୱାଧୀନତାକୁ ପରିପୂର୍ଣ୍ଣ ଭାବରେ ଉପଭୋଗ କରିବାରେ ସମର୍ଥ ହେଉନଥାନ୍ତା । ଭାରତୀୟ ମନୀଷାରେ ସ୍ୱତନ୍ତ୍ର ସୃଜନ, ଶିବ ଓ ପାର୍ବତୀ, ଯେଉଁମାନେ ପରସ୍ପର ଭିନ୍ନ ଅନ୍ୟ ସହିତ ଶାରୀରିକ, ମାନସିକ ସ୍ତରରେ ସମାହିତ ହେବାର ଉଦାହରଣ ନାହିଁ ଏବଂ ଯାହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ଜଣେ ଯୋଗାବିଷ୍ଟ ଥିବାବେଳେ ଅନ୍ୟ ଜଣେ ତା' ଭିତରେ କୁଣ୍ଡଳିନୀ ହୋଇ ତାକୁ ଜାଗ୍ରତ କରୁଥାଏ ଏବଂ କହୁଥାଏ, ମୁଁ ଜାଣେ, ତୁମେ ମୋ'ରିପାଇଁ ତପସ୍ୟା କରୁଛ । ଆଉ ଦେଖ, ମୁଁ ତମରି ଭିତରେ କେତେ ଆନନ୍ଦରେ ବଞ୍ଚିଛି ।

ମାତ୍ର ସେହି ଆନନ୍ଦ ବେଳେବେଳେ ଅଭିମାନରେ ରୂପାନ୍ତର ହୋଇଯାଏ, ପୁଣି ଅଭିମାନ ପ୍ରେମରେ । ସେମାନଙ୍କ ପ୍ରେମକୁ ନେଇ କେତେ କଥା, କେତେ ଚର୍ଚ୍ଚା । ପାର୍ବତୀଙ୍କର ମୁହଁ ଟିକିଏ ଶୁଖିଯାଇଥିଲେ, କାଳେ ଶିବ ବିବ୍ରତ ହୋଇପଡ଼ନ୍ତି । ଦିନକର କଥା । ମୁହଁ ଶୁଖେଇ ବସିଥାନ୍ତି ପାର୍ବତୀ । ପାଖରେ ପହଞ୍ଚିଛନ୍ତି ପରମଯୋଗୀ । କାରଣ ଖୋଜିଛନ୍ତି । ପାର୍ବତୀ କହିଛନ୍ତି- ଦେଖ! ତୁମେ ସକଳ ବ୍ରହ୍ମାଣ୍ଡର ଈଶ୍ୱର । ସକଳ ଐଶ୍ୱର୍ଯ୍ୟର ଅଧିକାରୀ, ପୁଣି ସକଳ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତୀକ । ମାତ୍ର କାହିଁକି ତୁମର ଏ ବିଚିତ୍ର ରୂପ? ଯେଉଁଥିପାଇଁ ସବୁଠି, ଏପରିକି ପିତୃଗୃହରେ ମଧ୍ୟ ମୋତେ ଲାଞ୍ଛନା ସହିବାକୁ ପଡ଼ିଲା? ଦେହରେ ଛିଣ୍ଡା କନାର ବସ୍ତ୍ର, ଗଳାରେ ହାଡ଼-ଖପୁରିର ମାଳ, ପୁଣି ସମଗ୍ର ଶରୀରରେ ପାଉଁଶର ପ୍ରଲେପ । ଏପରି କିମ୍ଭୂତ ବେଶର କାରଣ କ'ଣ ହୋଇପାରେ?

ମହାଯୋଗୀ ଏବେ ଅଳ୍ପ ହସି ଦେଲେ । ଦେବୀଙ୍କ ମୁଣ୍ଡର କେଶକୁ ଧୀରେ ସାଉଁଳେଇ ଦେଲେ । ସେଇ ପରମ-ପ୍ରେମିକ ଜଣକ ଏବେ କହିଲେ- ସଂସାରର ସର୍ଜନା ପାଇଁ ତୁମେ ସିନା ବାରମ୍ବାର ଜନ୍ମ ନିଅ, ମୃତ୍ୟୁ ଲଭ? ହେଲେ ମୋର ନା ଅଛି ଜନ୍ମ, ନା ମୃତ୍ୟୁ । ମୁଁ ଅଜନ୍ମା, ପୁଣି ମୃତ୍ୟୁଞ୍ଜୟୀ । ତେଣୁ ତୁମର ମୃତ୍ୟୁ ପରେ, ପୁଣି ଜନ୍ମ ପର୍ଯ୍ୟନ୍ତ- ତୁମ ବିଚ୍ଛେଦ ସହିବା କ'ଣ ଏତେ ସହଜ! ତେଣୁ ହେ ଦେବି! ମୋ ଦେହରେ ଯେଉଁ ମ୍ଳାନ ବସ୍ତ୍ର ଦେଖୁଛ, ତାହା ତୁମର ହିଁ ଜନ୍ମଜନ୍ମର ବସ୍ତ୍ର, ମୋ ଗଳାରେ ଯେଉଁ ହାଡ଼ମାଳ ଦେଖୁଛ, ତାହା ତୁମ ସବୁ ଜନ୍ମର ଅସ୍ଥି, ଆଉ, ମୋ ଶରୀରରେ ଯେଉଁ ଭସ୍ମ ପ୍ରଲେପନ ଦେଖୁଛ, ତାହା ତୁମ ଶରୀରର ହିଁ ଭସ୍ମାବଶେଷ । ଏ ସକଳ ମୋର ପ୍ରିୟ ଅଳଙ୍କାର, ମୋ ନିଜଠାରୁ ବି ଅଧିକ ପ୍ରିୟ । ତେଣୁ ଏସବୁ ପରିତ୍ୟାଗ କରିବା ପାଇଁ ଆଉ କେବେହେଲେ

ତୁଣ୍ଡରେ ଧରିବ ନାହିଁ । ଏତେବେଳକୁ ପାର୍ବତୀଙ୍କ ଆଖି ସିକ୍ତ ହୋଇସାରିଥିଲା ଅନୁରାଗର ଅଶ୍ରୁରେ ।

ଏଇ ଶିବ-ଅନୁରକ୍ତା ଶକ୍ତିରୂପା ଜଣକ ବହୁ ନାଁରେ ପରିଚିତ । କେଉଁଠି ଦକ୍ଷକନ୍ୟା ସତୀ ତ, କେଉଁଠି ପର୍ବତ (ହିମାଳୟ) ପୁତ୍ରୀ ପାର୍ବତୀ । ପୁଣି କେଉଁଠି ମାହେଶ୍ୱରୀ, ଶାକମ୍ଭରୀ, ନ ହେଲେ ଗୌରୀ । କେତେ କେତେ ନାଁ ତାଙ୍କର । ଭାରତୀୟ ଦର୍ଶନରେ ତ୍ରିଶକ୍ତିଙ୍କ ମଧ୍ୟରେ ସେ ଆଦିଶକ୍ତି ଏବଂ ଦଶମହାବିଦ୍ୟା ତାଙ୍କ ଶକ୍ତିର ଏକ ଏକ ଅଂଶବିଶେଷ ।

ଶାସ୍ତ୍ରରୁ ଆମେ ଏଥର ଜନପଦକୁ ଯିବା । ଭାରତବର୍ଷର ପ୍ରାୟ ପ୍ରତ୍ୟେକ ଜନପଦରେ ତାଙ୍କର ସ୍ଥିତି । କେଉଁଠି କାଠ ତ, କେଉଁଠି ପଥରରେ ତାଙ୍କର ପ୍ରତିମା । କେଉଁଠି ବର୍ଷକୁ ଥରେ ତ, କେଉଁଠି ସବୁଦିନେ ତାଙ୍କର ନୀରାଜନା । କେଉଁଠି ସନ୍ନ୍ୟାସିନୀ ତ, କେଉଁଠି ଦିବ୍ୟଭୂଷା । ସବୁ କାଳରେ ସେ ପୁଣି ପୁରୁଷସଂଲଗ୍ନା । ଯୁଗନଦ୍ଧ ସା । କେଉଁଠି ଅପେକ୍ଷମାଣା ତ, କେଉଁଠି ପ୍ରୀତିଲଗ୍ନା । କେଉଁଠି ସେ ଯୋଗିଆଣୀ ତ, କେଉଁଠି କୃଷିକାରିଣୀ । ପୁଣି କେଉଁଠି ସେ ସଂହାରିଣୀ ତ, କେଉଁଠି ସୃଜନ-ସ୍ୱରୂପିଣୀ । କାରଣ ସେ ଆଦିଶକ୍ତି ।

ଏଇ ଆଦିଶକ୍ତିଙ୍କର ଉତ୍ପତ୍ତି ସଂପର୍କରେ କେତେ କଥା, କେତେ କାହାଣୀ । ପ୍ରଥମେ ସେ ଥିଲେ ଦକ୍ଷକନ୍ୟା ସତୀ । ଶିବ ପତ୍ନୀ । ପୁଣି ପର୍ବତପୁତ୍ରୀ ପାର୍ବତୀ ହେଲେ କିପରି ? କେବଳ ଓଡ଼ିଶା ନୁହେଁ, ଭାରତୀୟ ମନୀଷାର ପ୍ରାୟ ସବୁ ମନ୍ଦିରରେ ତାଙ୍କର ଆବିର୍ଭାବ । କାହିଁକି ? ଏପରି ନାନା ପ୍ରଶ୍ନ ।

ଏସବୁ ପ୍ରଶ୍ନର ଗ୍ରନ୍ଥି ଖୋଲି ଦେବାବେଳେ ଦକ୍ଷଯଜ୍ଞର ପ୍ରସଙ୍ଗ ନିଶ୍ଚୟ ଆଲୋଚନାକୁ ଆସିବ । ଦକ୍ଷଯଜ୍ଞରେ ଶିବଙ୍କୁ ଉପେକ୍ଷା, ଦକ୍ଷକନ୍ୟା ସତୀଙ୍କର ବିନା ନିମନ୍ତ୍ରଣରେ ଯଜ୍ଞୋତ୍ସବରେ ଉପସ୍ଥିତି ଏବଂ ଶିବଙ୍କ ଯୋଗୀବେଶର ଅବମାନନା ସହି ନ ପାରି ସତୀଙ୍କ ଆତ୍ମାହୂତି ପରର ଘଟଣା ହିଁ ସବୁଠୁ କୌତୂହଳପ୍ରଦ । ସତୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ କାନ୍ଧରେ ବୋହି ପାଗଳପ୍ରାୟ ହରହର ମହାଦେବ ତାଣ୍ଡବ ନାଚି ନାଚି ସମଗ୍ର ସୃଷ୍ଟିକୁ ଥରହର କରିଛନ୍ତି । ବିଷ୍ଣୁଙ୍କ ସହାୟତାରେ ସତୀଙ୍କ ଶରୀରର ବିଭିନ୍ନ ଅଂଶ ଏଣେତେଣେ ବିଛାଡ଼ି ହୋଇ ପଡ଼ି ଏକ ଏକ ଶାକ୍ତପୀଠରେ ରୂପାନ୍ତର ହୋଇଛି । ମାତ୍ର ଶିବ? ଶିବ ତାଣ୍ଡବ ନାଚି ନାଚି ଦିନେ ସ୍ଥିର ହୋଇଯାଇଛନ୍ତି । ହୋଇଛନ୍ତି ଯୋଗମଗ୍ନ । କିଏ ଭାଙ୍ଗିବ ମହାଯୋଗୀଙ୍କର ଏ ଯୋଗନିଦ୍ରା ? କିଏ ?

ଏଣେ ତାରକାସୁରର ଦୌରାତ୍ମ୍ୟରେ ସକଳ ସୃଷ୍ଟି ଆତଙ୍କିତ । ତାକୁ ଶିବପୁତ୍ର ହିଁ ଯୁଦ୍ଧରେ ପରାସ୍ତ କରିପାରିବ । ଦେବଲୋକରେ ଭାଳେଣି । ଶିବପୁତ୍ର? ଶିବପୁତ୍ର ଆସିବ କେଉଁଠୁ ? ସତୀ ତ ଏବେ ନାହାନ୍ତି, ଶିବ ଯୋଗନିଦ୍ରାରେ ମଗ୍ନ । କେମିତି ସମ୍ଭବ ହେବ ତାରକାସୁରର ନିଧନ ?

ଆଦିଶକ୍ତିଙ୍କ ପାଖରେ ଦେବଗଣଙ୍କ ସ୍ତୁତି । ହିମାଳୟଙ୍କ ଔରସରୁ, ମେନାଙ୍କ ଗର୍ଭରେ ଜନ୍ମନେବା ପାଇଁ ଆଦିଶକ୍ତିଙ୍କ ସ୍ୱୀକାରୋକ୍ତି । ସତୀ ଏବେ ପର୍ବତପୁତ୍ରୀ ପାର୍ବତୀ । ଶିବଙ୍କ ଧ୍ୟାନ ଭଗ୍ନ ପାଇଁ ତାଙ୍କର ତପସ୍ୟା । କଠୋର ତପସ୍ୟା । ପ୍ରଚଣ୍ଡ ଶୀତରେ ବରଫଗଦାରେ ତପସ୍ୟା ପ୍ରବଳ ଗ୍ରୀଷ୍ମରେ ପଞ୍ଚାଗ୍ନି ଭିତରେ ଶିବମନସ୍କା ।

ତଥାପି ବିଫଳ । ଦେବଲୋକରେ ହତାଶା । ଶେଷରେ ଶରଣାପନ୍ନ ହୋଇଛନ୍ତି ରତିପତି କନ୍ଦର୍ପଙ୍କ ନିକଟରେ । ଶିବଙ୍କ ଧ୍ୟାନଭଙ୍ଗ କେବଳ କନ୍ଦର୍ପଙ୍କ ଦ୍ୱାରା ହିଁ ସମ୍ଭବ । ଦେବକୁଳର ରକ୍ଷା ପାଇଁ ନିଶ୍ଚିତ ମୃତ୍ୟୁକୁ ସାମ୍ନା କରିଛନ୍ତି କନ୍ଦର୍ପ । ଏବେ ଧ୍ୟାନମୁଦ୍ରାର ଚକ୍ଷୁ ଉନ୍ମୀଳିତ । ଆଗରେ ପୁଷ୍ପଧନୁ ସହ ନୃତ୍ୟରତ କନ୍ଦର୍ପ । କାମଶରରେ ବିଦ୍ଧ ମହଯୋଗୀଙ୍କ ଆଖିର ସ୍ଫୁଲିଙ୍ଗରେ ଏବେ ଭସ୍ମୀଭୂତ କନ୍ଦର୍ପ । ଧ୍ୟାନ ଭାଙ୍ଗିଯାଇଛି । ସାମ୍ନାରେ ଅପରୂପା ପାର୍ବତୀ । ପାର୍ବତୀଙ୍କ ଭିତରେ ଏବେ ଭସ୍ମୀଭୂତ କନ୍ଦର୍ପଙ୍କ ବର୍ତ୍ତମାନ ।

ଶେଷରେ ଯୋଗନିଦ୍ରାରୁ ଉଠିଛନ୍ତି ମହାଯୋଗୀ । ପାର୍ବତୀଙ୍କ ଭିତରେ ଦେଖିଛନ୍ତି ପ୍ରାଣପ୍ରିୟା ସତୀଙ୍କୁ । କ୍ରୋଧ ଏବେ ପ୍ରେମରେ ରୂପାନ୍ତରିତ । ସେମାନେ ଶିବ ଆଉ

ପାର୍ବତୀ । ପାର୍ବତୀ, ଶିବଙ୍କର ସକଳ ଶକ୍ତିର ଉତ୍ସ । ସେ ନଥିଲେ କାଳେ ଶିବ, ଶିବ ନୁହନ୍ତି ଶବ । ଦର୍ଶନ ଓ ଜନପଦରେ ନାନା ଭାବ ଓ ରୂପରେ ଜୀବନ୍ତ ଏଇ ପ୍ରକୃତି ସ୍ୱରୂପିଣୀ ଶକ୍ତି, ଆମ ସକଳ ସର୍ଜନରେ ପ୍ରତୀକିତ । ଓଡ଼ିଶାର ପ୍ରାଚୀନ ମନ୍ଦିରଗୁଡ଼ିକରେ ତାଙ୍କ ଉପସ୍ଥିତି ଏହି ବାସ୍ତବତାର ଉଜ୍ଜ୍ୱଳ ଉଦାହରଣ ।

**ଦୁଇ**

ପାର୍ବତୀ, ପର୍ବତ କନ୍ୟା । ଅପର୍ଣ୍ଣା । ପ୍ରକୃତିର ପ୍ରତୀକ । ବିଶ୍ୱ ପ୍ରକୃତି ଓ ପ୍ରାଣ ପ୍ରକୃତି– ଉଭୟ ସକଳ ସର୍ଜନର ଆଦି ଉତ୍ସ । ଏକ ସର୍ବବ୍ୟାପ୍ତ ସତ୍ତା । ସେ ମହାରୂପା । ଅପରୂପା ଓ ରୂପାତୀତ । ସେଥିପାଇଁ ଭାରତୀୟ ଦର୍ଶନରେ ଆଦିଶକ୍ତିଙ୍କର ରୂପ ସକଳ ବିଚିତ୍ରତାର ଉଦ୍‌ଭାସନ । ଗୋଟିଏ ଶବ୍ଦରେ କହିଲେ, ବିରୋଧାଭାସ । ଶାନ୍ତ ଓ ସନ୍ତ୍ରାସ । ଆନନ୍ଦ ଓ ଅଶ୍ରୁ, କାମ ଓ ନିଷ୍କାମ, ଧର୍ମ ଓ ଅଧ୍ୟାତ୍ମ, ମାତୃତ୍ୱ ଓ ସଂହାର, ବିଦ୍ୟା ଓ ଅବିଦ୍ୟା ଏବଂ ଅଧ୍ୟାତ୍ମ ଓ ପ୍ରପଞ୍ଚର ଏକ ସ୍ଥୂଳୀଭୂତ ଅସ୍ତିତ୍ୱ । ଏକଥା ବି କୁହାଯାଏ ଯେ, ସେ ସଂଗୀତ, ନୃତ୍ୟ, ଅଭିନୟପ୍ରବୀଣା ସକଳ ବିଦ୍ୟାର ଅଧୀଶ୍ୱରୀ । ଦିବ୍ୟଦୃଷ୍ଟିସଂପନ୍ନା ଓ ମହାକାଳର ନିୟନ୍ତ୍ରିକା । ସର୍ବରୂପା । ସେ ମାତୃ ରୂପରେ ସ୍ତନ୍ୟଦାନ କରିପାରେ, କ୍ରୋଧ ରୂପରେ ପୁରୁଷର ଛାତି ଉପରେ ଠିଆହୋଇ ନିଜ ଅହଂକୁ ଆଲୋକିତ କରିପାରେ । ଲଜ୍ଜା ରୂପରେ ବିକାରରୁ ମୁକ୍ତି ବି ଦେଇପାରେ । କାମ ରୂପରେ କାଳ କାଳ ଧରି ସର୍ଜନଲିପ୍ତ ରହିପାରେ । ତେଣୁ କୁହାଯାଏ, ପାର୍ବତୀ ସକଳ ଭାବ ଓ ରସର ମହିମ୍ନ ଅଭିପ୍ରକାଶ ।

ପାର୍ବତୀଙ୍କ ରୂପ ଓ ଗୁଣ ସଂପର୍କରେ ଏହା ଦର୍ଶନର କଥା । ଆମ ସାଂସାରିକ ଜୀବନଯାତ୍ରାରେ ସେ ସତେଯେପରି ଆମ ପରି । ନାରୀତ୍ୱର ସ୍ୱାଭାବିକ ପ୍ରତିରୂପ । କେତେବେଳେ କୃଷିକାରିଣୀ, କେତେବେଳେ ଗୋପାଳୁଣୀ, କେତେବେଳେ ଶବରୁଣୀ, କେତେବେଳେ ଯୋଗିଆଣୀ, କେତେବେଳେ ସନ୍ନ୍ୟାସିନୀ, ଆଉ କେତେବେଳେ ବ୍ରତଚାରିଣୀ । ତାଙ୍କ ପରି କରୁଣାମୟୀ ଆଉ ଜଣେ ଦେବୀ ଆମ ସଂସ୍କୃତିରେ ଅନୁପସ୍ଥିତ । ସେ ସବୁବେଳେ ନିଜେ ଭବଘୁରା ପତିଙ୍କ ସହିତ ବଞ୍ଚୁଥାନ୍ତି ଏବଂ ଅଭାବ, ରୋଗ ଓ ଯନ୍ତ୍ରଣାସିକ୍ତମାନଙ୍କୁ ଆନନ୍ଦ ଦେବା ପାଇଁ ତାଙ୍କୁ ପ୍ରାର୍ଥନା କରୁଥାନ୍ତି । କାହାରି ଆଖିରେ ଏତେ ଟିକିଏ ଲୁହ, କି ପେଟରେ ଭୋକ ଆଦୌ ଦେଖିପାରନ୍ତି ନାହିଁ ।

ରାଗର ନିଆଁରେ ଜଳୁଥିବେ, ମା’ ବୋଲି କଅଁଳେଇ ଡାକିଦେଲେ ମମତାର ପଣତରେ ପୋଛି ପକେଇବେ ମନ ତଳର ଯୁଗ ଯୁଗର ଅବସାଦ । ସକଳ ବିପଦକୁ ଆଖି ମିଟିକାରେ ଟାଳିଦେବେ । ସେଥିପାଇଁ ଆମ ପ୍ରତ୍ୟେକ ଗାଁରେ ସେ ଏବଂ ତାଙ୍କ ସହିତ ତାଙ୍କ ସହଯାତ୍ରୀ ପରମଯୋଗୀ ଶିବ । କେଉଁଠି ଏକା ଏବଂ କେଉଁଠି ସ୍ୱାମୀ ସହିତ । ଆମ ସ୍ଥାପତ୍ୟରେ ପାର୍ବତୀଙ୍କ ପ୍ରତିମା ଗଢ଼ଣରେ ରହିଛି ସେହି ସକଳ ଭାବର କଳାତ୍ମକ ଅଭିବ୍ୟକ୍ତି ଏବଂ ନାନା ରୂପ ଓ ଭାବରେ ବିରାଜିତ ଶକ୍ତିପ୍ରତିମାଗୁଡ଼ିକ ସେହି ଆଦିଶକ୍ତି ବା ମହାଶକ୍ତିଙ୍କର ଗୋଟିଏ ଗୋଟିଏ ରୂପାନ୍ତର ମାତ୍ର ।

ପାର୍ବତୀ ଅଛନ୍ତି, କେଉଁଠି ଶିଳା ତ କେଉଁଠି କାଠ ରୂପରେ । ମାତ୍ର ପ୍ରତ୍ୟେକ ଶିବ ମନ୍ଦିରରେ ତାଙ୍କ ବର୍ତ୍ତମାନ ପ୍ରତୀକାତ୍ମକ । ଶିବ ଓ ପାର୍ବତୀ ଯଥାକ୍ରମେ ଲିଙ୍ଗ ଓ ଶକ୍ତିର ପ୍ରତୀକ । ଶକ୍ତି ଭୂମିରୂପା, ଶିବ ଭୂମିସଂଲଗ୍ନ । ଶକ୍ତି, ଶିବ ଓ ଜ୍ୟୋତି ଶକ୍ତି ସୃଜନ ଓ ସମ୍ମୋହନ । ମାତ୍ର ଶିବ ବୀଜ ଓ ସମର୍ପଣ । ଶିବଙ୍କର ସକଳ ଉତ୍ପାତ ଓ ଆନନ୍ଦକୁ ଶକ୍ତି କେବଳ ମୁକ୍ତଭାବରେ ସ୍ୱୀକାର କରିପାରନ୍ତି । ମନ୍ଦିରରେ ଶିବ ଓ ଶକ୍ତିଙ୍କର ମହାମିଳନର ସେହି ପ୍ରତୀକାତ୍ମକ ଅଭିବ୍ୟକ୍ତିକୁ ଭାରତୀୟ ଦର୍ଶନ ପ୍ରକୃତି ଓ ପୁରୁଷର ସର୍ଜନଶୀଳ ପ୍ରବୃତ୍ତି ଭାବରେ ଗ୍ରହଣ କରିଛି । କେତେକ ପାଶ୍ଚାତ୍ୟ ଦାର୍ଶନିକ ଲିଙ୍ଗ–ଶକ୍ତି ପୂଜନର ଏହି କାଳାତୀତ ଅବସ୍ଥାନକୁ ଅଶ୍ଳୀଳତା ବୋଲି କହିଛନ୍ତି । ମାତ୍ର ଆମ ପାଇଁ ସର୍ଜନଶୀଳତା,



ଅଶ୍ଳୀଳତା ନୁହେଁ । ନୁହେଁ ପରିରମ୍ଭଣ ମାତ୍ର, ଏହା ଜନ୍ମ ଓ ମୃତ୍ୟୁ ଊର୍ଦ୍ଧ୍ୱସ୍ଥ ମହାକାଳର ଏକ ଦିବ୍ୟ ଯୁଗ୍ମଯାତ୍ରା । ସମର୍ପିତ ଦେହର ଅନୁଭବ ସବୁ କାଳରେ ପବିତ୍ର ଓ ଅଧ୍ୟାତ୍ମ । ତେଣୁ ଆମ ପାଇଁ ଶିବମନ୍ଦିରରେ ପାର୍ବତୀଙ୍କ ଏହି ପ୍ରତୀକାତ୍ମକ ଉପାସନାକୁ ଭାରତୀୟ ମନୀଷାରେ ଆଦିଶକ୍ତି ପ୍ରତି ସମର୍ପିତ ମାନସିକତା ବୋଲି କୁହାଯାଇଛି ।

ଶିବ ମନ୍ଦିରରେ ଏହି ମହାରୂପାଙ୍କର ପ୍ରତିମା ମଧ ରହିଛି । ପ୍ରତିମାଗୁଡ଼ିକ ନାନା ରୂପ ଓ ଭାବରେ ସମାହିତ । କେଉଁଠି ଗର୍ଭଗୃହରେ ତ କେଉଁଠି ଶିବସଂଯୁକ୍ତ । କେଉଁଠି ମନ୍ଦିରବାଡ଼ରେ ତ, କେଉଁଠି କାନ୍ଥର ଖୋପରେ, ପୁଣି କେଉଁଠି ତାଙ୍କ ପାଇଁ ତିଆରି ସ୍ୱତନ୍ତ୍ର ମନ୍ଦିରରେ ସ୍ୱତନ୍ତ୍ର ରୂପରେ, ପୁଣି ସ୍ୱତନ୍ତ୍ର ଭଙ୍ଗୀରେ । ଓଡ଼ିଶାର ପାର୍ବତୀ ପ୍ରତିମାମାନଙ୍କୁ ଦେଖିଲେ ଲାଗିବ, ସେମାନେ ଯେପରି ଦର୍ଶନର ଦୃଶ୍ୟରୂପା । ସେମାନେ ଶିବମନ୍ଦିରରେ ଅଛନ୍ତି, ଶକ୍ତିମନ୍ଦିରରେ ବି ଅଛନ୍ତି । ଖ୍ରୀଷ୍ଟୀୟ ଅଷ୍ଟମରୁ ପ୍ରାୟ ଅଷ୍ଟାଦଶ ଶତାବ୍ଦୀ ମଧରେ ତାଙ୍କ ରୂପର ବହୁ ଭାବରୂପ ପ୍ରତୀକାୟିତ ।

ଏକାମ୍ର କ୍ଷେତ୍ରରେ, ଲିଙ୍ଗରାଜ ମନ୍ଦିର ବେଢ଼ା ଭିତରେ ପାର୍ବତୀଙ୍କ ପାଇଁ ଏକ ମନ୍ଦିର ଗଢ଼ାଯାଇଛି, ଶ୍ରୀକ୍ଷେତ୍ରର ମହାଲକ୍ଷ୍ମୀଙ୍କ ମନ୍ଦିର ପରି । ଏହା ରେଖଶୈଳୀର, କାରୁକାର୍ଯ୍ୟ ବିମଣ୍ଡିତ । ଗର୍ଭଗୃହରେ ଦେବୀଙ୍କ ପ୍ରତିମା । କଳାମୁଗୁନି ପଥରର ଦେହ । ପଦ୍ମଫୁଲର ପୀଠିକା ଉପରେ ବସିଛନ୍ତି, ଲଳିତାସନରେ । ଡାହାଣ ପାଦ ଝୁଲିପଡ଼ିଛି ତଳକୁ । ଦୁଇଟି ହାତ । ବାମ ହାତରେ ଅମୃତପାତ୍ର । ଡାହାଣ ହାତରେ ଲମ୍ବା ନାଡ଼ଯୁକ୍ତ ପଦ୍ମ । ଟଣାଟଣା ଆଖି । ଧନୁ ପରି ଭ୍ରୂଲତା । ନାକରେ ନୋଥ, ସରୁ ଓଠରେ ସ୍ମିତହସର ରେଖା, ମୁହଁରେ ଚନ୍ଦନ, କସ୍ତୁରୀ, ସିନ୍ଦୂର ଓ ହଳଦୀର ଘନ ପ୍ରଲେପ । ଦୁଇପାଖରେ ଦୁଇଜଣ ପରିଚାରିକା । ହାତରେ ଶଙ୍ଖ ଓ ତୂରୀ । ଯେପରି ବାଦନରତା ।

ମନ୍ଦିର ବେଢ଼ାରେ ଥିବା କାର୍ତ୍ତିକେଶ୍ୱର ମନ୍ଦିରର ରାହା ଖୋପରେ ଅଛନ୍ତି ଦେବୀ ପାର୍ବତୀ । ପୁଅ ପାଖରେ ମା' । ମାତ୍ର ତାଙ୍କ ଭଗ୍ନଦେହ ଏତେ ଅସହାୟ ଯେ, ମାତୃତ୍ୱର ଭାବରୂପକୁ ପୂର୍ଣ୍ଣତଃ ଅନୁଭବ କରି ହେଉନାହିଁ । ଏକାମ୍ରକ୍ଷେତ୍ରର ଅନ୍ୟତମ ପରିଚିତ ମନ୍ଦିର କେଦାରଗୌରୀ । ଦେବୀ ଗୌରୀ ପୂଜା ପାଉଛନ୍ତି ବେଢ଼ା ଭିତରେ, ଏକ ସ୍ୱତନ୍ତ୍ର ମନ୍ଦିରରେ । ଢାଉ ରଙ୍ଗର ମନ୍ଦିରଟିଏ । ପଥରରେ ସତେକି କଳାର କିମିଆଁ । ଭିତରେ ମାଆ ପାର୍ବତୀ । କଳାମୁଗୁନି ପଥରରେ ଗଢ଼ା ତାଙ୍କ ଶରୀର । ଉଚ୍ଚତା ପ୍ରାୟ ଚାରିଫୁଟ । ଏଠି ମା' ଠିଆ ହୋଇଛନ୍ତି । ଚାରି ହାତ । ଉପର ବାମ ହାତରେ ଫାର୍ଶା, ଡାହାଣ ହାତରେ ନାଗପାଶ । ତଳ ବାମ ହାତର ପାପୁଲି ଅଧାମୁଦା । ଡାହାଣ ହାତରେ ମୁଦ୍ରା । ସ୍ୱତନ୍ତ୍ର । ସତେଯେପରି ଛୁଇଁଯିବ ବାମ ହାତର ପାପୁଲିକୁ । ପାପୁଲିରେ ସଂଚିତ ପ୍ରସାଧନ ସାମଗ୍ରୀରେ ଉଜ୍ଜ୍ୱଳତମ କରିଦେବ ନିଜ ମୁହଁ, ସମସ୍ତଙ୍କୁ ପୂର୍ଣ୍ଣ କରିଦବ ତା' ସିନ୍ଦୂର ବିନ୍ଦୁରେ । ସରୁ ସରୁ ଅଧର ଓ ଟଣାଟଣା ଆଖିରେ ବିଶ୍ୱକୁ ବଶ କରିବାର ମନ୍ତ୍ର । ଗୌରୀ ମନ୍ତ୍ର । ତାଙ୍କୁ ଦେଖିଲେ ଲାଗିବ, ତାଙ୍କପରି କମନୀୟ ପ୍ରତିମା, ଏକାମ୍ର କ୍ଷେତ୍ରରେ ଅଦ୍ୱିତୀୟ । ପୁଣି ତାଙ୍କ ଦୁଇପାଖରେ ଅଛନ୍ତି ଦୁଇ ସହଚରୀ, ବାମ ପାଖରେ ବାହନ ସିଂହ ଓ ଡାହାଣ ପାଖରେ ହରିଣ । ଶକ୍ତି ହିଁ କେବଳ ଖାଦ୍ୟ ଓ ଖାଦକକୁ ମିତ୍ରମନ୍ତ୍ରରେ ମୁଗ୍ଧ କରିପାରେ ।

ଏବେ ଅନ୍ୟ ଶକ୍ତି ମନ୍ଦିରଗୁଡ଼ିକରେ ପାର୍ବତୀଙ୍କ ସ୍ୱରୂପକୁ ସ୍ଥାପତ୍ୟ ମାଧ୍ୟମରେ ଅନୁଭବ କରାଯାଇପାରେ । ଭୁବନେଶ୍ୱରର ବୈତାଳ ମନ୍ଦିରର ଦକ୍ଷିଣପାଖ ରାହାରେ ସେ । ଡାହାଣ ହାତରେ ତ୍ରିଶୂଳ, ନିମ୍ନଭାଗ ପାଦ ଛୁଉଁଛି । ରଣରଂଗିନୀ ରୂପ । ଗୋପାଳୁଣୀ ମନ୍ଦିରର ପଶ୍ଚିମ ରାହାରେ ଥିବା ତାଙ୍କ ପ୍ରତିମାର ଡାହାଣ ହାତରେ ଅଙ୍କୁଶ ଓ ବାମ ହାତରେ ନାଗପାଶ । ପାର୍ବତୀ ମନ୍ଦିରର ଉତ୍ତର ରାହାରେ, ଦେବୀଙ୍କ ହାତରେ ଅଂକୁଶ ଓ କମଣ୍ଡଳୁ । ପାଟଣାଗଡ଼ର ପାଟଣେଶ୍ୱରୀଙ୍କ ବେଢ଼ାର ପାର୍ବତୀ ତପସ୍ୱିନୀ । ଜନ୍ମ ପ୍ରାୟ ଦଶମ ଶତାବ୍ଦୀ । ସେ ଠିଆ ହୋଇଛନ୍ତି ବାମ ଗୋଡ଼ରେ । ପ୍ରିୟତମଙ୍କୁ ପାଇବା ପାଇଁ

ତାଙ୍କର ଏ କୃଚ୍ଛ୍ର ସାଧନା । ସମକାଳରେ, ପାର୍ବତୀଙ୍କ ପଞ୍ଚାଗ୍ନି ତପସ୍ୟା ପ୍ରତିମା ଭାରତର ବହୁ ସ୍ଥାନରେ ପୂଜା ପାଉଛନ୍ତି । ପାଟଣାଗଡ଼ର ପାର୍ବତୀ, ଏହି ଭାବାଦର୍ଶର ଏକ ଉଦାହରଣ । ଦେବୀଙ୍କ ଦକ୍ଷିଣ ପାଖରେ ରହିଛନ୍ତି ଶିବ, ଲିଙ୍ଗ ରୂପରେ । ପାଖରେ ସମ୍ଭବତଃ ଅଦୃଶ୍ୟ ଗଣେଶ । ଚିହ୍ନି ହେଉନାହାନ୍ତି । ଉପରେ ନବଗ୍ରହ ପ୍ୟାନେଲ ।

ବହୁ ମନ୍ଦିରରେ ପାର୍ବତୀଙ୍କ ପ୍ରତିମା ବହୁଭୁଜ ବିଶିଷ୍ଟ- ସଂଖ୍ୟାରେ ଦୁଇରୁ ଅଠର । ବାଣପୁରର ଦକ୍ଷ ପ୍ରଜାପତି ମନ୍ଦିର ଓ ମେଘେଶ୍ୱର ମନ୍ଦିରରେ ଦେବୀଙ୍କର ବନଦୁର୍ଗା ରୂପ । ଚାରି ହାତରେ ଶଙ୍ଖ, ଚକ୍ର, ଖଡ଼୍‌ଗ ଓ ଗଦା । ଖିଚିଂର ପାର୍ବତୀ ଷଡ଼୍‌ଭୁଜା । ଅନ୍ୟ ଅସ୍ତ୍ର ସହିତ ହାତରେ ରହିଛି କମଣ୍ଡଳୁ ଓ ଅକ୍ଷମାଳ । ଖିଚିଂ ସଂଗ୍ରହାଳୟରେ ଥିବା ଶିବ-ପାର୍ବତୀଙ୍କର ଯୁଗଳ ପ୍ରତିମା ଉତ୍କଳୀୟ କଳାବୋଧର ଅନୁପମ ଉଦାହରଣ । ଏହି ଯୁଗ୍ମପ୍ରତିମା ଆକାରରେ ବିଶାଳ । ସେମାନଙ୍କ ଅଙ୍ଗର ଭଙ୍ଗୀକୁ ଦେଖିଲେ, ଶୃଙ୍ଗାର ଭାବ-ସମାହିତ ମୁଦ୍ରାର ପ୍ରସ୍ତରାୟନ ଯେ ଏତେ ଚିତ୍ତପ୍ରସାଦକ ହୋଇପାରେ, ସହଜରେ ବିଶ୍ୱାସ କରିହୁଏ ନାହିଁ ।

ମଧୁକେଶ୍ୱର ମନ୍ଦିରର ଦକ୍ଷିଣ କାନ୍ଥର ଖୋପର ପାର୍ବତୀ ଅଷ୍ଟଭୁଜା । ଠିଆ ହୋଇଛନ୍ତି ସମଭଙ୍ଗ ମୁଦ୍ରାରେ । ଦୁଇପାଖରେ ପରିଚାରିକା । ପାଦ ତଳେ ବାହନ ସିଂହ । ଦୁର୍ଗାରୂପା କହିହେବ । କଲିକତାର ଇଣ୍ଡିଆନ ମ୍ୟୁଜିୟମ୍‌ରେ ଏହିପରି ପ୍ରତିମାଟିଏ ଅଛନ୍ତି । ସୋନପୁରର ଖମ୍ବେଶ୍ୱରୀ ଓ ମଣିନାଗେଶ୍ୱର ମନ୍ଦିରର ଜଗମୋହନର ପାର୍ବତୀଙ୍କ ହାତସଂଖ୍ୟା ଯଥାକ୍ରମେ ଚଉଦ ଓ ଅଠର । ପ୍ରତିମାମାନେ ବିଶାଳ ନୁହନ୍ତି, ପ୍ରାୟ ଦୁଇଫୁଟ ଉଚ୍ଚତା ବିଶିଷ୍ଟ । କଳାମୁଗୁନି ପଥରରେ ଗଢ଼ା । କମନୀୟ । ଏତେ ପ୍ରାଚୀନ ପରି ଲାଗନ୍ତି ନାହିଁ । ପ୍ରାୟ ଅଷ୍ଟାଦଶ/ଊନବିଂଶ ଶତାବ୍ଦୀର କଳାକର୍ମ ।

ଓଡ଼ିଶାର ପ୍ରାଚୀନ ମନ୍ଦିରରେ ପାର୍ବତୀଙ୍କ ପ୍ରତିମା ସଂପର୍କରେ ସଂକ୍ଷେପରେ ଏତିକିମାତ୍ର କୁହାଯାଇପାରିବ, ସେ କେଉଁଠି ଆସୀନା ତ, କେଉଁଠି ଦଣ୍ଡାୟମାନା, କେଉଁଠି ତପସ୍ୱିନୀ, କେଉଁଠି ସୁହାସିନୀ, ତ କେଉଁଠି ସଂହାରିଣୀ । କେଉଁଠି ଅଭିସାରିକା, କେଉଁଠି ବୈଷ୍ଣବୀ । କେଉଁଠି ହାତରେ ପାଶ, ଅଂକୁଶ, ତ୍ରିଶୂଳ, ଖଡ଼୍‌ଗ, କମଣ୍ଡଳୁ ଓ ଅକ୍ଷମାଳା, ପୁଣି କେଉଁଠି ପଦ୍ମ ତ କେଉଁଠି ଶୃଙ୍ଗାର ପାଇଁ ହାତରେ ଦର୍ପଣ । କେଉଁଠି ନିଜ ସୃଷ୍ଟ ଶକ୍ତିରୂପାମାନଙ୍କ ମନ୍ଦିରର କାନ୍ଥର ଖୋପରେ ତ, କେଉଁଠି ନିଜ ପାଇଁ ସ୍ୱତନ୍ତ୍ର ମନ୍ଦିରରେ ଅଭିଷିକ୍ତା । କେଉଁଠି ସାଳଂକୃତା, ପୁଣି କେଉଁଠି ସ୍ୱଳ୍ପଭୂଷା । ସବୁ ପ୍ରତିମାର ଗଢ଼ଣ ସ୍ୱତନ୍ତ୍ର । ବେଶ ବି ଭାବ ଅନୁରୂପ । ମାତ୍ର ପ୍ରତ୍ୟେକଙ୍କ ମୁଖମଣ୍ଡଳରେ ବାତ୍ସଲ୍ୟ, ପ୍ରେମ, ସଂହାର, ସନ୍ନ୍ୟାସ ଓ ସହୃଦୟତାବୋଧର ଯେପରି ଏହା ସାମସଂଗୀତ । ଏହି ସାମସଂଗୀତର ସ୍ୱରରେ ଦେବୀ ପାର୍ବତୀ ଚିର ସ୍ପନ୍ଦିତା, ଅଭିମନ୍ତ୍ରିତା ।

## ତିନି

ପ୍ରକୃତିରୂପିଣୀ ଶକ୍ତିଙ୍କୁ ଆମେ ପ୍ରଥମେ 'ସତୀ' ରୂପରେ ଭେଟିଥିଲେ । ସତୀ, ପରେ 'ପାର୍ବତୀ'ରେ ରୂପାନ୍ତର ହେଲେ । ଏବେ ପାର୍ବତୀଙ୍କ 'ଦୁର୍ଗା' ରୂପର ଅବତାରଣା । କାହିଁକି ତାଙ୍କର ଏତେ ରୂପର ଅଭିସାର? ପୁଣି ଏ ଅଭିସାର କେବେ ଦର୍ଶନରେ ତ, କେବେ ସାହିତ୍ୟରେ, ପୁଣି କେବେ କଳାରେ ତ କେବେ ପ୍ରତିମାରେ । ତାଙ୍କୁ କହୁଛୁ ଦୁର୍ଗତିନାଶିନୀ । ଶକ୍ତି ଓ ମୁକ୍ତିପ୍ରଦାୟିନୀ । ମାତ୍ର ପ୍ରକୃତିର ଏମିତି ନାନା ରୂପ ଆମେ କାହିଁକି ତିଆରି କରିଛୁ ଆମ ଚେତନା ଜଗତରେ ? ପୁଣି ନାନା ଭୂମିରେ, ନାନା ମାନସିକତାର ସର୍ଜନା । ମାତ୍ର ଏଇ ପ୍ରତିମା ମାନସିକତା ପଛର କାହାଣୀ ସେଇ ଗୋଟିଏ ।

ଜଣେ ଅ-ସୁର ଥିଲା । ନାଁ ମହିଷାସୁର । ଅ-ସୁର ଅସୁନ୍ଦର ହେବାକୁ ବାଧ୍ୟ । ରୂପ ମଇଁଷି ପରି । ରଙ୍ଗ କଳା, ଆଖିର ଡୋଳା ଲାଲ ଲାଲ, ଜଳନ୍ତା ନିଆଁ ପରି । ସଦା କ୍ରୋଧିତ । ପେଟରେ ଅତୃପ୍ତ ଭୋକ । ଯାହା ଦିଅ, ଖାଇଯିବ । ଦେହରେ ପ୍ରବଳ ବଳ । ତେଣୁ ପ୍ରଚଣ୍ଡ । ଏତେ ପ୍ରଚଣ୍ଡ ଯେ, ଯାହା ଇଚ୍ଛା, ତାହା ନିଶ୍ଚୟ କରିବ । ଦିନେ

ଅନୁଭବ କଲା ସୁରମାନେ ହିଁ ତା'ର ପ୍ରବୃତ୍ତି ପରିତୃପ୍ତିର ପ୍ରଧାନ ଅନ୍ତରାୟ । ସକଳ ଦୁଃଖର କାରଣ । ସେମାନଙ୍କୁ ପରାଭବ ଦେବାକୁ ପଡ଼ିବ । ମାତ୍ର ସୁରମାନଙ୍କୁ ଦମନ କରିବା କ'ଣ ଏତେ ସହଜ ?

ମହିଷାସୁର ମନେମନେ ଭାବିଲା- ଅସମ୍ଭବ ନୁହେଁ ଆଦୌ । ସେ ନିଜର ଅନ୍ତଃପ୍ରକୃତିକୁ ଆକଳନ କଲା । ଭିତରୁ ଯେମିତି କେହି ଜଣେ କହୁଥିବାର ସେ ଶୁଣିଲା ''ମୁଁ ତ ତୋରି ଭିତରେ ଅଛି । ମୁଁ ହିଁ ତୁ, ଆଉ ତୁ ହିଁ ମୁଁ । ଆମେ ଏକ ଓ ଅଭିନ୍ନ । ତୁ ମୋତେ ଜାଗ୍ରତ କରିଦେ । ମୋ ପ୍ରାଣସତ୍ତାକୁ ତୋ ଚେତନାରେ ସଂଚରି ଦେ, ନିଜକୁ ଆବିଷ୍କାର କରିପାରିବୁ । ଆତ୍ମଶକ୍ତିର ଆବିଷ୍କରଣରେ ସମର୍ଥ ହେଲେ । ଆପେ ଏକ ଅପରାହତ, ଅପରାଜିତ ଶକ୍ତିରେ ରୂପାନ୍ତର ହୋଇପାରିବୁ ।''

ଅ-ସୁର ମହିଷାସୁର ନିଜ ଆତ୍ମାରେ କ୍ରିୟାଶୀଳ ଆଦ୍ୟାଶକ୍ତିଙ୍କ ଆହ୍ୱାନକୁ ଶୁଣିପାରିଲା । ଆତ୍ମାର ଅନୁଭବ ତାକୁ ଯେମିତି ଉଚ୍ଚାଟ କଲା । ନିଜକୁ ପ୍ରକୃତିରେ ରୂପାନ୍ତର ପାଇଁ ସାଧନା ଆରମ୍ଭ କରିଦେଲା । ସାଧନା, ଅର୍ଥାତ୍ ତପସ୍ୟା । ମାତ୍ର କାହାକୁ ତୁଷ୍ଟ କରିବ ସେ ? କାହାକୁ ତୁଷ୍ଟ କଲେ 'ଶକ୍ତି' ପ୍ରସନ୍ନ ହେବେ ? କିଏ ସେ ?

ତତ୍କ୍ଷଣାତ୍ ସବୁ ପ୍ରଶ୍ନର ସମାଧାନ ମିଳିଗଲା ତାକୁ । ମହିଷା ଅନୁଭବ କଲା, ସେ ଜଣକ ଅନ୍ୟ କେହି ନୁହନ୍ତି, ସ୍ୱୟଂ ଶିବ । ଶକ୍ତି-ନିୟନ୍ତ୍ରିତ, ପୁଣି ଶକ୍ତିକୁ ନିୟନ୍ତ୍ରଣ କରୁଥିବା ଏକ ସର୍ବତ୍ୟାଗୀ ସତ୍ତା । ସେହି ସଂସାରୀ-ସନ୍ନ୍ୟାସୀଙ୍କୁ ତୁଷ୍ଟ କରିପାରିଲେ, ଶକ୍ତିକୁ ଜାଗ୍ରତ କରିହେବ । ସେ ହିଁ ଏକମାତ୍ର ପୁରୁଷ । ମାତ୍ର ଶକ୍ତି-ନିୟନ୍ତ୍ରିତ ଶିବ ନାମକ ଏକ ମହାଚେତନାର ପ୍ରାଣସତ୍ତାକୁ ଆନ୍ଦୋଳିତ ଓ ତୁଷ୍ଟ କରିବା କ'ଣ ସମ୍ଭବ ? ହଁ, ଅସମ୍ଭବ ଆଦୌ ନୁହେଁ ! ସମ୍ଭବ- ଯଦି ନିଜ ପୌରୁଷକୁ ତାଙ୍କୁ ସମର୍ପଣ କରାଯାଇପାରିବ ।

ମହିଷାକୁ ଏଥର ଉପାୟ ମିଳିଗଲା । ଶକ୍ତିଲାଭ ପାଇଁ ଶିବ-ତୁଷ୍ଟୀକରଣରେ ନିଜ ପ୍ରବୃତ୍ତିକୁ ବିନିଯୋଗ କଲା । ପ୍ରତିଜ୍ଞା କଲା, ସମର୍ପଣ କରିଦେବ ନିଜ ପ୍ରାଣଶକ୍ତିକୁ । ଆରମ୍ଭ ହେଲା ଯାତ୍ରା । ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ- ଅନାହତ ଯାତ୍ରା । ଅନ୍ନ ଛାଡ଼ିଲା, ଜଳ ବି । ଜଳନ୍ତା ନିଆଁରେ ପଶିଲା, ଅଗାଧ ଜଳରେ ବି । ତୁଣ୍ଡରେ ଏକମାତ୍ର ନାଦ- ଶିବ, ଶିବ, ଶିବ । ନାଦ କ୍ରମଶଃ ରୂପାନ୍ତରିତ ହେଲା ମହନାଦରେ । ଶେଷକୁ ନିଜର ଅସ୍ତିତ୍ୱକୁ ମହାରୂପ ଭିତରେ ଏକାକାର କରିଦେବା ପାଇଁ ପ୍ରଚଣ୍ଡ ଇଚ୍ଛାଶକ୍ତି ଜାଗ୍ରତ ହେଲା ତା' ଚେତନାରେ । ମୃତ୍ୟୁଞ୍ଜୟୀ ଶିବ ଏବେ ଅନୁଭବ କଲେ କେହି ଜଣକର ଆତ୍ମଶକ୍ତି ଓ ଏକାଗ୍ରତାକୁ । ସ୍ୱୟଂ ଆବିର୍ଭୂତ ହେଲେ । ମୁହଁରେ ପ୍ରସନ୍ନ ଜ୍ୟୋତି । କହିଲେ, ମୁଁ ପ୍ରସନ୍ନ, ତୋର ଯାହା ଇଚ୍ଛା ମାଗିନେ, ମାତ୍ର ଅମର ବର ବ୍ୟତୀତ ।

ମହିଷାସୁରର ପ୍ରସ୍ତାବ- ମୋର ଅନ୍ୟ କିଛି ଲୋଡ଼ା ନାହିଁ, କେବଳ ଶକ୍ତିଙ୍କର କରୁଣା । ଉତ୍ତର- ତଥାସ୍ତୁ । ମାତ୍ର ସର୍ତ୍ତ ଥିଲା- ଇଚ୍ଛାଶକ୍ତି ଏବେ ତୋ'ଠାରୁ ଦୂରସ୍ଥ ନୁହେଁ, ପ୍ରୟୋଗ କରିପାରୁ । ମାତ୍ର ଯେଉଁ ମୁହୂର୍ତ୍ତରେ ତୁ ଶକ୍ତିକୁ ଅମର୍ଯ୍ୟାଦା କରିବୁ, ଶକ୍ତିର ଶକ୍ତିକୁ ଅସ୍ୱୀକାର କରିବୁ, ଶକ୍ତି ଉପଭୋଗମନସ୍କ ହେବୁ- ସେହି ମୁହୂର୍ତ୍ତରେ ହିଁ ତୁ ଶକ୍ତିହୀନ ହୋଇଯିବୁ । ଶକ୍ତିଙ୍କର ଅମର୍ଯ୍ୟାଦା ହିଁ ଶକ୍ତିହୀନତା, ପ୍ରାଣସତ୍ତାର କରୁଣ ଶେଷକଥା ।

ମହିଷା ହଁ କହିଲା । ପ୍ରଣିପାତ କଲା ମହାଯୋଗୀଙ୍କୁ । ଏବେ ପ୍ରକୃତି ଜଗତକୁ ଫେରିଲା ଏକ ଅତିପ୍ରାକୃତିକ ଜଗତରୁ । ଆରମ୍ଭ ହୋଇଗଲା ସୁର-ନିସୂଦନୀ ଯାତ୍ରା, ଅପ୍ରତିହତ ଯାତ୍ରା । ଶକ୍ତି-ସଂଯୁକ୍ତ ଯାତ୍ରା । ଏକମାତ୍ର ଲକ୍ଷ୍ୟ, ସୁର-ନିସୂଦନ ।

ଶକ୍ତିଦୀପ୍ତ ମହିଷାସୁରର ଏବେ ସମର ଯାତ୍ରା । ଏକା ଏକା । ଯାତ୍ରାର ଆରମ୍ଭ ପୃଥିବୀରୁ ଅମରାବତୀ, ଅ-ମରମାନଙ୍କର ଭୂମି । ଅମର ହେବାକୁ ପ୍ରାର୍ଥନା କରୁଥିଲା, ଅମର ବରଦାନରୁ ବଂଚିତ ହେଲା ସତ, ମାତ୍ର ଅମରମାନଙ୍କୁ ତ ଦାସ କରାଯାଇପାରିବ ? କାଳ କାଳ ଧରି ଏଇ ଅମରମାନେ ଇ ତା'ର ବଂଶଧରମାନଙ୍କୁ



ଶୋଷଣ କରିଆସିଛନ୍ତି । ସେ ସେମାନଙ୍କୁ ପରାଭବ ଅବଶ୍ୟ ଦେବ ।

ମହିଷାର ଶକ୍ତି ଏତେ ଅମିତ ଓ ଅପ୍ରତିହତ ଥିଲା ଯେ, ତା'ର ଉପସ୍ଥିତି ମାତ୍ରକେ ହିଁ ସକଳ ଅମର ଶକ୍ତିହୀନତାକୁ ସ୍ୱୀକାର କରିବାକୁ ବାଧ୍ୟ ହେଉଥିଲେ । କିଏ ବନ୍ଦୀ ତ କିଏ ପଳାତକ । ମାତ୍ର ପ୍ରତ୍ୟେକେ ମହିଷାର ସେବକମାତ୍ର । କିଏ ପାଦ ମଞ୍ଜାଳୁଛି, କିଏ ଆଲଟ ଚାମର କରୁଛି ତ, କିଏ ଭୋଜନ ପ୍ରସ୍ତୁତ କରୁଛି, ପୁଣି କିଏ ଭଣ୍ଡାର ଘରର ରକ୍ଷକ । କିଏ ମନୋରଂଜନ ପାଇଁ ହାତରେ ଧରିଛି ପାନପାତ୍ର, କାହା ପାଦରେ ଛନ୍ଦ ତ, କାହା କଣ୍ଠରେ ସୁର । ଇଚ୍ଛାମାତ୍ରକେ, ମୁହୂର୍ତ୍ତକରେ ସେ ପରିକ୍ରମଣ କରିପାରୁଛି ତ୍ରିଭୁବନ । ପୂରଣ କରିପାରୁଛି ଯାବତୀୟ ଆବଶ୍ୟକତା । ସେ ବୀର କ୍ଷମତା, ବିଦ୍ୟାର କ୍ଷମତା, ନିରଙ୍କୁଶ କ୍ଷମତା । ଗୋଟିଏ ଶବ୍ଦରେ କହିଲେ, ସେ ଏବେ ବିକଳ୍ପହୀନ କ୍ଷମତା ।

କ୍ଷମତାମତ୍ତ ମହିଷାସୁର ଏବେ ଭୁଲିଗଲା ଯେ ନିରଙ୍କୁଶବୋଧ ହିଁ ଜଣକର ବିପତ୍ତି ଓ ବିପର୍ଯ୍ୟୟର କାରଣ । ଦେବତାମାନଙ୍କ ଅସହାୟତା ତାକୁ ହସାଉଥିଲା । ସେ ହସୁଥିଲା ବିକଟାଳ ହସ- ହାଃ... ହାଃ... ହାଃ... । ହସର ଶବ୍ଦରେ ସେ ପୁଲକିତ ହେଉଥିଲା । ପୁଲକ ତାକୁ କ୍ରମଶଃ ରୂପାନ୍ତର କରିଥିଲା ଉପଭୋକ୍ତାରେ । ଆଖି ବିସ୍ଫାରିତ ହେବାକୁ ଲାଗିଲା । ସେ ଆଖି ପଡ଼ିଲା ସୁର-ତରୁଣୀଙ୍କ ଉପରେ । ଲାଖିଗଲା ଚେତନା । ଚହଲିଗଲା ଏକାଗ୍ରତା । ଚମକି ପଡ଼ିଲା । ଚେଇଁଉଠିଲା ଆସୁରିକ ପ୍ରବୃତ୍ତି । ଅନୁଭବ କଲା, ଏଇମାନେ ହିଁ ସୁରମାନଙ୍କର ପ୍ରୀତିପ୍ରଦ, ଚିତ୍ତପ୍ରସାଦକ ଖାଦ୍ୟ ।

ମହିଷାର ଏପରି ଏକ କ୍ଷମତା-ପ୍ରମତ୍ତ ଅସହାୟ ମୁହୂର୍ତ୍ତକୁ ସମ୍ଭବତଃ ଅପେକ୍ଷା କରିଥିଲେ ସୁରଗଣ । ପ୍ରାର୍ଥନା କଲେ ମହାଯୋଗୀଙ୍କୁ । ପ୍ରାର୍ଥନା ଥିଲା ଏମିତି- ହେ ଦେବ! ତୁମ ପ୍ରକୃତିର ସତ୍ତା ଏବେ ବିପନ୍ନ । ତୁମେ, ତୁମେ ହିଁ କେବଳ ତାକୁ ରକ୍ଷା କରିପାରିବ ।

ମହାଯୋଗୀଙ୍କ ଉତ୍ତର ଥିଲା, ମୁଁ ନିମିତ୍ତ ମାତ୍ର । ମୁଁ ଶକ୍ତି-ନିୟନ୍ତ୍ରିତ । ସେଇ ଶକ୍ତି ହିଁ ତୁମମାନଙ୍କୁ କେବଳ ନିରାପତ୍ତା ଦେଇପାରିବେ । ଶକ୍ତିଙ୍କର ଶରଣାପନ୍ନ ହୁଅ ।

ଅସହାୟ ଦେବଗଣ ଏଥର ଶକ୍ତିଙ୍କ ପାଦ ପାଖରେ । ନତଜାନୁ, ଯୋଡ଼ହସ୍ତ । ଶବ୍ଦ ଥିଲା ଏତିକି ମାତ୍ରଃ ତୁମେ ଏବେ ବିପନ୍ନ ମା' । ତୁମେ ହିଁ ନିଜେ ନିଜକୁ ସୁରକ୍ଷା ଦେଇପାରିବ ।

ଦେବତାଙ୍କ ପ୍ରାର୍ଥନାକୁ ଅନୁଭବ କଲେ ମହାମାୟା । ଉତ୍ତର ଥିଲା, ମୋ ଶକ୍ତି ତ ତୁମମାନଙ୍କ ପାଖରେ । ଅସ୍ତ୍ର ରୂପରେ । କାହା ହାତରେ ଖଣ୍ଡା, କାହା ହାତରେ ଧନୁଶର, ଗଦା, ପାଶ, ଅଙ୍କୁଶ, ତ୍ରିଶୂଳ, ବଜ୍ର, ଖଡ଼୍‌ଗ, ତ କାହା ହାତରେ ଅକ୍ଷମାଳ । ଅସ୍ତ୍ରଗୁଡ଼ିକ ପ୍ରୟୋଗ କରିବା ପାଇଁ ମନ୍ତ୍ର ମଧ୍ୟ ତୁମ ପାଖରେ । ସମ୍ମିଳିତ ଭାବରେ ପ୍ରୟୋଗ କରିପାର ।

ଉତ୍ତର ଥିଲା- ଆମେ ତ ତୁମ ମହାଶକ୍ତିର ଅଂଶମାତ୍ର । ତୁମେ ସମ୍ପୂର୍ଣ୍ଣ । ପୂର୍ଣ୍ଣତମା । ଆମେ କାର୍ଯ୍ୟ, ତୁମେ କାରଣ । ଆମେ ନାଦ, ତୁମେ ବ୍ରହ୍ମ । ଆମେ ମୂର୍ତ୍ତ, ତୁମେ ଅମୂର୍ତ୍ତ । ଆମେ ଯନ୍ତ୍ର, ତୁମେ ଯନ୍ତ୍ରୀ । ଆମେ ତୁମ ହାତରେ, ତୁମ ପ୍ରଦତ୍ତ ଶକ୍ତିଙ୍କୁ ସମର୍ପଣ କରିଦେଉଛୁ ମା'! ତୁମେ ତୁମ ବିପନ୍ନ ସତ୍ତାକୁ ସକଳ ସନ୍ତାପରୁ ମୁକ୍ତ କର । ମହିଷା କବଳରୁ ମୁକ୍ତ କର ।

ଏବେ ସକଳ ଅସ୍ତ୍ର, ସକଳ ସଂପଦ ମା'ଙ୍କ ପାଦତଳେ । ସେ ସକଳ ଶକ୍ତିର ସାର୍ବଭୌମ ଅସ୍ତିତ୍ୱ । ସେ ଦୁର୍ଗା, ଦୁର୍ଗତିନାଶିନୀ, କଲ୍ୟାଣମୟୀ ।

ମା' ଆବିର୍ଭୂତା ହେଲେ ମହିଷା ଆଗରେ । ମୋହିନୀ ରୂପ । ସେ ରୂପର ଜ୍ୟୋତିରେ ମୋହଗ୍ରସ୍ତ ଚରାଚର । ସେ ତେଜ ପାଖରେ ମହିଷା ତ ନିମିତ୍ତ ମାତ୍ର । ଏମିତି ରୂପ କ'ଣ ଜଗତରେ ସମ୍ଭବ ? ମହିଷା ମନରେ କାମନାର ନିଆଁ । ଏ ଅପୂର୍ବ ରୂପକୁ ଭୋଗ କରିବା ପାଇଁ କେବଳ ଜଣେମାତ୍ର ଯୋଗ୍ୟ । ସ୍ୱୟଂ ସେ । କେବଳ ସେ । ଅପ୍ରତିହତ କ୍ଷମତା ।



ଏବେ ଉତ୍ତେଜିତ ମହିଷାର ପ୍ରବୃତ୍ତି । ନିକଟତର ହୁଏ ପ୍ରକୃତିଙ୍କର । ଦିବ୍ୟତେଜର ଜ୍ୟୋତିରେ ବିମୂଢ଼ ଅ-ସୁର । ଉଚ୍ଚାଟିତ ପ୍ରବୃତ୍ତି । ଉଦଣ୍ଡ ନାଚ, ହସ, ଗୀତ । ଅଙ୍ଗ-ଅଙ୍ଗରେ ଛଟକ । ପଦପାତରେ ଅହଂକାର । ମାତ୍ର କାହିଁ ସେ ମୋହିନୀ ? କାହିଁକି ଧରା ଦେଉନି ? କେତେବେଳେ ଦୃଶ୍ୟ, ପୁଣି କେତେବେଳେ ଅଦୃଶ୍ୟ । ଦୂରତା ଓ ନୈକଟ୍ୟର ଖେଳ ।

ନିଜ ସହିତ ଖେଳି ଖେଳି ଥକି ପଡ଼ିଲାଣି ମହିଷା । କ୍ଷମତାର କୋହ ଉଚ୍ଛୁଳେ । ପ୍ରଚଣ୍ଡ ହୁଏ । ହାତକୁ ଆସେ ଅସ୍ତ୍ର । ଯେମିତି ହେଉ ଏହି ମହାରୂପକୁ ଭୋଗ କରିବ । ମାତ୍ର ହଠାତ୍ ବଦଳିଯାଏ ଦୃଶ୍ୟପଟ୍ଟ । ଦେଖେ ଅପରୂପାର ହାତରେ ବି ଅସ୍ତ୍ର । ଗୋଟିଏ ନୁହେଁ, ସକଳ ଦେବତାଙ୍କର । ସମର ଆରମ୍ଭ ହୋଇଯାଏ । ମହିଷାର ଅହଂକାରରେ ମୁଗ୍ଧ, ପୁଣି ଚକିତ ହୁଅନ୍ତି ମହାମାୟା । ପୁଅର ଅହଂକାର । ମା' ମୁଗ୍ଧ ହେବାପାଇଁ ବାଧ୍ୟ । ମାତ୍ର କ୍ଷମତା ଓ ପ୍ରବୃତ୍ତିର ମତ୍ତରେ ଅବାଧ୍ୟ ହେଉଛି ବିଚରା ପୁଅ । ମା' ଓ ପୁଅ ଭିତରେ ଲଢ଼େଇ । ସାରା ବ୍ରହ୍ମାଣ୍ଡ ଦେଖୁଛି ଲଢ଼େଇର ଦୃଶ୍ୟ । ଲଢ଼େଇ ନୁହେଁ ତ, ଖେଳ ଏବଂ ଖେଳରେ ହାରିଯାଉଛି ମା' ।

ମାତ୍ର ପୁଅ ଆଖିରେ କାମନାର ଇଚ୍ଛାକୁ ସ୍ୱୀକାର କରିପାରୁନି ମା' । ଆଖିରେ କ୍ରୋଧ ଓ କରୁଣାର ମିଶ୍ର ଭାବ । ମାତୃତ୍ୱର ମହାଭାବ । ଅବଲୀଳାକ୍ରମେ ଖୋଲିଯାଉଛି । ମାତୃତ୍ୱ ସତେଯେପରି କହୁଛି- ଯେଉଁ ମହାସ୍ରୋତରୁ ତୋର ଜନ୍ମ, ସେହି ମହାସ୍ରୋତକୁ ଭୋଗ କରିବାର ଅହଂକାର ଗ୍ରହଣୀୟ ନୁହେଁ ମହିଷା ! ତୁ ନିଜକୁ ଏବେ ଦେଖିପାରୁ, ଦେଖ୍ ! ମହିଷାର ଆଖି ଆଗରେ ଏବେ ଉଦ୍‌ଭାସିତ ମାତୃତ୍ୱର ମହାରୂପ । ପୁତ୍ରତ୍ୱର ସତ୍ତା ମୁହୂର୍ତ୍ତକରେ ନିଶ୍ଚିହ୍ନ ହୋଇଯାଉଛି ମହାମାୟାଙ୍କ ମାତୃତ୍ୱରେ ।

ଆମ ସ୍ଥାପତ୍ୟରେ ମହାମାୟା ଦୁର୍ଗାଙ୍କର ନାନା ରୂପର ପ୍ରତିମା ଏହି ମହାମାତୃତ୍ୱର ପ୍ରତୀକ ।

**ଚାରି**

ସେଦିନ ଏକ ଅଭାବିତ ମୁହୂର୍ତ୍ତରେ ସତୀଙ୍କୁ ଅଗ୍ନିରେ ଝାସଦେବାକୁ ପଡ଼ିଥିଲା । ପ୍ରକୃତି ସ୍ୱରୂପିଣୀ ସତୀ, ପାର୍ବତୀରେ ରୂପାନ୍ତର ହୋଇ ସୃଷ୍ଟି ସର୍ଜନମନସ୍କା ହେଲେ । ତାଙ୍କ ହାତଗଢ଼ା ସୃଷ୍ଟିରେ ଶାନ୍ତି ପ୍ରତିଷ୍ଠା ପାଇଁ ତାଙ୍କୁ ପୁଣି ଦୁର୍ଗତିନାଶିନୀ 'ଦୁର୍ଗା' ଏବଂ ପରେ କାଳୀ ରୂପ ଧାରଣ କରିବାକୁ ପଡ଼ିଲା । ମାତ୍ର କେଉଁ କାଳରେ ସେ ଦୁର୍ଗତିନାଶିନୀ ଦୁର୍ଗାରେ ରୂପାନ୍ତରିତ ହୋଇଛନ୍ତି, ଏହାର ନିର୍ଦ୍ଦିଷ୍ଟ ସମୟ ଆଜି ମଧ୍ୟ ବିତର୍କିତ । ସ୍ଥାପତ୍ୟରେ, ଉତ୍କଳଭୂମିରେ ତାଙ୍କ ଉଦୟନ କାଳକୁ ଆଳ କରି ଇତିହାସ ଗଢ଼ଣର ଉଦ୍ୟମ କରାଯାଇପାରେ ।

ଦେବୀ ଦୁର୍ଗାଙ୍କ ପାଇଁ ଆମେ କେତେ ମନ୍ଦିର, କେତେ ପୀଠ ତିଆରି କରିଛୁ । ସବୁଠୁ ପ୍ରାଚୀନ କ୍ଷେତ୍ର ଯାଜପୁରସ୍ଥ ବିରଜା କ୍ଷେତ୍ର । ପୀଠର ଅଧିଷ୍ଠାତ୍ରୀ ଦେବୀ ବିରଜା । ସେ ଅଛନ୍ତି ଓଡ଼ିଶାର ବହୁ ପ୍ରାଚୀନ ପୀଠରେ । ଅଛନ୍ତି ବଲାଙ୍ଗୀରର ସମଲେଇ ମନ୍ଦିରରେ, ପାଟଣାଗଡ଼ରେ ପାଟଣେଶ୍ୱରୀ ରୂପରେ, ବୈଦେଶ୍ୱରର ଦୁର୍ଗା ମନ୍ଦିରରେ ତଥା ଅନେକ ସ୍ଥାନରେ । ଭୁବନେଶ୍ୱରର ମୋହିନୀ ମନ୍ଦିରରେ ବି ତାଙ୍କ ଉପସ୍ଥିତି, ଜଗମୋହନରେ । ତାଙ୍କ ସହିତ ଅଛନ୍ତି ମୋହିନୀ ଓ ମହାଲକ୍ଷ୍ମୀ । ବହୁ ଶିବମନ୍ଦିର ଭିତରେ ଓ ମନ୍ଦିର ଦେହରେ ତାଙ୍କ ମହାଭାବ ଓ ରୂପକୁ ଅନୁଭବ କରିହୁଏ । ଅନେକ ଶିବମନ୍ଦିର ଉପର ପାଖର ରାହା ଖୋପରେ ସେ ପାର୍ଶ୍ୱଦେବୀ । କେଉଁଠି ଗଣ୍ଡିର ଠଣା (ବକ୍ର ମସ୍ତକ ରୂପ: ଲକ୍ଷ୍ମଣେଶ୍ୱର, ପର୍ଶୁରାମେଶ୍ୱର), କେଉଁଠି ବକ୍ରମୁଣ୍ଡି, କେଉଁଠି ପା'ଭାଗ ଏବଂ କେଉଁଠି ଜଂଘାରେ । ଦୁର୍ଗାଙ୍କର ଏହି ପ୍ରମୂର୍ତ୍ତୟନ କାଳର ଆରମ୍ଭ ପ୍ରାୟ ଭୌମକର (୭ମ/୮ମ ଶତାବ୍ଦୀ) ବଂଶରୁ । ସୋମବଂଶୀ ଓ ଗଙ୍ଗବଂଶୀ ଶାସନକାଳ କାଳେ ତାଙ୍କ ଅସ୍ତିତ୍ୱ ଉଦ୍‌ଭାସନର ସୁବର୍ଣ୍ଣ କାଳ । ସେଦିନ ପାର୍ଶ୍ୱଦେବୀ ରୂପରେ ତାଙ୍କ ଦେହର ଉଚ୍ଚତା ପ୍ରାୟ ଚାରିଫୁଟ ବିଶିଷ୍ଟ ଥିଲା । ମାତ୍ର ପରବର୍ତ୍ତୀ କାଳରେ ମନ୍ଦିରର ଅଧିଷ୍ଠାତ୍ରୀ

ଦେବୀ ରୂପରେ ସେ ଅଧିକ ସ୍ୱଷ୍ଟ ଦିଶିଛନ୍ତି । ଉଚ୍ଚତା ପ୍ରାୟ ପାଞ୍ଚଫୁଟରୁ ଆଠ ଫୁଟ । ଶୁକ୍ଳେଶ୍ୱର, ଚାଟେଶ୍ୱର ଓ ଅମଳକୁଦାଗଡ଼ର ପ୍ରତିମାମାନେ ଏହି ଶ୍ରେଣୀର । ଏମାନେ କେବଳ ବିଶାଳ ନୁହନ୍ତି, କମନୀୟ । ମାତ୍ର ମହିଷମର୍ଦ୍ଦିନୀଙ୍କ ପ୍ରତିମାୟନର ଯାହା ଗୁରୁତ୍ୱପୂର୍ଣ୍ଣ ବିଭାବ, ତାହା ହେଲା, ସେ କୌଣସି ନିର୍ଦ୍ଦିଷ୍ଟ ଶାସ୍ତ୍ରର ଅନୁବିଦ୍ଧ ନୁହନ୍ତି । ବହୁ ଶାକ୍ତଗ୍ରନ୍ଥ-ବର୍ଣ୍ଣିତ ରୂପର ସେ ସମନ୍ୱିତ ସଂପଦ । ବିଶେଷତଃ ତାଙ୍କ ହାତର ସଂଖ୍ୟା ଦୁଇରୁ କୋଡ଼ିଏ । ଆୟୁଧ ସଂଖ୍ୟା ହାତସଂଖ୍ୟା ଅନୁରୂପ । ତାଙ୍କ ହାତ ପରି ଦେହର ଗଢ଼ଣ ମଧ୍ୟ ବିଚିତ୍ର । ମାତ୍ର ଆହୁରି ବିଚିତ୍ର, ଦେବୀ ବଧ କରୁଥିବା ମହିଷାସୁରର ଗଢ଼ଣ । ଏତେ ବିଚିତ୍ର ଯେ, ବିଭିନ୍ନ ସ୍ଥାନରେ ଦେବୀଙ୍କ ପାଦତଳେ ପଡ଼ିଥିବା ଅଥବା କେଉଁଠି ଉହୁଙ୍କି ଆସୁଥିବା ମହିଷାକୁ ନିରେଖି ଦେଖିବାକୁ ଇଚ୍ଛା ହୁଏ । ମହିଷା-ଗଢ଼ଣର ଏହି ବିଚିତ୍ରତାକୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ: ୧- ମହିଷାସୁରର ମିଶ୍ର (ସଂକର) ରୂପ, ୨- ମହିଷାର ଦେହ ଭିତରୁ ଆବିର୍ଭୂତ ଅସୁର ଏବଂ ୩- ମହିଷରୂପୀ ଅସୁର । ଓଡ଼ିଶାରେ ମହିଷର ମିଶ୍ରରୂପର ସଂଖ୍ୟା ସର୍ବାଧିକ ଓ ମହିଷରୂପୀ ଅସୁରର ସଂଖ୍ୟା ଏତେ ବେଶି ନୁହେଁ ।

ମହିଷାସୁରର ମିଶ୍ରରୂପ କହିଲେ, ଅସୁରର ମୁଣ୍ଡ ମଇଁଷି ଓ ଦେହର ଅବିଶିଷ୍ଟ ଅଂଶ ମଣିଷ ପରି । ଅସୁର ପଡ଼ିରହିଥାଏ ଭୂମି ଉପରେ, ହାତ ଓ ଗୋଡ଼ ନିସ୍ତେଜ ଓ ପ୍ରସାରିତ । ଏଠାରେ ବିଭିନ୍ନ ପ୍ରତିମାରେ ଦେବୀଙ୍କ ହାତର ସଂଖ୍ୟା ଚାରିରୁ ବାର । ଦେବୀଙ୍କର ଆୟୁଧ ଖଣ୍ଡା, ତ୍ରିଶୂଳ ଓ ଢାଲ । ଷଡ଼ଭୁଜା ଦେବୀଙ୍କ ହାତରେ ଥାଏ ଖଣ୍ଡା ଓ ଧନୁଶର । ଅଷ୍ଟଭୁଜା ଦେବୀ ପ୍ରତିମାଙ୍କ ସଂଖ୍ୟା ସବୁଠାରୁ ଅଧିକ । ତାଙ୍କ ଅବଶିଷ୍ଟ ଦୁଇ ହାତରେ ନାଗ ଏବଂ ବଜ୍ର ଅଥବା ଚକ୍ର । ଗୋଟିଏ ହାତରେ ତ୍ରିଶୂଳ ବିଦ୍ଧ କରୁଛି ଅସୁରର ଛାତି ଏବଂ ଅନ୍ୟ ହାତଟି ଝିଙ୍କି ଧରିଛି ମୁଣ୍ଡ । ପାଦତଳେ ବାହନ ସିଂହ ବି ରହିଛି । ବେଶ୍ ଆକ୍ରମଣାତ୍ମକ । କେଉଁଠି ଅସୁରକୁ କାମୁଡ଼ି ଧରିଛି ତ, କେଉଁଠି ତା' ଉପରେ ପାଦ । ଦେବୀଙ୍କର ଠିଆ ହେବା ଭଂଗୀ ପ୍ରାୟ ସବୁଠି ସମାନ । ଦଶଭୁଜା ଦେବୀଙ୍କ ପ୍ରତିମା ସଂଖ୍ୟାରେ ଅବଶ୍ୟ ଅଳ୍ପ, ମାତ୍ର ଚମତ୍କାର । ବୈତାଳ ମନ୍ଦିରକୁ ଲାଗି ରହିଥିବା ଶିଶିରେଶ୍ୱର ମନ୍ଦିରର ଦୁର୍ଗାରୂପ ଅନେକଙ୍କ ମଧ୍ୟରେ ସ୍ୱତନ୍ତ୍ର । ଦେବୀଙ୍କର ଡାହାଣ ଓ ବାମପାଦ ଯଥାକ୍ରମେ ଚାପି ଧରିଛି ଅସୁରର ଛାତି ଓ ବାମହାତର ମୁଠାରେ ଅସୁରର ମୁଣ୍ଡ । ଅନ୍ୟ ହାତରେ ସ୍ୱତନ୍ତ୍ର ଅସ୍ତ୍ର ଫାର୍ଶା ଓ ବୃତ୍ତାକାର ଢାଲ । ଦେହରେ ଅଳଙ୍କାରର ପ୍ରାଚୁର୍ଯ୍ୟ । ପଥର ତିଆରି ବାରହାତ ବିଶିଷ୍ଟ ଦେବୀ ଦୁର୍ଗା କୁଆଲୋ ଓ ଧର୍ମଶାଳାରୁ ଆସି ସଂପ୍ରତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ । କୁଆଲୋର ପ୍ରତିମା ଅବଶ୍ୟ ଆକାରରେ ଛୋଟ, ମାତ୍ର ଉଗ୍ରା ନୁହନ୍ତି, ଯେପରି ଶାନ୍ତି ଓ କରୁଣାର ଅବତାର । ଓଡ଼ିଶାର କୌଣସି ଅଷ୍ଟଭୁଜା ଦେବୀଙ୍କ ହାତରେ ନା ଅଛି ଶଂଖ, ନା ଅଭୟମୁଦ୍ରା । ପ୍ରତ୍ୟେକ ମୂର୍ତ୍ତି ଅସୁର-ନିସୂଦନୀ ।

ଦ୍ୱିତୀୟ ଗୋତ୍ରର ମହିଷାସୁରର ପରିକଳ୍ପନା କଳାତ୍ମକ । ଏଠାରେ ମହିଷ ଏକ ପ୍ରତୀକ । ମାତ୍ର ବାସ୍ତବତଃ ସେ ଜଣେ ମଣିଷ । ବ୍ୟକ୍ତିସାର ଅହଂକାର ମହିଷାର କଟାମୁଣ୍ଡ । ପଞ୍ଜରା ଭିତରୁ ବାହାରି ଆସୁଛି ଦାନବ ଏବଂ ଦେବୀଙ୍କ କ୍ରୋଧର ଶିକାର ହେଉଛି । ପ୍ରାୟ ନବମ ଶତାବ୍ଦୀରେ ଓଡ଼ିଶାରେ ଅନୁରୂପ ପ୍ରତିମାର ପରିକଳ୍ପନା, ମାଧ୍ୟମ ବୈଦେଶ୍ୱର ଓ ବଜ୍ରକୋଟ ମନ୍ଦିର । ଭୁବନେଶ୍ୱରରେ ଏହି ଶୈଳୀର ପ୍ରତିମା ଆଙ୍ଗୁଠି ଗଣା । ଲିଙ୍ଗରାଜ ମନ୍ଦିର ଭିତରେ ପାର୍ଶ୍ୱଦେବୀ ରୂପରେ ତାଙ୍କୁ ପାଇପାରିବା । ଏହିପରି ଦେବୀଙ୍କର ହାତର ସଂଖ୍ୟା ଦୁଇରୁ କୋଡ଼ିଏ । ବଲାଙ୍ଗୀରର ସମଲେଇ ନାମରେ ପରିଚିତ । ମହିଷମର୍ଦ୍ଦିନୀ, ଦ୍ୱିଭୁଜା ପ୍ରତିମାଗୁଡ଼ିକ ମଧ୍ୟରେ ସ୍ୱତନ୍ତ୍ର । ଦେବୀ ଆରାଧା ମୁଦ୍ରାରେ ଠିଆ ହୋଇଛନ୍ତି । ବାମପାଦ ଅସୁରର ମଥା ଉପରେ । ଦୁଇ ହାତରେ ତ୍ରିଶୂଳ ବିଦ୍ଧ କରୁଛି ମହିଷର ଛାତି । ବେକରେ





ମାଳା ପରି ଗୁଡ଼େଇ ହୋଇ ରହିଛି ନାଗ ଏବଂ ଫଣା ଦେବୀଙ୍କ ମଥା ଉପରେ ଛତ୍ର ପରି । ଚତୁର୍ଭୁଜା ଦେବୀ ରହିଛନ୍ତି କେନ୍ଦୁଝରରେ । ଅଷ୍ଟଭୁଜା ଦେବୀଙ୍କର ବିଜେସ୍ଥଳୀ ସୋନପୁର, ବାଣପୁର, ବୈଦେଶ୍ୱର, ବଜ୍ରକୋଟ ଓ ଅନ୍ୟ ସ୍ଥାନରେ । ଦେବୀମାନଙ୍କର ଆୟୁଧ ବଜ୍ର, ଖଣ୍ଡା, ଧନୁଶର, ଢାଲ ଓ ନାଗପାଶ । ପ୍ରାୟ ପ୍ରତ୍ୟେକ ପ୍ରତିମାଙ୍କ ଗଠନଶୈଳୀ ପ୍ରତୀକାତ୍ମକ । ଏହି ଶୈଳୀର ପ୍ରତିମାମାନଙ୍କ ମଧ୍ୟରେ କଟକ ଜିଲ୍ଲାର ନାଥୁଆବରର ପ୍ରତିମା ସ୍ୱତନ୍ତ୍ର । ଦେବୀଙ୍କର ଡାହାଣ ପାଦ ସିଂହ ପିଠିରେ । ସିଂହର ପାଟିରେ ମହିଷର ଦେହ । ଦେବୀଙ୍କର ବାମପାଦ ମହିଷର ମୁଣ୍ଡ ଉପରେ । ଅସୁର ମହିଷ ଭିତରୁ ବାହାରି ଆସିବାକୁ ଉଦ୍ୟତ, ମାତ୍ର ଅସହାୟ ଏବଂ ନାଗକୁ ପାଶ ପରି ବ୍ୟବହାର କରିଛନ୍ତି ଶକ୍ତି- ଯେପରି ଝୁଣି ପକାଇବେ ମଣିଷର ଅହଂକାର । ଏହିଭଳି ଅଷ୍ଟଭୁଜା ପ୍ରତିମା ରହିଛନ୍ତି ଖିଚିଂ, ଭୁବନେଶ୍ୱର ଓ କଟକର ବହୁ ମନ୍ଦିରରେ । ପାଳିଆର ବିରଂଚିନାରାୟଣ ମନ୍ଦିର ବେଢ଼ାର ଦେବୀଙ୍କ ଗଠନଶୈଳୀ ସ୍ୱତନ୍ତ୍ର । ଦେବୀ ବହୁ ଅଳଙ୍କାରରେ ବିଭୂଷିତା । ହାତରେ ଖଣ୍ଡା, ଢାଲ ଓ ଧନୁ- ସକଳ ଉନ୍ନତ କାରୁକଳାର ଉଦାହରଣ । ଆଖି ଚାହିଁ ରହିଛି ଜୀବନ ଭିକ୍ଷା କରୁଥିବା ଅସହାୟ ଅସୁରର ମୁହଁକୁ । ଦେବୀଙ୍କ ପାଖରେ ପୁଣି ଗୋଟିଏ ନୁହେଁ, ଦୁଇଟି ସିଂହ । ଏହି ଶ୍ରେଣୀର ପ୍ରତିମାମାନଙ୍କ ସଂଖ୍ୟା ସର୍ବାଧିକ, ପୁଣି ବହୁଭୁଜ ବିଶିଷ୍ଟ । ବୀରପ୍ରତାପପୁର ଠାକୁରାଣୀ ମନ୍ଦିରର ମା'ଙ୍କ ହାତର ସଂଖ୍ୟା ଷୋହଳ । ଓଡ଼ିଶାର ଏକମାତ୍ର କୋଡ଼ିଏ ହାତ ବିଶିଷ୍ଟ ଦେବୀ ଦୁର୍ଗାଙ୍କ ବିଜେସ୍ଥଳୀ ବଲାଙ୍ଗୀରର ସମଲେଶ୍ୱରୀ ମନ୍ଦିର (ଏହା ଏବେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଂଗ୍ରହାଳୟ)ରେ । ତାଙ୍କ ହାତରେ କେତେ ଆୟୁଧ- ତ୍ରିଶୂଳ, ବଜ୍ର, ଚକ୍ର, ଖଣ୍ଡା, ଧନୁଶର, ଡମ୍ବରୁ, ଲାଠି, ଢାଲ, ଘଣ୍ଟି, କପାଳ, ନାଗପାଶ ଇତ୍ୟାଦି । ମାତ୍ର ଷୋହଳ ଆୟୁଧ ଶାସ୍ତ୍ରସମ୍ମତ ।

ତୃତୀୟ ଶ୍ରେଣୀ ଦେବୀପ୍ରତିମାଙ୍କ ସଂଖ୍ୟା ଓଡ଼ିଶାରେ ଅଳ୍ପ । ମାତ୍ର ଭାରତର ମହିଷମର୍ଦ୍ଦିନୀ ଦୁର୍ଗାପ୍ରତିମା ଗଢ଼ଣ ପରମ୍ପରାରେ ଏହି ଶୈଳୀ ସବୁଠାରୁ ପୁରୁଣା । ପ୍ରତିମାମାନେ ମୁଖ୍ୟତଃ ଦ୍ୱିଭୁଜା । ଗୋଟିଏ ହାତରେ ରହିଛି ମହିଷର ଲାଞ୍ଜ ଓ ଅନ୍ୟ ହାତରେ ତ୍ରିଶୂଳ ଅଥବା ଖଡ଼୍‌ଗ । ମହିଷାକୁ ନିଧନ କରିବା ପାଇଁ ଉଦ୍ୟତ । କୁହାଯାଏ, କୁଷାଣ ଶାସନ କାଳରେ ଏହି ଶୈଳୀର ପ୍ରତିମାମାନଙ୍କର ଜନ୍ମ । ମାତ୍ର ଓଡ଼ିଶାରେ ମହିଷଯୁକ୍ତ ଗୋତ୍ରର ଦେବୀପ୍ରତିମାମାନଙ୍କ ହାତର ସଂଖ୍ୟା ଦୁଇରୁ ଆଠ । ଦ୍ୱିଭୁଜା ଦୁର୍ଗା ଅଛନ୍ତି ଯାଜପୁର (ବିରଜା: ୭ମ/୮ମ ଶତାବ୍ଦୀ), କାକଟପୁର (ସୋମେଶ୍ୱର: ୧୧ଶ ଶତାବ୍ଦୀ, ପୁରୀ (ଜଗନ୍ନାଥ ମନ୍ଦିର ପରିସର: ୧୧ଶ ଶତାବ୍ଦୀ), ଚତୁର୍ଭୁଜା ପ୍ରତିମା: ପର୍ଶୁରାମେଶ୍ୱର ଓ ମାର୍କଣ୍ଡେଶ୍ୱର (ଭୁବନେଶ୍ୱର: ୭ମ/୮ମ ଶତାବ୍ଦୀ), ମାରାଗୁଡ଼ା ଉପତ୍ୟକା (୯ମ ଶତାବ୍ଦୀ), ଭବାନୀପାଟଣା (୯ମ ଶତାବ୍ଦୀ) ଏବଂ ଅଷ୍ଟଭୁଜା: ବୈଦେଶ୍ୱରସ୍ଥ ଦୁର୍ଗା ମନ୍ଦିର । ପର୍ଶୁରାମେଶ୍ୱର ଓ ମାର୍କଣ୍ଡେଶ୍ୱରର ଦେବୀମାନଙ୍କ ହାତର ଆୟୁଧ ଖଣ୍ଡା, ତ୍ରିଶୂଳ ଓ ଢାଲ । ମହିଷର ମୁଣ୍ଡ, ଦେବୀଙ୍କ ଡାହାଣପାଦ ତଳେ, ଡାହାଣ ହାତରେ ଖଣ୍ଡା, ତ୍ରିଶୂଳ ।

ଭୋଗରାଇର ପ୍ରତିମା ଭୟଙ୍କରା । ମହିଷ ମରି ପଡ଼ିଛି । ଡାହାଣ ପାଦ ତଳେ ତା'ର ମୁଣ୍ଡ ଏବଂ ବାମ ହାତରେ ଲାଂଗୁଡ଼ । ଡାହାଣ ହାତର ଖଣ୍ଡା ସତେଯେପରି ମହିଷକୁ ହତ୍ୟା କରିସାରି ତଥାପି ଅଶାନ୍ତ । ଟାଙ୍ଗି ଓ ଗାରେଡ଼ିପାଞ୍ଚଣ ଶିବମନ୍ଦିରରେ ଥିବା ପ୍ରତିମାମାନେ ପ୍ରାୟ ଏକ ପ୍ରକାରର । ଏମାନେ ପ୍ରତ୍ୟେକ ବର୍ତ୍ତମାନ ମନ୍ଦିରର ଗଣ୍ଡି ଅଥବା ପାଦ ଭାଗରେ ।

ଆମେ କଳାମୁଗୁନି ପଥର ଅଥବା ଅନ୍ୟ ଜାତିର ପଥରରେ ପ୍ରମୂର୍ତ୍ତ ମହିଷମର୍ଦ୍ଦିନୀଙ୍କ କଥା କହୁଚେ, ମାତ୍ର ତାଙ୍କ ଦିବ୍ୟରୂପ ମଧ୍ୟ ଜୀବନ୍ତ ହୋଇଛି ନାନା ଧାତୁ ମାଧ୍ୟମରେ । ଅଷ୍ଟଧାତୁର ପ୍ରତିମା ମଧ୍ୟ ରହିଛି । ସେମାନେ ପୂଜା ପାଉଛନ୍ତି ମନ୍ଦିରରେ ଅଥବା ଭକ୍ତମାନଙ୍କ ଘର ଭିତରେ । ମାତ୍ର ଉତ୍କଳ ଭୂମିରେ ତାଙ୍କ ନୀରାଜନା ମାଟିଘଟ ମାଧ୍ୟମରେ । ପରେ ସେ  ପଥର ଓ ଧାତୁ ମାଧ୍ୟମରେ

ଆବିର୍ଭୂତା ହୋଇଛନ୍ତି ଏବଂ ଶେଷରେ ମାଟି ଓ ରଂଗରେ ପ୍ରକଟିତ ହୋଇଛନ୍ତି । ମାଟିରେ ଶକ୍ତିଙ୍କ ପ୍ରମୂର୍ତ୍ତାୟନର ଇତିହାସ ଊନବିଂଶ ଶତାବ୍ଦୀର ମଧ୍ୟକାଳ, ବଂଗ ପ୍ରଭାବର ଫଳଶ୍ରୁତି ।

ମାତ୍ର ସିଂହବାହିନୀଙ୍କର ଏହି ସଂହାର ରୂପ ବାସ୍ତବତଃ ଧ୍ୱଂସାତ୍ମକ କି ? ଏହି ପ୍ରଶ୍ନର ଉତ୍ତର ନକାରାତ୍ମକ । ସେ ଅବଶ୍ୟ କ୍ରୋଧିତା, ମାତ୍ର ଧ୍ୱଂସାତ୍ମକ ନୁହନ୍ତି । ସେ ତ୍ରିନେତ୍ରୀ । ଗୋଟିଏ ନେତ୍ରରେ ରାଗର ନିଆଁ, ଅନ୍ୟଟିରେ କରୁଣାର ଲୁହ ଓ ତୃତୀୟ ନେତ୍ରରେ ନବସୃଜନର ଆନନ୍ଦ । ଯେପରି କହୁଛି- ମୁଁ ଅଛି, ତେଣୁ ତୁ ବି ଅଛୁ । ତୋରି ପରି ଅନ୍ୟମାନେ ବି ଅଛନ୍ତି । ଆ, ଏକାଠି ରହିବା ।

ଆମ ସ୍ଥାପତ୍ୟରେ ଦେବୀ ଦୁର୍ଗା, ଚିରବନ୍ଦିତା ସକଳ ଚେତନାରେ ।

ଅଧୀକ୍ଷକ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ

# ଆବାହନୀ

**ବାଳକାନନ୍ଦ ଦାସ**



ଆନନ୍ଦମୟୀ ସେନେହମୟୀ
କରୁଣାମୟୀ ମା'
ଚରଣେ ତୁମ କୋଟି ଜୁହାର
ହୁଅ ଜୀବନେ ସାହା ।
ତୁମେ ତ ଦୁର୍ଗା ତୁମେ ହିଁ କାଳୀ
ଲକ୍ଷ୍ମୀ ସରସ୍ୱତୀ
ତୁମେ ହିଁ ତାରା ବଗଳାମୁଖୀ
ନାମ ବହୁତ ଖ୍ୟାତି
ଅଯୋନି ସମ୍ଭୂତା ଶକ୍ତିମୟୀ
ଆସ ଆସ ଗୋ ମା' ।
ସଂସାର ପାଳନ କର୍ତ୍ତ୍ରୀ ତୁମେ
ମାଆ ମହିଷ ମର୍ଦ୍ଦିନୀ
ଧନ୍ୟ ପ୍ରେମମୟୀ ମା'
ଭକ୍ତି ମୁକ୍ତି ପ୍ରଦାୟିନୀ
ତୁମରି ଶୁଭ ଆଗମନୀକୁ
ଚାହିଁ ବସିଛୁ ମା' ।
ସୁନ୍ଦର ତବ ଧରା ବକ୍ଷରେ
ଶାନ୍ତି ବିରାଜିବ ମା'
ଆସ ଆସ ଗୋ ମା' ।

ବୈକୁଣ୍ଠ ସରଣୀ
ଏକାମ୍ର ସତ୍ୟ ସେବାଶ୍ରମ
ୟୁନିଟ୍-୯, ଭୁବନେଶ୍ୱର-୨୨

